


ପରିମାର୍ଜିତ ଓ ପରିବର୍ଦ୍ଧିତ ସଂସ୍କରଣ, ୧୯୬[illegible]

ମୂଲ୍ୟ—ପାଞ୍ଚ ଟଙ୍କା
ବନ୍ଧେଇ ଏକଟଙ୍କା ସ୍ୱତନ୍ତ୍ର

ମୁଦ୍ରକ
ପ୍ରଗତୀ ପ୍ରେସ୍
ଚାନ୍ଦନୀଚୌକ, କଟକ

# କମଳାୟନ

## ଭୂମିକା

ମୁଁ ଯେଉଁ ଯୁଗରେ ଜନ୍ମଗ୍ରହଣ କରିଛି, ସେହି ଯୁଗର ଓ ଯେଉଁ ଜୀବନ ପ୍ରବାହ ସଙ୍ଗେ ମୋର ଘନିଷ୍ଠ ପରିଚୟ ଘଟିଛି, ତା'ର ପ୍ରତୀକ ସ୍ୱରୂପ ଏକ କାବ୍ୟ ଲେଖିବାର କଳ୍ପନା ବହୁବର୍ଷ ଧରି ମୁଁ କରିଆସିଛି । କେବେ ରାମଚନ୍ଦ୍ର ବାପାଙ୍କ ସତ୍ୟରକ୍ଷା ପାଇଁ ବଣକୁ ଯାଇଥିଲେ ଓ ସୀତା ନିଜର ସତୀତ୍ୱର ପରୀକ୍ଷା ନିଆଁରେ ପଶି ଦେଇଥିଲେ । ଏ ଘଟଣା ହୁଏତ ସେକାଳରେ ମଧ୍ୟ ଆଦୌ ଘଟି ନ ଥାଇପାରେ । ହୁଏତ ସମସ୍ତଟା କେବଳ କବିକଳ୍ପନା । କିନ୍ତୁ ବର୍ତ୍ତମାନ କାଳରେ, ଏହା ଆଦର୍ଶ ବା କଳ୍ପନା ବା ସତ୍ୟ ଘଟଣା ଯାହା ହେଉ, ତାର କୌଣସି ଅର୍ଥ ଅଛି ବୋଲି ମନେ ହୁଏ ନାହିଁ । ଏକାଳରେ ସତୀତ୍ୱର ପରୀକ୍ଷା ପାଇଁ କେଉଁ ମୂର୍ଖ-ସ୍ୱାମୀ ସ୍ତ୍ରୀକୁ ନିଆଁରେ ପଶିବାକୁ କହିବ ? କେଉଁ ଭାଇ ବା ଲକ୍ଷ୍ମଣ ପରି ବଡ଼ ଭାଇର ଭୃତ୍ୟ ହୋଇ ରହିବାକୁ ପସନ୍ଦ କରିବ ?

ତେବେ କଣ ଆମେ ଯେଉଁ ସମାଜରେ ଓ ଯେଉଁ କାଳରେ ବଞ୍ଚିଛୁ, ସେଥିରେ ନାରୀର ପ୍ରେମ ବା ସତୀତ୍ୱର, ଭାଇ-ଭାଇର ମୈତ୍ରୀର, ପିତା-ପୁତ୍ରର କର୍ତ୍ତବ୍ୟର ସ୍ଥାନ ନାହିଁ ? ଯାହା ବା ଅଛି, ତାହା କଣ କାବ୍ୟ କବିତାରେ ପ୍ରକାଶିତ ହେବାର ଯୋଗ୍ୟ ବିବେଚିତ ହେବ ନାହିଁ ? ନିଆଁରେ ପଶି ପୋଡ଼ିଲେଇ କେବଳ ନାରୀ ସତୀ ବୋଲି ପରିଚିତ ହେବ, ତା'ର ଅନ୍ୟ ମାପକାଠି ନାହିଁ ? କେବଳ ଅସାଧାରଣ, ଚମକପ୍ରଦ କର୍ମ ସମ୍ପାଦନ କଲେଇ କି ଲୋକ ବୀର ବୋଲି ଧରାଯିବ ? ଆମର ଆଡ଼ମ୍ବରହୀନ ଦୈନନ୍ଦିନ ଜୀବନର କ୍ଷୁଦ୍ର କ୍ଷୁଦ୍ର କର୍ମରାଜି ଭିତରେ କି ମାନବିକ ମହତ୍ତ୍ୱର ପ୍ରସ୍ଫୁଟନ ପାଇଁ ଅବକାଶ ନାହିଁ ?

ଲେଖକ ମନେକରେ ଯେ, ଆମର ଦୈନନ୍ଦିନ ସାଧାରଣ ଜୀବନ ହିଁ କାବ୍ୟର ପ୍ରକୃଷ୍ଟ ଓ ପ୍ରକୃତ ଉପାଦାନ । ଏହି ଜୀବନର ନଗ୍ନ ବାସ୍ତବତାକୁ ଆମେ କଳ୍ପନାର ବୋଳ ଦେଇ ଯେତିକ ଅଳଙ୍କୃତ କରିବାକୁ ଯିବା, ତାହା ସେତିକ ପରିମାଣରେ ସମାଜର କ୍ଷତିକାରକ । ରାମ-ଲକ୍ଷ୍ମଣଙ୍କୁ ଆମେ ପୂଜାକରୁଁ ; କିନ୍ତୁ ଭ୍ରାତୃ-ବିବାଦରେ ଭାରତବର୍ଷର ପ୍ରତି ଘର କ୍ଷତବିକ୍ଷତ । କାରଣ, ରାମ-ଲକ୍ଷ୍ମଣର ଆଦର୍ଶ ଅସ୍ୱାଭାବିକ ବା ଅସ୍ୱାଭାବିକ ନ ହେଲେ ମଧ୍ୟ ଦୁଷ୍କରଣୀୟ ।

ତେଣୁ ମୁଁ ଏହି 'କମଳାୟନ' କାବ୍ୟକୁ ନୂତନ ଉପାଦାନରେ ରଚନା କରି ପାଠକମାନଙ୍କ ସମ୍ମୁଖରେ ପରିବେଷଣ କରୁଛି । ଏହାର ନାୟକ ନାୟିକା ଆମର ପରିଚିତ ସମାଜର ସାଧାରଣ ନରନାରୀ । ସେମାନେ ଭଗବାନଙ୍କ ଅବତାର ନୁହନ୍ତି ବା କାବ୍ୟ-ପୁରାଣର ନାୟକ-ନାୟିକାମାନେ କଥା କଥାକେ ଯେପରି ଦେବଦେବୀଙ୍କ ଅନୁଗ୍ରହ ଓ ସାହଚର୍ଯ୍ୟ ପାଆନ୍ତି, ସେମାନେ ତାହା ପାଉ ନାହାନ୍ତି । ସେମାନେ ଆମରି ପରି ଦୁଃଖକଷ୍ଟ-ଭୋଗୀ ସାମାଜିକ ମନୁଷ୍ୟ । କଠୋର ଜୀବନ ସଂଗ୍ରାମ, ବାଧା, ବିଘ୍ନ ଭିତର ଦେଇ, କିନ୍ତୁ ଫୁଟି ଉଠିଛି ତାଙ୍କ ଭିତରେ ପ୍ରୀତି, ମୈତ୍ରୀ, ସଖ୍ୟ—ଯେମିତି ହୋଇଥାଏ ଏ ଜଗତରେ ଓ ହେବା ଉଚିତ । ସମସ୍ତ ଘାତ ପ୍ରତିଘାତ ଭିତରେ ଓ ବର୍ତ୍ତମାନ ଜଗତର ନାନା ସମସ୍ୟା ଭିତରେ, ସେମାନେ କିନ୍ତୁ ଯାହା ସତ୍ୟ ବୋଲି ସ୍ଥିର କରିଛନ୍ତି ତାହା ହିଁ କରିଚାଲିଛନ୍ତି । ତାଙ୍କର ସମସ୍ୟା ଆଜକାଲିର ପ୍ରତ୍ୟେକ ତରୁଣ ତରୁଣୀର ସମସ୍ୟା । ତାଙ୍କର ସମାଧାନ ଏତ ଆମର ସମାଧାନ ବି ହୋଇପାରେ ।

ମାୟାଧର ମାନସିଂହ

## ଦ୍ୱିତୀୟ ସଂସ୍କରଣ

ଏହି ସଂସ୍କରଣରେ ପୂର୍ବର କମଳାୟନକୁ ବହୁସ୍ଥାନରେ ଖଣ୍ଡିତ ଓ ମଣ୍ଡିତ କରାଯାଇଛି । ଇତି । ଲେଖକ

# କମଳାୟନ, ଉତ୍ତରଖଣ୍ଡ ।

କେତେବର୍ଷ ତଳେ କହୁ ପାରୁନାହିଁ ; କିନ୍ତୁ କମଳାୟନର ଏକ ପରବର୍ତ୍ତୀଖଣ୍ଡ ଲେଖିବାର ବାସନା ଯେତେବେଳେ ମୋର ଅନ୍ତସ୍ତଳରେ ଅଜ୍ଞାତଭାବରେ ଅଙ୍କୁରିତ ହୋଇ ଆସୁଥିଲା, ଠିକ୍ ସେଇ ସମୟରେ, କୌଣସିଠାରେ ଦେଖା ଓ କଥା ହେବା ଭିତରେ, ଶ୍ରଦ୍ଧାଭାଜନ ସୁପରିଚିତ ଲେଖକ ଓ ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ କହିଲେ—ସର୍, କମଳାୟନ ତ ଅପୂର୍ଣ୍ଣ ରହିଗଲା ?

ମୁଁ ବିସ୍ମିତ ହେଲି ଓ ପଚାରିଲି—ଅପୂର୍ଣ୍ଣ ? ସେପରି ଭାବି-ବାର କାରଣ ?

ସେ କହିଲେ—ମୁଁ କହୁନି, ଆପଣଙ୍କର କାବ୍ୟ ଅପୂର୍ଣ୍ଣ ; କିନ୍ତୁ କଥା ଅପୂର୍ଣ୍ଣ । ସଂଘମିତ୍ରାକୁ କେନ୍ଦ୍ରକରି ସେ କଥା ଶେଷ ହେବାର କଥା !

ମୁଁ ମନେ ମନେ ଅତିଶୟ ବିସ୍ମିତ ହେଲି, କାରଣ ନୀଳମଣି ଯାହା କହିଗଲେ, ତାହା ମୋ ଅନ୍ତର୍ଲୋକର ଅସ୍ଫୁଟ ବାଣୀର ଅବିକଳ ପ୍ରତିଧ୍ୱନି !

ସେତେବେଳେ ନୀଳମଣିଙ୍କୁ କିଛି କହିଲି ନାହିଁ । କିନ୍ତୁ ମନେ ମନେ ଭାବିଲି ଯେ, ଜଣେ ତରୁଣ ବୁଦ୍ଧିଜୀବୀ ଯଦି ଠିକ୍ ମୋ ପରି ଭାବୁଛି, ତେବେ ସେ ଭାବନାର ଯଥାର୍ଥତା ଅଛି ।

କମଳାୟନର ଉତ୍ତରଖଣ୍ଡ ପୂର୍ବ ଖଣ୍ଡର ନାୟକ-ନାୟିକା କମଳ-କରୁଣାଙ୍କର ଦାୟାଦ ସଂଘମିତ୍ରାକୁ କେନ୍ଦ୍ରକରି ଗଢ଼ା । କମଳ-କରୁଣା-କେନ୍ଦ୍ରିକ ପ୍ରଥମଖଣ୍ଡ ସମସାମୟିକ ପ୍ରାକ୍-ସ୍ୱାଧୀନ ଭାରତର

ଶନ । ବିଶ୍ୱପ୍ଲୁଖଣ୍ଡ ସମସାମୟିକ ପୃଥିବୀର । ଗୋଟିଏ ଗୋଟିଏ କାବ୍ୟର କ୍ଷୁଦ୍ର ପରିସର ଓ କଥାବସ୍ତୁର ବନ୍ଧନ ଭିତରେ ଯେତିକ ଥୋଇବା ସମ୍ଭବ, ତାହାହିଁ କରାଯାଇଛି ।

ବିଶ୍ୱପ୍ଲୁଖଣ୍ଡ ଲେଖିଲାବେଳେ ହଙ୍ଗେରୀ ବିପ୍ଳବ ଘଟିଥିଲା । ସେ ବିପ୍ଳବବେଳେ, ସୋଭିଏଟ ରୁଷିଆ ହଙ୍ଗେରୀର ଜାତୀୟତା ଓ ମାନବିକତାକୁ ଯେପରି ହତ୍ୟା କରିଥିଲା, ତାର କ୍ଷୁବ୍ଧ ପ୍ରତିକ୍ରିୟା ପୃଥିବୀର ସର୍ବତ୍ର ଯେପରି ଦେଖାଦେଇଥିଲା, ଏଇ ଲେଖକର ପ୍ରାଣରେ ମଧ୍ୟ ସେହିପରି ଦେଖାଦେଇଥିଲା । ବିଶେଷରେ ଏଇ ଲେଖକର ଜଣେ ପ୍ରତିଭାବାନ୍ ହଙ୍ଗେରୀୟ ବନ୍ଧୁ ଅଛନ୍ତି । ତାଙ୍କଠାରୁ ବେଳେ ବେଳେ ବୁଦାପେଷ୍ଟ ବିପ୍ଳବର ବୀଭତ୍ସିକାମୟ କାହାଣୀ ଶୁଣି ମୁଁ ନୀରବରେ ଅଶ୍ରୁତ୍ୟାଗ କରିଛି ଏବଂ ସେହି ପ୍ରାଣ-ଚୂର୍ଣ୍ଣକ ଘଟଣାକୁ ସମସାମୟିକ କାଳର ଏକ ପ୍ରଧାନ ମାଇଲ୍-ଖୁଣ୍ଟରୂପେ ଏହି କାବ୍ୟକଥାରେ ମିଶାଇ ନେବାପାଇଁ ମତେ ଆଉ ବିଶେଷ ଭାବିବାକୁ ପଡ଼ିନ ।

ଏତିକ କହି ଏ କାବ୍ୟକୁ ପାଠକପାଠିକାମାନଙ୍କ ହାତକୁ ଦେଉଛି ।

ପ୍ରଣେତା

# ପ୍ରଥମ ସର୍ଗ

## ଉତ୍ତର ଓ ଗୋପବନ୍ଧୁ

ସହସ୍ର ନିରନ୍ନ କାନେ, ହେଲା ପ୍ରଚାରିତ
ସଂବାଦ,—ତଣ୍ଡୁଳ ହୁଏ ଉତ୍ତରେ ବଣ୍ଟିତ ।
ଦୂରସ୍ଥାନୁଁ ପାଇ ଗନ୍ଧ ଘୃତ ଶର୍କରାର
କ୍ଷିପ୍ରେ ଚଳେ ଯେସନେ କୃଷ୍ଣ ପିପୀଳିକା ଧାର,
ତଣ୍ଡୁଳ-ବଣ୍ଟନ ଶୁଣି ଦୁର୍ଭିକ୍ଷିତ ଦଳ
ଧାଆଁନ୍ତି ସେପରି, ଡାକ ହାକ ପରସ୍ପର ।
ଦାଣ୍ଡେ ବସିଥିଲେ କେହୁ, ଯାଉଥିଲେ କେହୁ
ଆଣିବେ କରଜ ଧାନ ଜମି ବନ୍ଧା ଦେଇ
ଦୂର ଗ୍ରାମ-ସ୍ଥ ମଠାରୁ; ଶୋଇଥିଲେ କେବା
ଦୁର୍ବଳ ନିରନ୍ନ-ନିଦ୍ରା; ଜଠରାଗ୍ନି ସେବା
କରୁଥିଲେ କେବା ଘରେ ବନ୍ୟ ଶାଗ, ମୂଳେ,
ଘୂରୁଥିଲେ କେବା ସେବଯାଏଁ ନଦୀକୂଳେ,
ବିଲେ, ବଣେ, ପ୍ରକୃତିରୁ ଯାଉଁଛି ଯାଉଁଛି
ମିଳିଯାଏ ଯଦି ଖାଦ୍ୟ ମାତ୍ର ଏକ ମୁଷ୍ଟି ।
ତଣ୍ଡୁଳ-ବଣ୍ଟନ କଥା ଉତ୍ତର ଗ୍ରାମରେ
ଲଗିଲା ସହସ୍ର ସେହି ବୁଭୁକ୍ଷୁ ପ୍ରାଣରେ,
ଲାଗେ ଯେସନେ ବନ୍ଦୀକର୍ଣ୍ଣେ ମୁକ୍ତିର ଖବର,
ଅନ୍ଧକାର ପଥେ ଆବିର୍ଭାବ ଆଲୋକର
ଲାଗେ ଯେସନେ ଶଂକାକୁଳ ପଥେ ପାନ୍ଥ ଜନେ,
ଲାଗେବା ଦକ୍ଷିଣା ବାୟୁ ବସନ୍ତ ଆଗମେ

ଉତ୍ତରରେ ଦୁର୍ଭିକ୍ଷ ପୀଡ଼ିତ ଜନତା ।

ଯେଉଁଠି ଶୀତ ଜଡ଼ୀଭୂତ ଘନ ଜନତାରେ;—
ଶୁଭଇଲେ ନିରନ୍ନ ଦଳ ଅବିଚ୍ଛିନ୍ନ ଧାରେ

ନିର୍ବଳ, ନିର୍ବସ୍ତ୍ର, ନିଃସ୍ୱ, ନିର୍ଲଜ୍ଜ, ନିର୍ଜ୍ଜନ
ନିରାଶ, ନିସ୍ତେଜ, ନିରବଲମ୍ବନ, ନିର୍ଗୁଣ
ଦୁର୍ଭିକ୍ଷଦଳିତ ସେହି ଓଡ଼ିଆ ଜନତା
ମାନବିକ ପତନର ମୂର୍ତ୍ତିମନ୍ତ କଥା ।
ସରୁ ସରୁ କର, ଜାନୁ, ସ୍ଫୀତ ଉଦୋଦର
ରୁକ୍ଷକେଶ, ପରିସ୍ଫୁଟ ଚକ୍ଷୁର କୋଟର,
ମଳିନ ଗ୍ରନ୍ଥିଳ ବାସ ନିବାରେ ସରମ,
ନେଇ ଅବା ସଦ୍ୟ ଫେରିଇଛି ତାଙ୍କୁ ଯମ ।
ଶୁଭଇଛନ୍ତି ଶିଶୁଦଳ ନିତମ୍ବ-ବିହୀନ,
ପିତାମାତା କର ଧରି । ମାତା, ପୟୋହୀନ
—ବକ୍ଷଶୁଷ୍କ, ବକ୍ଷୋଜେ ଗୁଞ୍ଜି ମୁଖ ଶାବକର
ଶୁଭଇଛନ୍ତି ଧୀରେ ଧୀରେ । ଜ୍ୱାଳା ଜଠରର
ନାହିଁ ସହି ପାରି ଆଉ, କେହି ପଥପାଶେ
ଦେଖି କିଛି ଭକ୍ଷଣୀୟ, ଧାଏଁ ତାହା ଆଶେ ।
ଆସୁଛନ୍ତି ପୁଣି ପଥେ କିଶୋର-କିଶୋରୀ
ଯାହାଙ୍କର ଅଙ୍ଗଭଙ୍ଗୀ ନେଇ ଅଛି କୋରି
ଦୀର୍ଘ କ୍ରୂର ନିରନ୍ନତା; ଶରୀର ଶିଥିଳ
ଦେଖିତ-ଶୂନ୍ୟ କ୍ଷେତ୍ର ପରି ଖାଲି ହାଡ଼ମାଳ ।
ଧୂଳିଗୋଡ଼େ ଏ ଶୀତଗ୍ରସ୍ତ ବୁଭୁକ୍ଷୁ ଜନତା
ଧାଇଁଛି ଉତ୍ତର ଗ୍ରାମେ, ମୁଖେ ନାହିଁ କଥା,

ଚାଲମାଳ ଚଳେ ଚଳେ, ବିଲ ହୁଡ଼େ ହୁଡ଼େ
ନାନା ବଙ୍କା ଟଙ୍କା ପଥେ ବୁଲଛନ୍ତି ଭଡ଼େ ।
ଦାରୁଣ ଆଶଙ୍କା,—ହୋଇଗଲା ଯଦି ଡେର,
ଆସିବାକୁ ହେବ ଅବା ରିକ୍ତ ହସ୍ତେ ଫେର ।

ସ୍ୱଚ୍ଛାସୁ ତୋଠାରେ ତେଣେ ସ୍ୱେଚ୍ଛାସେବୀ ଦଳ
ତଣ୍ଡୁଳ ପ୍ରଦାନେ ତୋଷି ଭିକ୍ଷୁ ଦଳ ଦଳ,
ଲେଉଟାନ୍ତି ତାଙ୍କୁ ଗୃହେ । ଲେଉଟିବେ କାହୁଁ
କଞ୍ଚା ଖାଇ ସେ ତଣ୍ଡୁଳ, ପାଇବାକୁ ଆଉ
ଆଗନ୍ତୁକ ଦଳେ ପୁଣି ମିଶନ୍ତି ସହାସେ ।
ପେଟ ତ ପୋଡ଼ଇ, ମନ ହୁଏ ଏକ ଗ୍ରାସେ
ଖାଇବାକୁ ଗଦାସ୍ଥିତ ସମଗ୍ର ତଣ୍ଡୁଳ,
ବୁଭୁକ୍ଷୁ ମାନବ କେହ୍ନେ କଥାର ଆଗୁଳ ?
ନ ପାରନ୍ତି ପଶି ଯେହ୍ନୁ ଭେଦ୍ୟ ଘନ ବ୍ୟୂହ,
ଦାନ୍ତେ କାହିଁ ପଡ଼ିଥିବା ତଣ୍ଡୁଳ ସମୂହ
ଗୋଟି ଗୋଟି ଖୁଣ୍ଟି ଖୁଣ୍ଟି ଖାଆନ୍ତି ନିଖାର
ପାରାବତ, ପିପୀଲିକା ମୁଖରୁ ନିବାରି ।

କ୍ରମେ ରବାହୂତ ଦଳ ଅଧିକୁଁ ଅଧିକ
ହେଉ, ବଢ଼େ ହଟ୍ଟଗୋଳ । ଭିକ୍ଷୁକ, ଧମକ
ଡଳ, ସୋରସର ପର ମିଶୁଁ ପରସ୍ପରେ
ବାଛିବାର ଚିନ୍ତା ଯାରେ ସ୍ୱେଚ୍ଛାସେବୀ ଦଳେ ।
ଜଣେ ଜଣେ ହୋଇ ନାନା ସ୍ଥାନେ ଆବିର୍ଭାବ
ଭିନ୍ନ ଭିନ୍ନ ସ୍ୱେଚ୍ଛାସେବୀଙ୍କର ହୃଦ-ଭାବ

ପ୍ରଶଂସାଭୂତ କରି, ନେବା ଶସ୍ୟ ବାରମ୍ବାର—
କ୍ରମେ କ୍ରମେ ଜାଣିଲେଣି ସ୍ୱେଚ୍ଛାସେବୀ ବାର ।
ଦଳପତି ଆଦେଶରେ ବଢ଼ାଇ ମଣ୍ଡଳ
ଦୃଢ଼ କରି ବାକ୍ୟ ଆଉ ହସ୍ତର ଅର୍ଗଳ,
ଜନତାକୁ ରଖି ଦୂରେ, ଦଳ ପରେ ଦଳ
ଛୁଡ଼ି, ବିଚରନ୍ତି, କର୍ମ ହେବାକୁ ସରଳ ।

ଏକାଳେ କେ ଏକ କର୍ମୀ କେଉଁ ଅଭାଗ୍ୟରେ
ସର୍ବନେଷ୍ଟ ଚଳେ ତିରସ୍କାରେ ଉଚ୍ଚସ୍ୱରେ
'ଏ ଶୃଙ୍ଖଳ ତାଙ୍କ ପାଇଁ ଯିଏ ଉପବାସୀ,
ତାଙ୍କ ପାଇଁ ନୁହେଁ, ଯିଏ ଥଲିବାଲା ଖୁସୀ ।
ଦିଶୁନାହଁ ତଲେ ତମେ ନ ଖାଇଲା ପରି
ଦେହ ଅଛି, ନିଜେ ପୋଷିପାର ଖଟି କରି,
ଦୁଇ ଦିନ ହେଲା ଦେଖେଁ ତମେ ବାରମ୍ବାର
ନେଉଛ ଶୃଙ୍ଖଳ ଏଠୁଁ, ଭଲ କାରବାର
ତିରସ୍କୃତ ଗ୍ରାମ୍ୟ ମଲ୍ଲ — ନୁହେଁତ ଏ, ଉଠିଯାଅ ଏଠୁ ଏଇକ୍ଷଣି
ଆସିବନି ଆଉ ଏଥେ, କିଅ ଯା ନେଲଣି ।'

ତିରସ୍କୃତ ହୋଇ ସର୍ବଜନ ସମକ୍ଷରେ
ଲୋକଟିଁ କହୁଁଛି ମୂଢ଼ ପରି ସରମରେ,
ଏକାଳେ ଶୁଭିଲା ସମସ୍ୱରେ ଜନତାରୁ,
"ବାବୁ, ବାବୁ, ଦିଅ ତାଙ୍କୁ ଆମରି ଭେଦାରୁ,
ଆଖଡ଼ାର ଗୁରୁ ସେ ଯେ ଏଖଣ୍ଡ ମଣ୍ଡଳେ
ଭାଙ୍ଗିଛି ସଭିଙ୍କ ଅଣ୍ଟା ଚିର ଦୁର୍ଭିକ୍ଷରେ,

କଏ ଆଉ ଶ୍ରଦ୍ଧା ଦେଇ ପାଇବର ପାଠ
ଶିଖିବ ତାଙ୍କଠୁ ? ଏବେ ଧରିବାରୁ ବାତ
ଅତି ମନ୍ଦ ହୋଇଅଛି ଅବସ୍ଥା ତାଙ୍କର
ନ ହେଲେ ସେ କାହା ପାଖେ ପାତନ୍ତେ କି କର ?
ତାଙ୍କୁ ଦେଲେ ତମ ଦାନ ହେବ ସାରଥକ
ଭାବନା ତାହାଙ୍କୁ ଆନପରେ ପ୍ରବଞ୍ଚକ ।”

ଏକଥା ନ ସରୁ, ଏକ ଅଲକ୍ଷିତ ସ୍ଥାନୁ
ଡାକେ କେ କୋମଳ ସ୍ୱରେ (ଦୟାର୍ଦ୍ର ପରଶୁଁ
ବାଣୀ ବହି ଆସେ ଯେହ୍ନେ ଶୀତ ବାରିଧାର)
“କମଳ, କମଳ, ବନ୍ଦ କର ତିରସ୍କାର,
କ୍ଷମାମାଗି ଦିଅ ତାଙ୍କୁ ଯଥେଷ୍ଟ ତଣ୍ଡୁଳ
କହି ପୁଣି ନ ଆସିବେ କାଲି ଏତେ ଦୂର,
ଆମ ଲୋକ ପହଞ୍ଚାଇ ଦେବ ତାଙ୍କ ଘରେ
ଲେଖି ରଖ ନାମ ତାଙ୍କ ଭକ୍ତ ପୁସ୍ତକରେ ।”

କିଏସେ ସେ ? ଶିହରିତ ବିମୁଗ୍ଧ ଜନତା
କଣ୍ଠେ ଶୁଣେ ଶାନ୍ତ ହୋଇ ପ୍ରାଣବନ୍ତ କଥା,
ସହସ୍ର ନୟନେ ପୁଣି ସୌମ୍ୟ ସେ ବଦନ
ଗୋପବନ୍ଧୁ
ଦେଖେ ବିକ୍ଷୋଭିତ ହୃଦେ, ଅପୂର୍ବ କମ୍ପନ ।
ସେ ଯେ ଗୋପବନ୍ଧୁ, ସଖା ଦୀନ-ଜନତାର
ପରଦୁଃଖ ଲାଗି ହୃଦ, ହୋଇ ଅଶ୍ରୁଧାର
ବହେ ଯାର ଅବିରତ । ଦେଖିଲେ ସକଳେ
ନାଉଅଛି ତପ୍ତ ଗଣ୍ଡ ଧାର-ଲୋତକରେ

ଘୂର୍ଣ୍ଣିଛନ୍ତି ଏକ ଦୁର୍ଭିକ୍ଷ ଭିକ୍ଷୁ ଭିଡ଼ସ୍ତରେ
ତା ପାଶେ ଯେ ସ୍ୱେଚ୍ଛାସେବୀ, ଘୂର୍ଣ୍ଣିଅଚ୍ଛି ଉଚ୍ଚେ ।
ସେ ଦୃଶ୍ୟ, ସେ ମର୍ମ-ବାଣୀ, ଅଶ୍ରୁ ସେ କରୁଣ
ବିଚଳିତ କଲା ସର୍ବେ, ବୟସ୍କ, ତରୁଣ ।

କ୍ରମେ କ୍ଷୀଣ ହୋଇ ଆସେ ଜନତାର ଧାର,
ଫେରିଗଲେଣି ନିଜ ନିଜ ଗ୍ରାମେ ଯେ ଯାହାର
ଶସ୍ୟ-ଭାଗ ଧରି ବସ୍ତ୍ରେ । ସଞ୍ଜ ହେଉ କ୍ରମେ
ସ୍ୱେଚ୍ଛାସେବୀ ଦଳ କ୍ଲାନ୍ତ ଦିବସର ଶ୍ରମେ
ସାଙ୍ଗ କରି ବିତରଣ-କର୍ମ ସେ ଦିନର
ସ୍ଥିର କରି ଖାତା-ପତ୍ର ଦତ୍ତ ତଣ୍ଡୁଳର,
ସକଳେ ମିଳିବେ ଗୋପବନ୍ଧୁ ବୃଦ୍ଧପାଶେ
ଠିଆ ହେଲେ, ଉପଦେଶ, ଆଦେଶର ଆଶେ ।
ଭାଷିଲେ ସେ ଶୋକାକୁଳ, "ଦେଖୁଛ ତ ପିଲେ
ତମ ଦେଶ-ଜନନୀର ବାସ୍ତବ ଛବିରେ !
କମଳ, କରିଲ ଯାକୁ ଭ୍ରମେ ତିରସ୍କାର
ଓଡ଼ିଆ ଜାତିର ତାକୁ ପ୍ରତୀକ ବିଚାର ।
ସେଇମାନେ ଗଢ଼ିଥିଲେ ଉତ୍କଳ ସାମ୍ରାଜ୍ୟ
ଗଙ୍ଗାଠାରୁ ଗୋଦାବରୀ ବିସ୍ତୃତ ଯେ ରାଜ୍ୟ,
ପାହାଡ଼କୁ ଚୂନା କରି ଗଢ଼ିଲେ ଦେଉଳ,
ସାଗରକୁ ଲଙ୍ଘିଗଲେ ଦୂର ଉପକୂଳ ।
ସେହି ସେ ଓଡ଼ିଆ ଆଜି ହୀନ, ବାତଗ୍ରସ୍ତ,
ପେଟେ ଭୋକେ ଘାସ ଖାଏ, ଧାଏଁ ଇତସ୍ତତଃ

ରାଜ୍ୟ ତାର ଛିନ୍ନ ଭିନ୍ନ, ଅନ୍ୟ ଅଧିକୃତ,
ଘୃଣିତ ସେ ପ୍ରକାଶ୍ୟରେ, ହୁଏ ତିରସ୍କୃତ
ଦାରିଦ୍ର୍ୟ, ଅଜ୍ଞତା ପାଇଁ; ବିଦେଶୀ ଶାସନ,
ନିଶ୍ଚିନ୍ତେ ଦେଖୁଛି ଆମ ଜୀବନ, ମରଣ ।
କ ଯାଏ ତାହାର, ଆମେ ମଲେ ବା ଜୀଇଁଲେ,
ଏବର ଓଡ଼ିଆ ପୂର୍ବ-ପୁରୁଷେ କ ଥିଲେ ?
କାହିଁକି ସେ ଯିବ ଖୋଜି ? ତା ଶାସନ-ରଥ
ଆମର ଖଜଣା-ଚକେ ବୁଲେ ଯେ ଯାବତ
ସନ୍ତୁଷ୍ଟ ସେ, ନିଶ୍ଚିନ୍ତ ସେ । ଏ ଘୋର ପତନୁ
କିଏ ସେ ଜାତିରେ ତବ, ଉଠାଇ, କଦନୁ
ଅଧଃପତିତ ଉତ୍କଳ — ଦେବ ତାହେ ପରିତ୍ରାଣ ? ମନୁଷ୍ୟ ଜୀବନ,
ନୁହେଁ ଖାଲି ପଶୁ ପରି ଆତ୍ମ-ଆୟୋଜନ,
ଦିନ ପରେ ଦିନ ଖାଲି ଖାଦ୍ୟ ଅନ୍ୱେଷଣ,
ଅଥବା ଇନ୍ଦ୍ରିୟ-ସୁଖେ ବଂଶ-ପ୍ରଜନନ ।
ଜାନ୍ତବ-ଇନ୍ଦ୍ରିୟ-ତୃପ୍ତି ଊର୍ଦ୍ଧ୍ୱେ ବିଚରଣ
କରି, କଲେ ମହତ୍ତର ସୁଖାନୁଗମନ,
ଫୁଟଇ ଦେବତ୍ୱ ନର ମାଟିର ଶରୀରେ,
ସେହି ହିଁ ସଭ୍ୟତା ଏହି ମାଟି ଧରଣୀରେ ।
ସେ ଜାତି ସେତିକି ଉଚ୍ଚ, ଛନ୍ତି ଯେ ଜାତିରେ
ଯେତେ ବେଶୀ ଲୋକ, ପଦ ଯାହାଙ୍କ ମାଟିରେ
ଥିଲେ ମଧ୍ୟ, ଉତ୍ତମାଙ୍ଗ ଲାଗେ ବ୍ୟୋମନ୍ତରେ,
ଦୈନନ୍ଦିନ ବାସନାର ବହୁତ ଉପରେ,

ଷପ୍ସୁନ୍ତ ଶରୀର ସେବା ସମାଜ କଲ୍ୟାଣେ
ଧର୍ମ, ସେବା, ବିଜ୍ଞାନର ସଙ୍ଗ ସମାଧାନେ ।
କାହାନ୍ତି ସେ ଲୋକ ଏଥି ? ସର୍ବେ ସ୍ୱାର୍ଥପର,
ଅନ୍ୟ ଦୁଃଖ ପାଇଁ କାର ନାହିଁ ଅବସର ।
ସର୍ବେ ମତ୍ତ କ୍ଷଣିକର ଆଶୁ ସୁଖସ୍ୱାଦେ
ଜାତିର ମରମ-ବ୍ୟଥା କାରେ ନାହିଁ ବାଧେ ।
ଆଶା ଖାଲି ତୁମପରି ତରୁଣ କୁଳରୁ
କଏ ସନ୍ଧ ହୋଇପାରେ ଜାତି-କଳ୍ପତରୁ,
ନିଜର ସମସ୍ତ ଦେଇ ମାନବ ସେବାରେ,
ଇଚ୍ଛାଥିଲେ ନରପୁଙ୍ଗ ସବୁ କରିପାରେ ।”

ମାରିବିଲେ ଗୋପବନ୍ଧୁ, ଲୋତକର ଧାର
ଗଣ୍ଡ ସିକ୍ତ କରି ବନ୍ଦେ । ସ୍ୱେଚ୍ଛାସେବୀବାର
ପୁଣ୍ୟଶ୍ଳୋକ ସେ ପୁରୁଷ ବାଣୀର ପରଶେ
ଉଦ୍‌ବୁଦ୍ଧ ହୋଇଣ କ୍ଷଣେ ପୁଣ୍ୟ ଆଦରଶେ
ହେଲେ ଅଶ୍ରୁ-ସିକ୍ତ-ନେତ୍ର । ପିଲାଙ୍କ ଅବସ୍ଥା
ଲକ୍ଷ୍ୟ କରି ଗୋପବନ୍ଧୁ ଫେରାଇଣ କଥା
ପଚାରିଲେ ଗ୍ରେଟ ଗ୍ରେଟ ମାମୁଲି ଜିଜ୍ଞାସା,
ଖାଇବା ପିଇବା, ଘରେ ଲେଖିବାର ଭାଷା,
ନାମ ଧରି ଏକେ ଏକେ ପଚାରି ପଚାରି
କ୍ଷଣକେ ସେ ବେଦ-ଋଷି ହୋଇଲେ ଅଚାଳି ।
ଉଦ୍‌ବେଜିତ ଅଶ୍ରୁସିକ୍ତ ସ୍ୱେଚ୍ଛା ସେବୀଦଳ
ଗଲେ ଏବେ ଯେଝା ପଥେ ହସି କରି କରି ।

# ଜନନାୟକ

ଶାନ୍ତ ଜ୍ୟୋତ୍ସ୍ନା-ନିଶୀଥିନୀ । ସୈନ୍ଧବ ପବନ
ତାଳ ନାରିକେଳ କୁଞ୍ଜେ ମର୍ମର ରଚନ
କରେ ଯାହା ଶବ୍ଦ ସୃଷ୍ଟି, ନଚେତ ସେ ଗ୍ରାମେ,
ମଗ୍ନ ସର୍ବେ ନୀରବତ ଦିନାନ୍ତ ବିଶ୍ରାମେ ।
ଗ୍ରୀଷ୍ମକାଳ । ଗ୍ରାମଜନେ ମୁକ୍ତ ନଭ ତଳେ,
ଅଳିନ୍ଦେ, ଅଙ୍ଗନେ, ଅବା ଦାଣ୍ଡବାଲି ପରେ
ଯେ ଯହିଁ ପାଇଲା ସ୍ଥାନ, ପଡ଼ିଛନ୍ତି ଶୋଇ
ସିନ୍ଧୁବାତ ନିଏ ତାଙ୍କ କ୍ଳାନ୍ତି-ସ୍ୱେଦ ବୋହି ।
ସ୍ୱେଚ୍ଛାସେବୀ ଶିବିରେ ବି ସରବେ ଶୟାନ·
ନିର୍ବାପିତ ସର୍ବଦୀପ, ସବୁ ଶୂନ୍‌ଶାନ୍ ।
ପ୍ରସାରିତ ବଂଶପଟ୍ଟୀ, ଯେ ଯହିଁ ତା' ପରେ
ଗାଢ଼ ନିଦ୍ରା ଅଭିଭୂତ, ଦିନ-ଶ୍ରମ ପରେ
କିଶୋର, ତରୁଣ ଦଳ । ତାଙ୍କ ସ୍ନିଗ୍ଧ ମୁଖ
କରିଛି ସୁନ୍ଦରୋଜ୍ଜ୍ୱଳ ଶୀତାଂଶୁ ମୟୂଖ ।
ବୃକ୍ଷଲତା ପତ୍ରେ ପତ୍ରେ ଶୀତାଂଶୁ କିରଣ
ପଡ଼ି କରେ ଚକ ଚକ । ଶ୍ୱେତ-କୃଷ୍ଣ-ବର୍ଣ୍ଣ
ଛାୟା-ଆସ୍ତରଣ ବିସ୍ତୁ ପ୍ରାନ୍ତ ତରୁ ତଳେ,
ନମେ ମାଟି, ବାୟୁ, ଆର୍ଦ୍ର ଶୀତ-ଚନ୍ଦ୍ର-କରେ ।
ଜ୍ୟୋତ୍ସ୍ନା, ନିଦ୍ରା, ନିଶୀଥର ଶାନ୍ତ ରଙ୍ଗାଳୟେ
ଶାନ୍ତିହୀନ କିନ୍ତୁ ଜଣେ; ତନ୍ଦ୍ରାଳ ସମୟେ
ବିଶ୍ୱ ଯେବେ ନିଦ୍ରାମଗ୍ନ, ସେ ଯେ ସଚେତନ
ରହି ଗୋଷ୍ଠୀଛଡ଼ା, କରେ ପଦ ସଞ୍ଚରଣ ।
ଦେଖୁଛି ସେ ଜ୍ୟୋତ୍ସ୍ନା ଲୀଳା, ଊର୍ଦ୍ଧ୍ୱେ ମହାନଭେ
ଯିବା ଗ୍ରୀଷ୍ମ ମେଘମାଳା ଶ୍ୱେତ ମହୋତ୍ସବେ

ଉଠି ଯାଏ ମିଲ୍ନ ଜନ୍ତୁ, ଉତ୍ତରାଭିମୁଖେ
ଧୀରେ, ନିଶ୍ଚିନ୍ତରେ, ଯେହ୍ନେ ଶ୍ୟାମବନ ବୁକେ
ଖେଳି ଖେଳି ଯାଉଛନ୍ତି ଶ୍ୱେତହସ୍ତୀ ଦଳ
ଘ୍ରାଣ, ବଡ଼, ମାଛ, ମାଂସ, ଖ୍ରୀମ ଧ୍ୱନ୍ତାବଳ ।
ଶୁଣୁଁଛି ସେ ଥରେ ଥରେ ନିକଟେ ଶୟାନ
ବନ୍ଧୁବର୍ଗେ, ଶୁଣେ ପୁଣି ଏକତାନ୍ତ୍ରୀ ଗାନ
ଗାଇ ଗାଇ ଗଲା କେହ୍ନେ ଟେଣ୍ଟୋଇ ଆକାଶେ,
କେବେ ଭୁକେ ଦ୍ୱାର ଗ୍ରାମଶ୍ୱାନ ଶୂନ୍ୟ ଆଶେ ।
ସବୁ ସେ ଦେଖୁଛି, କିନ୍ତୁ ହୁଏ ଯେହ୍ନେ ଜଣା
ଅନ୍ତରେ ମୂଳିଛି କେଉଁ କ୍ଷୁବ୍ଧ ବିସ୍ମରଣା
ଯା' ଯୋଗୁଁ ସେ ଦେଖି ମଧ କିଛି ଦେଖୁ ନାହିଁ
ଯା' ଯୋଗୁଁ ନୟନେ ତାର ଆଜି ନିଦ୍ରା ନାହିଁ ।

କିଏ ସେ ସେ ?
ନାମ ତାର କମଳଲୋଚନ,
ବ୍ରାହ୍ମଣ ବଂଶଜ, ବୟ ନବ ଯଉବନ ।
ସୁଗଠିତ ଗୌର ବପୁ—ପାତଳ, ମାଂସଳ;
ଆୟତ ନୟନ ଯୁଗ—ପ୍ରତିଭା ଉଜ୍ଜ୍ୱଳ ।
ସଦା ହସ ହସ ମୁଖ, କ୍ଷିପ୍ର ହସ୍ତପଦ
ନିରଳସ, ବନ୍ଧୁ ମେଳେ ବିଶେଷେ ନର୍ମଦ ।
ଛାତ୍ର ସେ, ଦେଇଛି ଏବେ ମାଟ୍ରିକ୍ୟୁଲେଶନ
ବୁଦ୍ଧିମାନ,—ନୁହେଁ କିନ୍ତୁ ଗ୍ରନ୍ଥ-ପରାୟଣ ।
ଘରେଛନ୍ତି ପିତା ମାତା ଭଗିନୀ ଓ ଭାଇ,
ଦରିଦ୍ର କୁଟୁମ୍ବ,—କିନ୍ତୁ ନିଶ୍ଚିନ୍ତରେ ଥାଇ

ତରୁଣ
କମଳଲୋଚନର
ଆନ୍ତରିକ ବିକ୍ଷୋଭ

ହସେ, ଖେଳେ, ଗୀତ ଗାଏ, କଳି, ଥଟ୍ଟା କରେ
ପୁଣି ଭଲ ମୂଲ୍ୟ ପାଏ ପରୀକ୍ଷା-ପତ୍ରରେ ।
ନିଜେ ସେ ନିଜେରେ ପୂର୍ଣ୍ଣ, ଆପଣା ଖିଆଲେ
କମଳଲୋଚନ ମହାପାତ୍ର ନିତ୍ୟ ଚାଲେ ।
ପରୀକ୍ଷାର ଶେଷେ କିଛି ନ ଥିବାରୁ କାମ
ସାଙ୍ଗ ମେଳେ ଆସିଲା ସେ ଗୁଡ଼ ଘର, ଗ୍ରାମ
କେବଳ ନୂତନ କୌତୂହଳ ସନ୍ଧାନରେ
ଲୋକ-ସେବା ଗନ୍ଧ ନାହିଁ ଥିଲା ତା ମନରେ ।
କିନ୍ତୁ ସେଦିନର ଦୃଶ୍ୟ, ଭ୍ରମେ ତିରସ୍କାର
କରିବା ସେ ଗ୍ରାମ-ମଲ୍ଲୀ, ଦୁର୍ଦ୍ଦଶା ତାହାର,
ପ୍ରାଣସ୍ପର୍ଶୀ ଗୋପବନ୍ଧୁ ବାଣୀ ତାହାପରେ
ସୃଜିଛି ତୋଫାନ କମଳର ହୃଦପୁରେ ।
ଯୌବନର ବନ୍ଧୁ-ପଥ ସ୍ୱପ୍ନ-ଉପବନେ
ଖେଳୁଥିଲା ଯେହୁ, ଏକ ଅକସ୍ମାତ୍ କ୍ଷଣେ
ଦେଖିଲା ସେ ତା ସମ୍ମୁଖେ ମାତ୍ର ଦୁଇ ପଥ ।
କେଉଁ ପଥେ ଯିବ ? ନାହିଁ ଭାବନାର ଅନ୍ତ ।
ଘରେ ତାର ବୃଦ୍ଧ ପିତା, ଇସ୍କୁଲ୍ ଶିକ୍ଷକ
ସ୍ୱଳ୍ପ ବେତନ, ନାଲ୍ପ କୁଟୁମ୍ବ-ପାଳକ ।
ଦୀର୍ଘ ଦାରିଦ୍ର୍ୟର ଶେଷେ, କେତେବର୍ଷ ତଳେ
ଗୃହୀତ ହେବାରୁ ପାଠ୍ୟ-ପୁସ୍ତକ ରୂପରେ
କବିତାପ ତାଙ୍କର କିଛି, ବଦଳିଛି ଭାଗ୍ୟ
କୁଟୁମ୍ବ-ଚାଳନ-ନଦ ହୋଇଛି ସୁନାବ୍ୟ ।
ବଡ଼ଭାଇ ଶ୍ୟାମଚନ୍ଦ୍ର ଧରିଛି ଚାକିରି
ପୁରୀରେ,—ରହିଛି ସେନ ତାର ପିଲା ପିଲା,

ତା ଟଙ୍କା ନଅଣ୍ଡ ତାକୁ ବୋଲି ସେ ପ୍ରଶ୍ନରେ
ଘର ଘର ସମସ୍ତଙ୍କ ବାପାଙ୍କ ମଥାରେ ।
ବିଧବା ଭଗିନୀ ଘରେ, ଛଳେ ସାନ ଭାଇ,
ପିତା ମଲେ ନାହିଁ ଥିବ କିଛି କାହାପାଇଁ ।
ପିତାଙ୍କର ବଡ଼ ଆଶା, ପଢ଼ିବ କମଳ
ବହୁ ପାଠ, ହେଲାଯାଏଁ ସରକାରଙ୍କର
ବିଶିଷ୍ଟ ଭୃକର, ଘରେ ସମ୍ମାନ ଓ ଧନ
ଭରିଯିବ, ତାହା ପରେ କନ୍ୟା-ପିତାଗଣ
ଆସିଯିବେ ଏକେ ଏକେ କୁଟୀର ଦୁଆରେ,
ଏକ ହସ୍ତେ କନ୍ୟାରତ୍ନ, ଆରେକ ମୁଠାରେ
ମହା ମୂଲ୍ୟ ଯଉତୁକ; ବାଛିବେ ସେ ଏକ
ଯେ ଦେବ ତାହାଙ୍କୁ ଲକ୍ଷ୍ମୀ, ସାମାଜିକ ଟେକ ।
ମନୁଷ କରିବ ସାନ ଭାଇରେ କମଳ
ହେବ ମାତା, ଭଗିନୀର ଏକାନ୍ତ ସମ୍ବଳ ।
ପିତାଙ୍କର ଏହି ଆଶା, ପରୋକ୍ଷ ବଚନେ
ପ୍ରବେଶିଛି ବହୁକାଳୁ କମଳ ଶ୍ରବଣେ ।
କୂଳେ ଉଠି ହଂସ ଯେସ୍ନେ ଝାଡ଼ି ଦିଏ ପାଣି
ପକ୍ଷୁ ତା'ର, କମଳ ଏ କଥା ସବୁ ଜାଣି
ହୁଏ ଖୁସି; ଦିଏ କରୁ ପୋଛି ସ୍ମୃତିପଟୁ,
ସ୍ୱଇଚ୍ଛାରେ ଧୂଏ ତା ଜୀବନର ନଟୁ ।
ଆଜି କରୁ ଦେଖାଇଲା ଗୋପବନ୍ଧୁ ବାଣୀ
ଯେ ପଥ, ଯେ କ୍ଳେଶମୟ କରୁଣ କାହାଣୀ
ଶୁଣାଇଲା ତା ଜୀବନର, ମାନବ ସେବାର
ଦେଖାଇଲା ଯେ ଆଦର୍ଶ, ନିଜକୁ ଦେବାର

ସହସ୍ର କଲ୍ୟାଣଲାଗି ଅକୁଣ୍ଠିତ ଚିତ୍ତେ,
ଭରିବା ଜୀବନ ଶାନ୍ତ ଅଧ୍ୟାତ୍ମ ସଙ୍ଗୀତେ—
ସଂଯମ, ଶୁଶ୍ରୂଷା, ଶୁଦ୍ଧି, ସମବେଦନାର,—
ଊର୍ଦ୍ଧ୍ୱେ ଉଠି କ୍ଷୁଦ୍ର ସ୍ୱାର୍ଥ, ଇନ୍ଦ୍ରିୟ ଚର୍ଚ୍ଚାର,
ଅନୁଦ୍‌ବେଗ ଚିତ୍ତ ତାର କରେ ଆନ୍ଦୋଳିତ
କେଉଁ ପଥେ ହେବ ତା'ର ରଥ ସଞ୍ଚାଳିତ !
ସ୍ନେହମୟ ନନାଙ୍କର ଯେତେ ମଧୁ ଆଶା
କି ଯୁକ୍ତିରେ ଦଳିବ ସେ ? ନ ଆସଇ ଭାଷା ।
ଜ୍ୟେଷ୍ଠଭାଇ ମଦନଶ୍ରୀ, ବିଧବା ଭଗିନୀ,
ସ୍ନେହମୟୀ ମାତା, ଶାନ୍ତ, ଅଳପ-ଭାଷିଣୀ;
ଏମାନଙ୍କୁ ଫିଙ୍ଗି ଦେଇ ଦାରିଦ୍ର୍ୟ ଜଂଜାଳେ
ପରସେବା କରିବ ସେ କି ପୁରୁଷକାରେ ?
ଧନର ପ୍ରାଚୁର୍ଯ୍ୟ ଥିଲେ ନାହିଁ ଥିଲା କଥା
କୁଟୁମ୍ବ କରନ୍ତେ ଆପେ ନିଜର ବ୍ୟବସ୍ଥା ।
କରନ୍ତା ସେ ଏହିଠାରୁ ସନ୍ନ୍ୟାସ ଗ୍ରହଣ
ଦେଶ ପାଇଁ, ବିଶ୍ୱପାଇଁ, ଛାଡ଼ି ଅଧ୍ୟୟନ ।
ଛାଡ଼ି ସୁଖ ସାଂସାରିକ, ଗୋପବନ୍ଧୁ ପଦ
ଅନୁସରି ଅରଜନ୍ତା ଅଧ୍ୟାତ୍ମ ସଂପଦ ।
ସେ ଭାଗ୍ୟ ତାହାର କାହିଁ ? ଶୋଚଇ କମଳ,
ରୁଚି-ବିପରୀତ ଭାଗ୍ୟ ସଦା ଦରିଦ୍ରର ।
ବିକ୍ଷୋଭିତ ଚିତ୍ତ ଦେନି ପଦ ସଞ୍ଚରଣ
କରୁଁ କରୁଁ ଅବ ତବ କମଳ ଏସନ,
ଶୁଣିଲା ସେ ଅଲକ୍ଷିତ ସ୍ଥାନୁ କେ ଡ଼ାକଇ
'କମଳ' 'କମଳ' ବୋଲି—ଦେଖିଲା ଆସଇ

ସେ ମୂର୍ତ୍ତି ତାହାର ଆଡ଼େ ତୋଟା ଅନ୍ଧକାରୁ;
ନିକଟ ହେଲାରୁ ଦେଖେ ଏ ଯେ ମୂର୍ତ୍ତି ଗୁରୁ
ଗୋପବନ୍ଧୁଙ୍କର, ମଥା ହୋଇଛି ଆବୃତ
ଖଦଡ଼ର ଉତ୍ତରୀରେ, ହୋଇଛି ବିସ୍ତୃତ
ପୁଣି ତାହା ଚରମରେ, ଅନାବୃତ ସହିଁ
ଗୌର ଦେହ ଜ୍ୟୋତ୍ସ୍ନାସ୍ପର୍ଶେ ମୃଦୁ ଝଟକଇ ।
ଅକସ୍ମାତ୍ ଏ ଦର୍ଶନେ ପୂର୍ବ ଚିନ୍ତାମାନ
ଲୋଷ୍ଟ୍ର କ୍ଷେପେ ପକ୍ଷୀସମ କଲେ ପଳାୟନ;
ନୂତନ ଆଶଙ୍କା ତାର—ଗ୍ରାମମଲ୍ଲ ପାଇଁ
ଆଉ କିଛି ଭର୍ତ୍ସନା ବା ଅବଶେଷ ଥାଇ ।
କିନ୍ତୁ ଗୋପବନ୍ଧୁ ଆସି ସମ୍ମୁଖେ ତାହାର
ପଚାରିଲେ ଧୀର କଣ୍ଠେ "ରାତ୍ରି ଯେ, ବାଆର
ବାଜିଲାଣି, ଶୋଇ ନାହିଁ ତମେ ଯେ କମଳ,
—ଦେହ କିଛି ଖରାପ କି ?" ଦିଏ ସେ ଉତ୍ତର
"ନାହିଁ ସାର୍, କେଉଁ କାରଣରୁ ନୋହୁ ନିଦ
ଦେଖିବାକୁ ଗ୍ରାମ-ଶୋଭା, ଶାନ୍ତ ଜ୍ୟୋତ୍ସ୍ନା ସ୍ନିଗ୍ଧ
ବୁଲୁ ଛି ମୁଁ ମାତ୍ର ଏଇ, ଶୋଇବି ଏଥର;
ଆପଣ ନାହାନ୍ତି ଶୋଇ ! ହେଲାଣି ଶୀତଳ
ଅତ୍ୟଧିକ ରାତ୍ରି-ବାୟୁ, ଯାଆନ୍ତୁ ଭିତରେ
ଶୁଖି ଯାଉଛନ୍ତି ସାର୍; ଏ କେତେ ଦିନରେ ।"

କିଶୋରର ଅନାବିଳ ଏ ସମବେଦନା
ଅନାବିଳ ଗୋପ-ପ୍ରାଣେ ଭାବୋର୍ମି-ରଚନା

କହୁଁ, ଅଶ୍ରୁ ଝରିପଡ଼େ ଦୁଇ ନୟନରୁ
ମେଘର ବିଦ୍ୟୁତ୍ ଯେହ୍ନେ, ବିଦ୍ୟୁତ୍ ଚଳରୁ
ଟାଣୁଁ, ଶତଦ୍ରୁଦା ହୁଏ ଗଗନେ ସଂଜାତ;
କମଳର ବାମସ୍କନ୍ଧେ ରଖି ଦକ୍ଷ ହାତ
ଘଷିଲେ ସେ, କରୁଣାର ଜୀବନ୍ତ-ପ୍ରକାଶ,
"କମଳ, ଜାଣନା ବତ୍ସ, ଦେଇଛୁ ସନ୍ନ୍ୟାସ
ବନ୍ଧୁକାଳୁ ଦୈନନ୍ଦିନ ସ୍ୱାଚ୍ଛନ୍ଦ୍ୟ, ସଂବେଗ
ଯେଦିନୁ ବୁଝିଲି ପ୍ରାଣେ ଜାତିର ଦୁର୍ଯୋଗ,
ଶାସକ ଓ ପ୍ରକୃତିର ନିର୍ମମ ପ୍ରହାରେ
କେମନ୍ତେ ମାନବ ସଙ୍ଘ ମରେ ହାହାକାରେ ।
ସେହି ସେ ମାନବ ଯଦି ଧର୍ମେ, ଇତିହାସେ
ହୋଇଥାନ୍ତି ଆପଣାର, ଜାତି ତାଙ୍କ ଆଶେ
ହେବା ସ୍ୱାଭାବିକ ସମବେଦନା ଗଭୀର
ତେଣୁ ଉତ୍କଳର ଦୁଃଖେ ମୋର ଆଖେ ନୀର ।
ବେଳେ ବେଳେ ଦୁଃଖ କରେ ଏତେ ମୁହ୍ୟମାନ,
ବିନିଦ୍ର ହୁଅଇ ନିଶା, ଦେବତାରେ ଧ୍ୟାନ
କରି, ମାଝ କଟାଏ ମୁଁ ପ୍ରହର ପ୍ରହର
କରୁଣ ପ୍ରାର୍ଥନେ ଭରି ବିକଳ ଅନ୍ତର ।
ଦେଖି ଦେଖି ଏ ଦେଶରେ ମାନବ ଦୁର୍ଦ୍ଦଶା
ହରାଉଛି ବେଳେ ବେଳେ ଈଶ୍ୱର-ଭରସା ।
ଯେ ମାଟିରେ ଜଗନ୍ନାଥ ଯୁଗଯୁଗ ଧରି
ଆସୁଛନ୍ତି କୋଟି ଜନେ ମୁକତି ବିତରି,
ଶୁଣୁଛନ୍ତି ଆର୍ତ୍ତଜନ ବିକଳ ପ୍ରାର୍ଥନା,
ସେ ମାଟିର ପୁତ୍ରକନ୍ୟା ଏତେ କଦର୍ଥନା

ଭୋଗଇ କପାଇଁ, ମୁଁ ଯେ ନ ବୁଝେଁ କମଳ,
ନାନା ବ୍ୟର୍ଥ ଭାବନାରେ ଚିତ୍ତ ମୋ ବିକଳ ।
ସହାୟସମ୍ବଳହୀନ କେତେ ବା ଯୁଝିବ
କେତେ ଡାକ ଦେଇ ଅବା ଜାତି ବଞ୍ଚାଇବ
ସମସ୍ୟା ପ୍ରଚୁର, ସାଧୁକର୍ମୀ ଦେଖା ନାହିଁ,
ସବୁଆଡ଼େ ଶ୍ରେଷ୍ଠ ଅହମିକାର ଲଢ଼ାଇ ।
ତୁମର ବାପାଙ୍କୁ ଜାଣେ, ସାମାନ୍ୟ ଶିକ୍ଷକ
ହେଲେ କି ହୋଇଲା, ଜଣେ ମନୁଷ୍ୟ-ଗଠକ;
ସାଧୁ, ଦକ୍ଷ, ଧର୍ମ-ଭୀରୁ, କାର୍ଯ୍ୟ-ପରାୟଣ
ଛାତ୍ରଙ୍କ ମଙ୍ଗଳାକାଙ୍କ୍ଷୀ, ଉଦାର ମନନ ।
ଏହିପରି ଦୁଇଗଣ୍ଡା ଗୁରୁ ଏ ଦେଶରେ
ଥିଲେ ଉଠିଯାନ୍ତା ଜାତି ବହୁତ ଉପରେ ।
ବେଶି କିଛି ନୋହି, ଖାଲି ହୁଅ ପିତା ସମ
ତମ ପ୍ରତି ଏଇ ମୋର ଆଶୀଷ ପରମ ।"

ପିତାଙ୍କର ପରଶଂସା ଗୋପବନ୍ଧୁ ଭାଷେ
ଶୁଣିଣ କମଳ ଦୁଇ ନେତ୍ର ଜଳେ ଭାସେ,
ଭାବାବେଗେ ନଇଁ ଧରେ ଗୋପବନ୍ଧୁ ପଦ,
କହିବାକୁ ଯାଉଥିଲା ତାଙ୍କୁ କେତେ ପଦ,
ବାଷ୍ପରୋଧ କଲା କଣ୍ଠ, କାନ୍ଦେ କଇଁ କଇଁ
ତୋଳି ନେଲେ ତାକୁ ବକ୍ଷେ ଗୋପବନ୍ଧୁ ନଇଁ,
ନିଜ ଉତ୍ତରୀୟେ ପୋଛିଦେଲେ ଅଶ୍ରୁ ତାର
ପୋଛୁ ପୋଛୁ ବୁଝାଇଲେ, "କମଳ, ସଂସାର

କାନ୍ଦିଲା ଲୋକର ନୁହେଁ; ସେ ଉଜଣ୍ଟୀ ନର
ଭବକୁ ନିରୋଧି ଯେହ୍ତୁ ହୁଏ କର୍ମପର
ଆତ୍ମବଳେ ବଳୀୟାନ୍, ଦଳେ ବାଧା ବିଘ୍ନ,
ସ୍ଥିତ-ପ୍ରଜ୍ଞ, ଏକନିଷ୍ଠ, ସୁଦୃଢ଼-ପ୍ରତିଜ୍ଞ ।
ହୁଅ ସେହିପରି ବସ୍ତ୍ର, କାର୍ପାସ, କୋମଳ
ହୁଏ ଯେହ୍ନେ ଟାଣସୂତ୍ର, ଅଭ୍ୟାସ ଅଟଳ
ଧୀରେ ଧୀରେ ସେହିପରି ଗଢ଼ିବ ବ୍ୟକ୍ତିତ୍ୱ
ବଢ଼ୁ ବଢ଼ୁ ଆପେ ଜଣାଯିବ ବସ୍ତୁ ତତ୍ତ୍ୱ ।
ଯାଅ ଏବେ ପଢ଼ ଶୋଇ, ମୁହିଁ ମଧ୍ୟ ଯାଏଁ
କାଲି ତମେ ନିଜେ ଯିବ ସେହି ମଲ୍ଲି ଗାଏଁ
ନେବ ଆଉ ଜଣେ ସାଥେ, ଦୁହେଁ କରି ଭାର
ଦେବ ନେଇ ଯେତେ ତାର ତଣ୍ଡୁଳ ଦର୍କାର ।"

# ଦ୍ୱିତୀୟ ସର୍ଗ

## କଲେଜ ଜୀବନ

"ବଶମ୍ବଦ କମଳର ଏ ପତ୍ର ହେ ନନା,
ପଢ଼ି, ମୁଁ ଆଶଙ୍କା କରେଁ ହୋଇବ ବିମନା ।
କିନ୍ତୁ ଅନୁରୋଧ, ଜାଣି ଉଦ୍ଦେଶ୍ୟ ମୋହର
ନୋହି ବିରକତ, ମତେ ଲେଖିବେ ସଅଳ
ଆପଣଙ୍କ ମତାମତ, କେଉଁ ପଥେ ଯିବି
ସାର୍ଥକତା କିପରି ଏ ଜୀବନେ ଲଭିବି ?
କଲେଜ ଯାଉଛି ନିନା, ଶୁଣୁଛି ଲେକ୍‌ଚର
ପରୀକ୍ଷା-ପାଫଲ୍‌ଲାଗି ଅଛି ବି ତତ୍ପର,
ଯେଦିନୁଁ ଲଭିଲି କିନ୍ତୁ, ଗୋପବନ୍ଧୁ ସଙ୍ଗ
ଶୁଣିଲି ତାଙ୍କର ବାଣୀ; ପ୍ରକୃତ ପ୍ରସଙ୍ଗ
ମୋ ଦେଶର ଅକସ୍ମାତ୍ ହେଲା ହୃଦଗମ
ସେଦିନୁ ଅଶାନ୍ତ ଉପଜାତ ଚିତ୍ତେ ମମ ।
କମଳର — କି ହେବି ଜୀବନେ, ତା'ହିଁ ଭାବେ ଦିନ ରାତି
ପିତାଙ୍କୁ ପତ୍ର — ହେବି କି ଗୃହସ୍ଥ, ପୁତ୍ର କନ୍ୟା ଗୃହ ପାତି,
ଅବା ହେବି ଦେଶଲାଗି ଦରିଦ୍ର ସନ୍ନ୍ୟାସୀ,
ସର୍ବତ୍ୟାଗୀ,—ନୋହି ଧନ-ଯଶ-ଅଭିଳାଷୀ ।
ଜାଣେ ନନା, ବହୁ ଆଶା ରଖିଛ ମୋଠାରେ
ନାନା ବେଳେ ବୋଉ ମଧ କହୁଛି କଥାରେ
କେମନ୍ତେ ରୋଜଗାର କରି ଆଣିବି ସମ୍ପତ୍ତି
ବଢ଼ାଇବି ସମାଜରେ ବଂଶ ପ୍ରତିପତ୍ତି

ଘର ଜମି କର ବୋଲାଇବ 'ବଡ଼ଲୋକ'
ଅନ୍ୟେ ଗୃହିଁଥିବେ ହାତୁଁ ପାଇବାକୁ ସ୍ତୋକ ।
ଜାଣୁଛି ମୁଁ ନନା, ତମେ ଘୋର ଦାରିଦ୍ର୍ୟରେ
ଆମକୁ ଜିଆଁଇ ରଖି, ଶେଷ ବୟସରେ
ଶାନ୍ତିରେ କାଟିବା କାଳ, ରଖିଅଛ ଆଶା
ଆମର ସମୃଦ୍ଧି ଦେଖି । ନାହିଁ ପାଏ ଭାଷା
କେମନ୍ତେ ତମର ସେହି ଆଶା ସ୍ୱାଭାବିକ
ଭାଙ୍ଗିବି, ହେଲେହେଁ ତାହା ମୋ କର୍ତ୍ତବ୍ୟ ଠିକ ।
କିନ୍ତୁ ନନା, ଏଣେ ପୁଣି ବିଗ୍ଣରର ମନେ
ପଦ, ସମ୍ପଦ କି ସବୁ ମାନବ-ଜୀବନେ ?
ଡକାଇତ ଅର୍ଜେ ଧନ, ଅର୍ଜେ ବାରନାରୀ
ମରନ୍ତି ପ୍ରତ୍ୟହ ଶତ ଶତ ପଦ-ଧାରୀ,
ସମାଜ ଭାବଇ ଏମାନଙ୍କ ମରଣରେ,
ମୃତ୍ୟୁ ଅବା ସଫା କଲା ଧରା-ପ୍ରାଙ୍ଗଣରେ !
ପାଠ ପଢ଼ି ରଖିବ କି ଇତର ଆଦର୍ଶ
ଅବା ଯିବ ଉପରକୁ, ଦିଅ ପରାମର୍ଶ ।
କେତେବାର ଶୁଣାଇଛ ଗୀତାର ସନ୍ଦେଶ
ତ୍ୟାଗେ ମାତ୍ର ଉନ୍ନତିପାରେ ବ୍ୟକ୍ତି, ଜାତି ଦେଶ;
ଭୋଗରୁ ବିରୋଧ ଜନ୍ମେ, ଉପୁଜେ ସମର
ଦୃଷ୍ଟାନ୍ତ ଦେଖାଅ ଦଶା ନବ୍ୟ ଇଉରୋପର ।
ତମ କଥା ନନା ସେବେ ମର୍ମେ ନ ପଶଇ
ବଞ୍ଚୁଥିଲି ସ୍ୱକେନ୍ଦ୍ରିକ, ମନେ ମନେ କହି,
"ଏ ସବୁ ସୁନ୍ଦର ଦିଶେ ବାର୍ଦ୍ଧକ୍ୟର ମୁଖେ
ଯା'ର ନାହିଁ ଶକ୍ତି, ଭୁଞ୍ଜିବାକୁ ଧରା-ସୁଖେ ।

ଭୋଗୋନ୍ମୁଖୀ କରିବାରୁ ସମସ୍ତ ଇନ୍ଦ୍ରିୟ
ଶ୍ୱେତାଙ୍ଗ ଜୀବନ ଦେଖ କେମନ୍ତ ସକ୍ରିୟ ।
ଜ୍ଞାନେ, କର୍ମେ, ଧର୍ମେ, ଯୁଦ୍ଧେ, ସକଳ ବ୍ୟାପାରେ
ସମସ୍ତଙ୍କ ପୁରୋଗାମୀ ଶ୍ୱେତାଙ୍ଗ ଧରାରେ ।
ଶ୍ରେଷ୍ଠ ମାରଣାସ୍ତ୍ର ରଚେ ଯେଉଁ ଶ୍ୱେତକର,
ସେ ପୁଣି ଫୁଟାଏ ଶ୍ରେଷ୍ଠ ସାହିତ୍ୟ-କମଳ ।
ସେହି ହସ୍ତ ପୁଣି ଘୋର ଅଗମ୍ୟ ଜଙ୍ଗଲେ
ଆଫ୍ରିକା ବା ଭାରତର, ସ୍ନେହେ ସୃଷ୍ଟି କରେ
ସୁନ୍ଦର ସୁସଭ୍ୟ ନର ତୁଚ୍ଛ ଉପାଦାନୁ,
ଯୁଗ ଯୁଗ ଥିଲା ଯାହା ବନ୍ୟ, ଖର୍ବ, ସ୍ଥାଣୁ ।
ଆମେ ତ୍ୟାଗଧର୍ମୀ ଜାତି,—କି ଦଶା ଆମର ?
କି କହିବା ଗୋଟି, ଗୋଟି,—ସବୁ ଲଜ୍ଜାକର !
ନନା ଭୁଲି କହୁଛନ୍ତି; ଭାରତୀୟ ଜାତି
ଉଠେ ଯଦି କେବେ ପୁଣି, ଉଠିବ ସେ କାଟି
ପ୍ରାଚୀନର ମାୟାଜାଲ, ସମ୍ମୋହ ଧର୍ମର,
ଆତ୍ମ-ଘାତୀ ଆଦରଣ ଛଦ୍ମ ବୈରାଗ୍ୟର ।
ବୀରଭୋଗ୍ୟା ବସୁନ୍ଧରା, ଭୋଗ ଲକ୍ଷ୍ୟ କରି
ଜୀବନ ଗଢ଼ିଲେ ଯାଇଁ ଶ୍ୱେତାଙ୍ଗର ପରି
ଭାରତ ଛିଣ୍ଡାଇ ପାରେ ଦାସତ୍ୱ ଶୃଙ୍ଖଳ,
କି କରିବେ କୋଟି କୋଟି ଛଦ୍ମ ତ୍ୟାଗୀ ଦଳ ।"

କିନ୍ତୁ ନନା, ଯେଉଁଦିନ ଦେଖିଲି ଉଷାରେ
ଜଘନ୍ୟ ମାନବ-ଦୁଃଖ ଦୁର୍ଭିକ୍ଷ ଜ୍ୱାଳାରେ,

ଦେଖିଲି, ସ୍ପର୍ଶିଲି ପୁଣି ଗୋପବନ୍ଧୁ-ପ୍ରାଣ
ମାନବ ସେବାରେ ତିଳ ତିଳ ରକ୍ତ ଦାନ
ଶୁଣିଲି ହୃଦୟ ଭାଷା, ଅନୁକମ୍ପାମୟ
ଦେଖିଲି ମାନବଦୁଃଖେ ମୁକ୍ତ ଅଶ୍ରୁ-ଚୟ;
ଭାବିଲି ଏପରି ଦୁଃଖ ଥାଉଁ ଏ ଧରାରେ
ସ୍ୱାର୍ଥ-କେନ୍ଦ୍ର ଭୋଗର କି ଅର୍ଥ ଥାଇପାରେ ?
ପ୍ରତିବେଶୀ ଯଦି ମୋର ରହିଛନ୍ତି ଉପାସେ
ତା ନିଶ୍ୱାସ ପଡ଼ୁଥିବ ନିଶ୍ଚେ ମୋର ଗ୍ରାସେ ।
ଶ୍ରେଷ୍ଠ ଭୋଗ, ଦୁଃଖ ଦୈନ୍ୟମୟ ଏ ଜଗତେ
ପରଲାଗି କ୍ଳେଶ ବହି, ଢାଳିବା ରକତେ ।
ଜଣେ ଦୁଃଖୀ ଥିଲେ ଯାଏ ବିଶ୍ୱ-କେଉଁ-କଣେ
ସୁଖଭୋଗ, ନରଅଶ୍ରୁଦଗ୍ଧ ବୋଲି ମଣେ ।
ତେଣୁ ନନା ଇଚ୍ଛୁଛି ମୁଁ ହେବି ଗୋପବନ୍ଧୁ
ଚେଷ୍ଟିବି, ପରର ଦୁଃଖ ନେବି ତାଙ୍କ ସ୍କନ୍ଧୁ,
ସାମାଜିକ ହେବାଠାରୁ ପିଲିପିଲି କରି,
ଗୃହତ୍ୟାଗୀ ସନ୍ନ୍ୟାସୀର ପଥ ନିଏଁ ବରି,
ଦେଖିବି ମୁଁ, ସ୍ୱାର୍ଥ-ସ୍ପର୍ଶ-ଶୂନ୍ୟ ଅଙ୍ଗୁଳିରେ
ଦୈନ୍ୟ ପୋଛି,ରୋପି ପାରେଁ ସମାଜ ଶରୀରେ
ଯଦି କିଛି ସନାତନ କଲ୍ୟାଣର ବୀଜ,
ସେଇ ହେବ ଅଧମର ଶ୍ରେଷ୍ଠ ମସନଦ ।
ଦିଅ ଅନୁମତି ନନା, ବୋଉ-ତମ-ମନେ
ଦୁଃଖ ଦେଇ, ଶୁଭଙ୍କର କିଛି ନାହିଁ ମଣେ ।
ଏଇ ମଧ୍ୟ ଉପଦେଶ ଗୋପବନ୍ଧୁଙ୍କର
"ନନାଙ୍କୁ'ଜଣାଇ ଯାତ୍ରା କରିବାର କର ।"

ଆଶା କରେଁ ଦୟମ ମତେ ଦେବ ଉପଦେଶ,
କା'ର ସେବା କରିବ ମୁଁ—ଘର ଅବା ଦେଶ ?

ସେଇ ମେସେ ଅଛୁ ନନା,—ସ୍ୱଳ୍ପ ଜଳପାନ
ପାଏ ଯାହା, ଅଣ୍ଟୁ ନାହିଁ; ଘର କଥା ଜାଣି
ତମୁକୁ କମିତ ଅବା ମାଗିବ ସାହାଯ୍ୟ,
କ୍ଷେତରୁ ଅଛ କ ପାଇ ବର୍ଷକ ଆହାର୍ଯ୍ୟ ?
ଗୋଟା ଦୁଇ ଆରମ୍ଭିଛୁ ତେଣୁ ଟିଉସନ,
ଭାବୁଛୁ ମେଣ୍ଟିବ ତହୁଁ ଆର୍ଥିକ କଷଣ ।
ଘରର ସକଳ କଥା ଲେଖି ଦେବ ଭାଷା
ଶୁଣାଶୁଣି ଭାଇନାଙ୍କ ବଦଳିର ଆଶା
କଟକକୁ ହେବ ପରା । ଦଶରା ବେଳରେ
ନିଶ୍ଚେ କଟୁଦିନ ଯାଇ କଟାଇବ ଘରେ ।
ବୋଉଙ୍କୁ କହିବ ମୋର କୋଟି ନମସ୍କାର
ଅପାକୁ ନ ଦେଇ ସବୁବେଳେ ହାଣ୍ଡିଶାଳ
ଘରେ ଘରେ ପଢ଼ା, ନନା, ମୋହର ବାସନା
କ୍ରମେ ସେ ହୋଇବ ହିନେ ସ୍ୱାଧୀନ-ଜୀବନା ।
ମଦନର ଗଣିତରେ ରଖିଥିବ ଆଖି
ଭଲ ସେ କରିବ ଆଉ ଯେତେ ପାଠ ବାକି ।
ଗ୍ରାମର କଥା ବି ପତ୍ରେ ଲେଖିବ, କ ହେଲା
ପଙ୍କୋଦ୍ଧାର ପୋଖରୀର ? ଆଉ କଲେ ହେଲା
ହେବ ଆର ବରଷକୁ ଗ୍ରାମେ ବସୂତିକା,
ବାଧ୍ୟ କରି ସମସ୍ତଙ୍କୁ ଦେବ୍ ମଧ୍ୟ ଟୀକା"

ମାଟ୍ରିକ୍‌ରେ ବୃତ୍ତି ପାଇ ତରୁଣ କମଳ
କଲେଜ୍ ଜଏନ କଲା । ପିତାଙ୍କ ସମ୍ବଳ
ନାହିଁ, ତାକୁ ଦେବାପାଇଁ ନାମ-ଲେଖା ବ୍ୟୟ,
ମାଗି ଯାଚି, କରି କଷ୍ଟ କଷ୍ଟେ ସଞ୍ଚୟ
ପଠାଇଲେ ବାଧ କରି, ଅନିଚ୍ଛାରେ ତାର,
ଯହୁଁ ସେ ନ ଥିଲା ହେବ ନନାଙ୍କର ଭାର ।
କେଉଁମତେ କଷ୍ଟକରେ ଆସି ସେ-ଶେଷରେ
ନେଇଛି ଆଶ୍ରୟ ଏକ ଦରିଦ୍ର ମେସ୍‌ରେ ।
ନାହିଁ ବସ୍ତ୍ର ଆଡ଼ମ୍ବର, ଶୟନ ବିଳାସ
ମଶିଣାରେ ହଏ କାଟି ହନର ପରାସ,
ଯୋତାହୀନ ପଦେ ବୁଲେ ରାସ୍ତାରେ ରାସ୍ତାରେ
ଅର୍ଥାଭାବୁଁ ଜାଣୁ ଜାଣୁ ମାରଇ କ୍ଷୁଧାରେ
ବେଳେ ବେଳେ । କିନ୍ତୁ ଯେବେ ଯାହିଁ ହେବ ସଭା
କମଳର ଉପସ୍ଥିତି ନିଶ୍ଚେ ଆଗ ସବା ।

**ମେସ୍‌ରେ ଦରିଦ୍ର-ଜୀବନ**

କ୍ଳାସେ ଓ ବାହାରେ ଯାହା ଯେଉଁଠି ଲେକ୍‌ଚର
ସବୁ ଶୁଣେ ମନ ଦେଇ, ପଠନ-ତତ୍ପର
ଯେତେ ପାରେ ସେତେ ଗ୍ରନ୍ଥ । ଚଳେ ଚୁପ୍‌ଚାପ୍,
ନାହିଁ କାହା ପ୍ରତି ଉଷ୍ମା, ନାହିଁ ଅନୁତାପ ।
ବେଳେ ବେଳେ କିନ୍ତୁ ଦେଖି ଧନୀ ପୁତ୍ରଙ୍କର
ଆଡ଼ମ୍ବର ବ୍ୟବହାର, ବକ୍ଷେ କମଳର
ଜ୍ୱଳିଉଠେ ଉଠଇ ଏକ କ୍ରୋଧାଗ୍ନି ଭୈରବ,
ଉଛ ମାତ ସହ୍ୟ କରି ନ ପାରେ ତା ରକ୍ତ ।
କା ଆଗେ କହିବ ଦୁଃଖ ? ଚୁପ୍‌ଚାପ୍ ରହି
ତମି ମେଳେ ମୀନ ସମ କମଳ ଚଳଇ ।

ମୋଟା ମୋଟା ଦରମାର ଅଧ୍ୟାପକ ବାର,
କେବଳ ଶ୍ୱେତାଙ୍ଗ-ଅନୁକୃତିର ପ୍ରଚୁର,
ଇଂରେଜୀ-ଭାଷଣ ହେଲ୍ ଶିକ୍ଷା ଉତ୍କର୍ଷର,
ଟେନିସ୍-ପାଟବ ମାତ୍ର ଶିକ୍ଷା ପୌରୁଷର,
କାହିଁ ସେହି ଜ୍ଞାନାଶ୍ରମ, ସାଧନାର ପୀଠ
କାହିଁ ଅଧ୍ୟାପକ, ଶୁଦ୍ଧ, ଶାନ୍ତ, ଗ୍ରନ୍ଥ-କୀଟ,
କାହିଁ ଜ୍ଞାନ-ଚର୍ଚ୍ଚା, ଯାର ସ୍ୱପ୍ନ ଶତେ ଭରି
ଆସିଥିଲା ସେ କମଳ ଏ ବିଦ୍ୟା-ନଗରୀ ?
ଦେଖି ଶୁଣି ସବୁ ଘଟା, ସବୁ ଆଡ଼ମ୍ବର
ଅଜ୍ଞାତ ଦର୍ଶକ ସମ ଚଳଇ କମଳ ।

ହଠାତ୍ ଦିନେକେ କିନ୍ତୁ ସମଗ୍ର କଲେଜେ
କମଳ ହୋଇଲା ଜଣା,—ଶିବ ଖଗ ତେଜେ
ଯୁହେଁ ଯେସନେ ବିଲମ୍ବରେ ଉଠିଥିବା ଜନ,
ଚାହିଁଲେ ସକଳେ ତେସନେ ଏ ଅଗ୍ନି ପ୍ରଚ୍ଛନ୍ନ ।
ଥିଲା ଏକ ତର୍କ ସଭା, ତର୍କର ବିଷୟ
'ଡାରଉଇନ ବିବର୍ତ୍ତନ, ପ୍ରଯୁଜ୍ୟ କି କହ
(କଲେଜରେ ବକ୍ତୃତା) ମାନବ-ସମାଜ ପ୍ରତି'—ଉତ୍କୃଷ୍ଟ ତାର୍କିକ
(ପ୍ରତିଯୋଗୀତା) ପାଇବେ ବଧାଇ ଶେଷ ଦ୍ୱାଦଶ-ମୌକ୍ତିକ ।
(ବିବର୍ତ୍ତନ ବାଦ ।) ସମଗ୍ର କଲେଜେ ଆଜ ପଡ଼ିଛି ଗହଳ
ଛାତ୍ର ଅଧ୍ୟାପକେ ପଣପୂର୍ଣ୍ଣ ବଡ଼ ହଲ,
ଦୁଇ ତିନ ନବବସ୍ତ୍ରା-ଛାତ୍ରୀ-ଉପସ୍ଥିତ,
ତରୁଣଙ୍କ ପ୍ରାଣେ ଆଣେ ଅସଂଯତ ପ୍ରୀତି ।

ଜଣାଶୁଣା ବାଗ୍ମୀଦଳ ବସିଗଲେ ଆଗେ
ଶ୍ରୋତୃବୃନ୍ଦ ଉପବିଷ୍ଟ ତାଙ୍କ ପୃଷ୍ଠଭାଗେ,
ସମ୍ମୁଖେ ତରୁଣୀ ଛାତ୍ରୀ, ଅଧ୍ୟାପକ ବାର,
ମଧ୍ୟେ କିଛି ମୁକ୍ତ ସ୍ଥାନ—ଆସନ ବକ୍ତାର ।
ତାତ୍କାଳିକ ଏ ବକ୍ତୃତା—ନୂତନ ବିଷୟ,
ହଠାତ୍ ପଡ଼ିଲା ଜଣା; ପୂର୍ବ ବାଗ୍ମୀଚୟ
ଅନ୍ୟାନ୍ୟ ପ୍ରସ୍ତାବ ସବୁ ଭାବି ମନେ ମନେ
ଆସିଥିଲେ ସଭାଗୃହେ, ଅନେକେ ଏ କ୍ଷଣେ
କଠିନ ବିଷୟ ଦେଖି ଭରିଲେ ପକେଟେ
ଆପଣାର ଟିପା-ପତ୍ର । ନାମ ଦେଲେ ଯେତେ
ପ୍ରତିଯୋଗୀତାର ପାଇଁ, କମଳ ଲୋଚନ
ମହାପାତ୍ର ନାମ ଶୁଣି, ସର୍ବ ସଭାଜନ
ଚାହିଁଲେ ତାହାରି ଆଡ଼େ—ମାତ୍ର ନବାଗତ,
ପ୍ରଥମ ବର୍ଷର ଛାତ୍ର, ନିତାନ୍ତ ଅଜ୍ଞାତ,
ସେ ପୁଣି କରିବ ତର୍କ ଯେନ ବିବର୍ତ୍ତନ ?
ଡାଙ୍ଗଣେ ହୋଇବ କିବା, କେଦାର କର୍ଷଣ !

ମାତ୍ର, କିଛି ଦିନ ପୂର୍ବେ କମଳଲୋଚନ
କରିଥିଲା କିନ୍ତୁ ଏହି ତତ୍ତ୍ୱ ଅଧ୍ୟୟନ
ବିସ୍ତାରରେ ଆଲୋଚିତ କେଉଁ ବିସ ପୁସ୍ତକେ,
ଜୀବନ୍ତ ସେ ଜ୍ଞାନ ଥିଲା ଏ ଯାଏଁ ମସ୍ତକେ ।
ତେଣୁ ଲଜ୍ଜାଶୀଳ, ଦୁଃସ୍ଥ, ନିଃଶବ୍ଦ କମଳ
ସାହସିଲା କହିବାକୁ । ତର୍କ ଅନ୍ୟତର

ରଖିଥାନ୍ତା ତାଙ୍କୁ ପୂର୍ବବତ ସ୍ଥାନ, ମୂକ
ଆକସ୍ମିକ ଆଜି ତାଙ୍କୁ କରେ ବାବଦୂକ ।
ଜାଣି ସେ ନ ଥିଲା ପୁଣି ଏହି ଆକସ୍ମିକ
ହେବ ବୋଲି ଭବିଷ୍ୟର ବୀଜ ଦଇବିକ ।
ବହୁକାଳ ପରେ ଯାଇଁ ବୁଝିଲା କମଳ
ଅନ୍ଧନେତା ମାତ୍ର ନର ନାଟକେ ବିଶ୍ୱର ।
ସୂତ୍ରଧର ଆଉ ଜଣେ, ଅଦୃଶ୍ୟ ସେ ଥାଏ
ସଂସାରର ଅନ୍ଧନୟୁ ଚକ୍ଷୁରେ ଚଳାଏ ।

ଦ୍ୱନ୍ଦ୍ୱବାଦେ ବହୁ ଯୁକ୍ତି ହେଲା ଉତ୍ଥାପନ
କେତେକ କାଟିଲେ, କଲେ କେତେ ସମର୍ଥନ ।
କେ କହିଲେ 'ବିବର୍ତ୍ତନ' ଭାରତରୁ ଜାତ
ଦଶ ଅବତାରେ ତାହା ଲୋକରେ ପ୍ରଖ୍ୟାତ ।
କହିଲେ କେ, କିସ ବାଲ୍ମୀକିଙ୍କ ରାମାୟଣ ?
ବାନରୁଁ ନରାବିର୍ଭାବ,—ତାହାର ଲକ୍ଷଣ ।
ଇଂରେଜ ମ୍ଳେଚ୍ଛ ବା କାହୁଁ ପାଇବ ମସ୍ତିଷ୍କ
ନବ ଉଦ୍ଭାବନ ପାଇଁ ? ବୋଲାଏ ମୌଳିକ
ଆମ ଘେରର ଦ୍ରବ୍ୟ ନେଇ ବିକାଇ ବଜାରେ,
ଦାସ ଭାରତର କଥା କିଏ ସେ ପଛରେ ?

କେ କହିଲେ, ରାମାୟଣେ ବର୍ଣ୍ଣିତ ବାନରେ
ଆବିର୍ଭୂତ ପୁଣି ଆଜି ଶ୍ୱେତାଙ୍ଗ ରୂପରେ ।
ହାବ ଭାବ, ମୁଖ, ବେଶ, ଆକାର ପ୍ରକାର
କଦଳୀ-ପ୍ରିୟତା, ଭାଷା—କେବଳ ଚିତ୍କାର,

ସମସ୍ତ ସୃଟାଏ ଶ୍ୱେତନର ବାନରଜ,
ବାନର ପଣ୍ଡିତ ପ୍ରନ୍ତ ଏ ମତ ସହଜ ।
ଆର୍ଯ୍ୟବଂଶୀ ଭାରତୀୟେ ପ୍ରଯୁଜ୍ୟ ଏ ନୁହେ,
ବ୍ରହ୍ମାଙ୍କୁ ଉଦ୍ଭୂତ ସେ ଯେ—ସବୁ ଶାସ୍ତ୍ର କୁହେ ।
ମୁଖରୁ ବ୍ରାହ୍ମଣ ଜାତ ମୁଖ୍ୟ ସେ ସମାଜେ
କ୍ଷତ୍ରିୟ ବାହୁରୁ ଜାତ, ସମରରେ ବିରାଜେ ।
ପାଦରୁ ଶୂଦ୍ରର ଜନ୍ମ ତେଣୁ ସେବାକାଂକ୍ଷୀ,
ଶାସ୍ତ୍ରକଥା—ଥାଇ ପାରେ ସନ୍ଦେହ କାହାର ?
ଏଇ ଆମ ବିବର୍ତ୍ତନ, ଦୈବକୃତ, ପ୍ରାଚୀନ,
ଅନ୍ୟଥା ନ କରିପାରେ କପି ଡାରୁଇନ ।

କେ ଜଣେ ବିଜ୍ଞାନ ଗ୍ରନ୍ଥ କରି ସଂଶୋଧନ
କହିଲେ 'ଏ ନୁହେ ଡାରୱିନ ବିବର୍ତ୍ତନ ।
ମୂଳତତ୍ତ୍ୱ ଏହି ହେଲା;—ବଞ୍ଚିବାର ପାଇଁ
ଜୀବ ନିଜେ ବଦଳାଏ, ଆବେଷ୍ଟନୀ ଚାହିଁ ।
ଦୃଷ୍ଟାନ୍ତ ସ୍ୱରୂପ ଦେଖ ବନ୍ୟ ବତକର
ପକ୍ଷହାଡ଼ ଦୃଢ଼, ଯେଣୁ ପ୍ରାୟ ବ୍ୟୋମଚର ।
କିନ୍ତୁ ଗ୍ରାମ୍ୟ ବତକର ପଦ-ହାଡ଼ ଟାଣ
ଯେଣୁ ସେ ଚାଲଇ ବେଶି, ଅଳପ ଉଡ଼ାଣ ।
ଏହି କ୍ରମେ ଯେତେ ଜୀବେ ଯେତେ ବିଶିଷ୍ଟତା
ଯାହା ଦେଖୁଁ, କହେ ତାହା ଏକମାତ୍ର କଥା
—ଆବେଷ୍ଟନୀ ସଙ୍ଗେ ମିଳି ଆତ୍ମରକ୍ଷା ପାଇଁ
ସେ ସବୁ ସୃଜନ୍ତି ଜୀବ, ଜୀବନ-ଆଶାୟୀ ।

ଏହି ନିୟମ ନରମୁଣ୍ଡେ ମସ୍ତିଷ୍କ ଉଦ୍ଭବ
ମସ୍ତିଷ୍କରୁ ପୁଣି ଧର୍ମ-ସଭ୍ୟତା ସମ୍ଭବ ।
ବଣ୍ୟ ଜୀବ ହୋଇଅଛି ସୁସଭ୍ୟ ମାନବ
ପ୍ରକୃତି-ପୁତ୍ତଳୀ ଆଜ ପ୍ରକୃତି-ଦାନବ ।
ଜଣାନ୍ତି ଯେ ଆବେଷ୍ଟନୀ, ଏ ଧର୍ମ ତାଙ୍କର
ପ୍ରକୃତି ହିଁ ସର୍ବଯୁଗେ ଦୁର୍ବଳର ଅରି ।
ଏକ ଲକ୍ଷ ଇଙ୍ଗ ଶାସେ ବତ୍ରିଶ ଭାରତେ
ଏହି ମାତ୍ର ବଳେ ଜାଣ । ସମଗ୍ର ଭାରତେ
ଶ୍ୱେତାଙ୍ଗର ଜୈବକେତୁ ଉଡ଼ଇ କପାଳେଁ,
ସେ ତ ମ୍ଳେଚ୍ଛ, ବାନରଜ, ଶାସ୍ତ୍ର ତାର ନାହିଁ ।
ଆମର ତ ସବୁ ଅଛି, କପାଁ ଆମେ ଦାସ ?
ସତ୍ୟ କି ଉଡ଼େଇ ଦିବ, କଲେ ପରିହାସ ?

କମଳ କହିଲା ଶେଷେ, "ପୂର୍ବବର୍ତ୍ତୀ ବକ୍ତା
କହିଲେ ଯା, ନିତାନ୍ତ ତା ଯୁକ୍ତିଯୁକ୍ତ କଥା ।
ବିବର୍ତ୍ତନ, ଅଭିବୃଦ୍ଧି,—ଜୀବନ-ଲକ୍ଷଣ,
ଧର୍ମଭୋଗ-ଇଚ୍ଛାଯାର, ତାର ଆୟୋଜନ
ହେବ ସଦା ପ୍ରତିକୂଳ—ଆବେଷ୍ଟନୀ-ଜୟ;
ତେଣୁ ଆଜ ଇଂରେଜର ରାଜ୍ୟ ଧର୍ମମୟ ।
ତେଣୁ ଆଜ ଶ୍ୱେତାଙ୍ଗର ଜୟ ଜୟକାର
ପ୍ରାଚ୍ୟ ଭାଗ୍ୟେ ଖାଲି ଆଜ ଦାସତ୍ୱ, ଧିକ୍କାର ।
କିନ୍ତୁ ମୋ ମତରେ ଏହି କଥାଟି ଜିଜ୍ଞାସ୍ୟ
ବିଜେତା କି ଖାଲି ଡର ଆମର ଉପାସ୍ୟ ?

ସଂଘର୍ଷ କି ଜୀବନର ଏକ ହିଁ ଲକ୍ଷଣ
ଭୋଗ କି ଜୀବନେ ନର ଶ୍ରେଷ୍ଠ ଆଚରଣ ?
ଜୀବେ ବା ଉଦ୍ଭିଦେ ଯେଉଁ ମାତ୍ର କାର୍ଯ୍ୟକାରୀ
ଉଚିତ କି ହେବା ନର ତା'ର ଅନୁସାରୀ ?
ମନୁଷ୍ୟ ପ୍ରକୃତି ନୁହେଁ, ପ୍ରକୃତି ଉପରେ—
ଦେବତ୍ୱ ରହିଛି ପ୍ରଚ୍ଛନ୍ନରେ ତା' ଅନ୍ତରେ ।
ନରତ୍ୱରେ ଦେବତ୍ୱର ବିକଚ ବିକାଶ,
ପରାର୍ଥର ଜନ୍ମ ହୁଏ ସ୍ୱାର୍ଥ ହେଲେ ନାଶ—
ଏହି ମାନ ନର ପକ୍ଷେ ଶ୍ରେଷ୍ଠ ବିବର୍ତ୍ତନ
ପଶୁତ୍ୱରୁ ଦେବତ୍ୱକୁ କ୍ରମ-ଉନ୍ନୟନ ।
ପ୍ରାଚୀନ ଭାରତେ ପୂତ ଋଷି ତପୋବନେ,
ବାଳିକାଙ୍କୁ ଗଢ଼ୁଥିଲେ ଉନ୍ନତ ଜୀବନେ
ଋଷିଏ ସୃଜିବା ଲାଗି ସୁସଭ୍ୟ ସମାଜ;
ସତ୍ୟ କଥା ସେ ବ୍ୟବସ୍ଥା—କାଳ-ଭୁକ୍ତ ଆଜ,
ତଥାପି କି ଅର୍ଥହୀନ ଚେଷ୍ଟା ସେ ସକଳ,
ସେ ପରୀକ୍ଷା,—ଗଢ଼ିବାକୁ ପରିପୂର୍ଣ୍ଣ ନର ?
ସନାତନ ସତ୍ୟ ତାହା,—ଜନ୍ତୁ ଭିତରର,
ବିନାଶି, ଦେବତ୍ୱ ପାଇଁ ଉଠେ ଯେଉଁ ନର,
ସେହିହିଁ ପ୍ରକୃଷ୍ଟ ସ୍ରଷ୍ଟା ନର ସଭ୍ୟତାର,
ଦେଖ ଇତିହାସ-ପୃଷ୍ଠା ସାକ୍ଷୀ କି ନା ତାର;
ସଂଘର୍ଷ—ଓ—ଭୋଗ-ମୂଳ ଡାରୱିନୀ ମତ
ମନୁଷ୍ୟ ସମାଜ ପ୍ରତି ଅଟେ ଅସଙ୍ଗତ ।"

ଲଜ୍ଜାରୁଣ, ସ୍ୱେଦସିକ୍ତ ମୁଖ ଘଷି ଘଷି
କମଳଲୋଚନ ଯେବେ ସ୍ଥାନେ ଆସେ ବସି,
ଶୁଣି, ଶୁଣି ନ ପାରଇ ଘର୍ଘ କରତାଳି
ସଭାସ୍ଥ ସକଳଙ୍କର; ଲାଜେ ନେତ୍ର ଚୂଳି
ନାହିଁ ପାରେ ଚାହିଁ କାରେ । ଚିତ୍ତ ଦକ ଦକ,—
ଅନୁତପ୍ତ, କପାଁ ବୃଥା ହେଲ୍ ବକ ବକ
ଏ ଜନତା ସମ୍ମୁଖରେ । ସାଙ୍ଗ, ଶତ୍ରୁ ଜନେ
କ୍ଷମିବେ କି ତା ଧୃଷ୍ଟତା ? ଆତ୍ମ-ଧିକ୍‌କାରଣେ
ଅକାରଣେ ଦେଉଁ ନିଜେ ଜୀବନ୍ତ—ମରଣ,
ଘୋଷଣା ଶୁଣଇ ସଭା ହୋଇଣ ଉତ୍କର୍ଣ୍ଣ,

କମଳର ପୁରସ୍କାର ଲାଭ

"ପ୍ରଥମ ବାର୍ଷିକ ଛାତ୍ର କମଳଲୋଚନ
ମହାପାତ୍ର ଦେଇଛନ୍ତି ଉତ୍କୃଷ୍ଟ ଭାଷଣ,
ଆନନ୍ଦ ସହିତ ତାଙ୍କୁ ଦେଉଁ ପୁରସ୍କାର,
ଏଇ ଆମ୍ଭ ସମସ୍ତଙ୍କ ମିଳିତ ବିଚାର ।"

ପୁଣି ଘନ କରତାଳି ମଧ୍ୟେ ପୁରସ୍କାର
ଘେନିଲ୍ କମଳ; ନବ ପ୍ରଶଂସାର ଭାର
ଧୀର ନିର୍ବିକାର ଚିତ୍ତେ ବହିବାର ପାଇଁ
ପ୍ରସ୍ତୁତ ନ ଥିଲ୍ ସେ'ତ । ସଲଜ୍ଜରେ ଚାହିଁ
ଥରେ ଏଣେ, ଥରେ ତେଣେ, କମ୍ପିତ ହସ୍ତରେ
ଘେନି ମୁଦ୍ରା ବସେ ଫେରି ନିଜ ଆସନରେ ।

କିନ୍ତୁ ସେ ଦେଖିଲ୍ ନାହିଁ, ସକଳ ଅଲକ୍ଷ୍ୟେ
ଦେଖୁଥିଲ୍ ଦୁଇଆଖି, ନବୀନ ପୁଲକେ

ବାଣୀ ତାର, ଗତି ତାର, ବଦନ, ଅଧର
କେଶ ତାର, ଦାଢ଼ି, ବଡ଼ କପାଳ, ଗଣ୍ଡର;
ଗୁନ୍ଥିଥାଏ ଚକ୍ଷୁଶ୍ରବା ଯେହ୍ନେ କେଳାଗୀତେ
ଅପଲକେ ଦୁଇଆଖି ସବୁ ଅଲକ୍ଷିତେ
ଦେଖୁଥିଲା କମଳର ନଖୁ କେଶ ଯାଏଁ
ସଙ୍ଗୀତର ଧ୍ୱନି ଯେହ୍ନେ ଅନ୍ତରୀକ୍ଷେ ଧାଏଁ;
—ଦୁଇଆଖି, କେଉଁ ଏକ ଅଧ୍ୟାପକଙ୍କର
ତରୁଣୀ କନ୍ୟାର,—କୃଷ୍ଣ, ସରସ, ଉଜ୍ଜଳ ।

ମେସେ ଆସି ଦେଖେ କିନ୍ତୁ କମଳ ସେଦିନ
ନାନା ଦେଇଛନ୍ତି ଭାଷା,—ଉତ୍ତରଟି କ୍ଷୀଣ ।
"ସମସ୍ତେ ଅଛନ୍ତି ଭଲ; ଦଶରାକୁ ଯିବ
ଶୁଣି ବୋଉ ବଡ଼ ଖୁସି, ଭାଇନା ଆସିବ
ପିଲାପିଲି ତା'ର ଧରି, ସମସ୍ତେ ଏକତ୍ର
ଥିଲାବେଳେ ପଢ଼ାହେବ କମଳର ପତ୍ର ।
ସମସ୍ତଙ୍କ ମତ ତହିଁ ଶୁଣିବ କମଳ,
ବିଶେଷ କି ଲାଭ ମତ ଜାଣି ଜଣକର ?"

ସ୍ୱାଗତ ଆସାର ମଧ୍ୟେ ବଜ୍ରପାତ ପରି
କମଳ ମଣିଲା ପିତାଙ୍କର ପତ୍ର ପଢ଼ି ।
ବିରକ୍ତ ହେବାକୁ ନାହିଁ ଦେଲେ ଅବସର
କିନ୍ତୁ ବନ୍ଧୁଜନେ, ବାଡ଼ି ଭୋଜର ଖବର ।

---

# ତୃତୀୟ ସର୍ଗ

## କରୁଣାର ପ୍ରଥମ ସ୍ପର୍ଶ

ଲତାର କୁସୁମ ପରି, ପୁରୁଷେ ପ୍ରତିଭା
ଗୃହିଁବେ ଯିବାର ଲୋକେ ନଇଁଷ୍ଟ ଟେକ ଗ୍ରୀବା;
ଆସିବେ ନିକଟେ କେହି ସ୍ପର୍ଶନେ, ଆଘ୍ରାଣେ;
ଆଦରିବେ କେହି, କେହି ମାରି ହିଂସାବାଣେ
ଚଳିବେ ଛୁଣ୍ଡାଇ କଣ୍ଟା ।

କମଳ ବକ୍ତୃତା

ସେଦିନ ଆଣିଲା ଏକ ଗୃଙ୍ଖଳ ଅବସ୍ଥା;
କେହି କେହି ପଗୃରିଲେ କିଏସେ ସେ ପିଲା ?
କେଉଁଠୁ ଆସିଛି ? କେତେ କରି ମନ ଗିଲା
କହିଲେ 'ଆଶ୍ଚର୍ଯ୍ୟ କଥା, ଦେଲେ ଅଧ୍ୟାପକେ
ପୁରସ୍କାର କେତେ୍ହେ ତାକୁ ! ଶତ୍ରୁରେ ଆଣଂକେ
ଷ୍ଟେରି କରି ଆଣିଛି ସେ ସବୁ ଆଇଡ଼ିଆ ।
ନିଜସ୍ବରେ ତେବେ ଜୋର୍ ଦିଆ ହୁଏ କିଆଁ ?

କ୍ରମେ ଥଣ୍ଡା ହୋଇ ଆସେ କିନ୍ତୁ ଆଲୋଚନା
କମଳର ଲାଗି କୌତୂହଳ, ଗବେଷଣା ।
ଫଳ ହୁଏ ଏଇ ମାତ୍ର, କମଳଲୋଚନ,
ଧୀରେ ଧୀରେ କଲେ କଣ୍ଟ ବନ୍ଧୁ ଆକର୍ଷଣ ।
ସମ-ସ୍ୱପ୍ନା, ସମ-ବୁଦ୍ଧି ସମ-ବୟୁ ଯୁବା
ଜୁଟିଲେ କେତେକ ଆସି, କରିଲେ ମସୁଧା

ସଂଗଠନ

ଆଡ଼ମ୍ବରମୟ ଧନ-ସାର ଆବେଷ୍ଟନୀ
କଲେଜରେ, ଭାଙ୍ଗି କରାଇବେ ପୁରାତନୀ
ଭାରତୀୟ ପୂତ କୃଷ୍ଟି ଠିଆ ସେ ନଗରେ
ଦେଖାଇବେ ସେ ଆଦର୍ଶ ନିଜ ଜୀବନରେ ।
କରିବେ ମାନବ ସେବା, ଯାପିବେ ଜୀବନ
ସଂଯତ, ସରଳ, ପୂତ, କରିବେ ବରଣ
ଦାରିଦ୍ର୍ୟ, ଦେଶର ଲାଗି; ସ୍ୱାଧୀନ ଭାରତ
ଦେଖି ମରିବା ହିଁ ହେବ ଜୀବନର ବ୍ରତ ।
'ବାନ୍ଧବ ସମିତି' ଦେଲା ନାମ ସେ ସଂଘର
କମଳ ହିଁ ସ୍କନ୍ଧେ ନେଲା ଦାୟିତ୍ୱ ସକଳ ।

ଥାଏ ପୁରାତନ ମେସେ ଦାରିଦ୍ର୍ୟ-ବିଳାସେ
ଅକିଂଚନ ହସ୍ତ;—ମନ, ପୂର୍ଣ୍ଣ ଅଭିଳାଷେ ।
ଟିଉସନ-ଜୀବୀ, ଯାହା ବଳେ ଅରଜନୁ
କରେ ଦାନ, ପାତ୍ର ଦେଖି । ପୋଛୁଅଛି ମନୁ
ଜାତି-ଭେଦ, ଦେଶ-ଭେଦ, ଜନ୍ମ-ଅହଂକାର
ତରୁଣ ମନ ତା', ପ୍ରୀତି-ଚିକ୍‌କଣ, ଉଦାର ।
କ୍ରମେ ମେସେ ବଡ଼, ସାନ, ଉପର ବା ତଳ,
ସମସ୍ତଙ୍କ ଶ୍ରଦ୍ଧାପାତ୍ର ହେଲାଣି କମଳ ।
ଗୋପନେ ବା ପ୍ରକାଶ୍ୟରେ ଦିଏ ପରାମର୍ଶ
ସମସ୍ତଙ୍କୁ, ଯେଣୁ ତାର ଅନ୍ତର ଅମର୍ଷ ।
ବହୁଜନ ସଂଗେ ହେଉଁ ଯୋଗ-ସୂତ୍ର ସୃଷ୍ଟି
କମଳ ନ ଭୁଲେ ଏବେ କରି ନମ୍ର ଦୃଷ୍ଟି,
ସେ ଏବେ ଦେଲାଣି ଯୋଗ ସମ୍ପୃକ୍ତ ପ୍ରମୋଦେ,
ଦୁଇଭାଗ ନିଜ ଆତ୍ମା କରିଅଛି, ବୋଧେ ।

ଅର୍ଦ୍ଧେକ ନିଜସ୍ୱ, ଅନ୍ୟ—ପ୍ରବେଶ-ନିଷିଦ୍ଧ;
ଆଉ ଅଧ, ସାଧାରଣ ସର୍ବ-ସ୍ପର୍ଶ-ଦଗ୍ଧ ।
ଏକାକୀ ହୋଇଲେ ନିଜ ଅଧିକ ସେ ଖୋଲେ,
ନିଜର ସଙ୍ଗୀତ ଶୁଣେ, ନିଜ ମନ୍ତ୍ର ବୋଲେ;
ବୁଡ଼ି ରହେ ନିଜ ସ୍ୱପ୍ନେ ବୁଣେ ଆଶା-ଜାଲ
ବିଶ୍ୱର ଅନ୍ଧାର ପାଇଁ ରଚଇ ମଶାଲ ।

ଦିନେ ମେସେ ଆସି ସ୍ୱୟଂ ଅଧ୍ୟାପକ ଜଣେ,
କମଳକୁ ନେଇ ଯାନେ ସସ୍ମିତ ବଦନେ
କହିଲେ କି କଥା, ପୁଣି ଡାକିନେଲେ ଘରେ;
ଆଶ୍ଚର୍ଯ୍ୟେ ଅପେକ୍ଷିଥାନ୍ତି ମେ'ସେ ସହଚରେ ।
ଫେରୁଁ ତହୁଁ ଏଇ କଥା ହୋଇଲା ପ୍ରଚାର
କମଳ ଛାଡ଼ିବ ମେସ, କରିବ ଆହାର
ଏଣିକି ସେ ସୁପ୍ରସିଦ୍ଧ ଅଧ୍ୟାପକ ଘରେ
ନିବସିବ ପୁଣି ତହିଁ ଟିଉସନ ଛଳେ ।

ସେକାଳେ କଲେଜେ ଥିଲେ ଯେତେ ଅଧ୍ୟାପକ
ତାଙ୍କ ମଧ୍ୟେ ଜନ-ମାନ୍ୟ, ପଣ୍ଡିତ, ପାଠକ
(ଅଧ୍ୟାପକ ଅବିନାଶ ଚନ୍ଦ୍ର) ଥିଲେ ଅବିନାଶ ଚନ୍ଦ୍ର ଘୋଷ ସୁପ୍ରସିଦ୍ଧ
ବ୍ରହ୍ମଧର୍ମୀ, ବଙ୍ଗଦେଶୀ, ଇଂରେଜଦ୍ୱେଷବିଦ୍ଧ ।
ଆହାର, ବିହାର ଚିନ୍ତା ସମସ୍ତ ସ୍ୱଦେଶୀ
ଗମ୍ଭୀର, ଚରିତ୍ରବାନ, ନିପାରନ୍ତି ଘେଁଷି

ଇତରେ ଭୟରେ ପାଶେ—ଇଂରେଜ ଅଧ୍ୟକ୍ଷ
ପୋଷିଥାଏ ତାଙ୍କପ୍ରତି ଭୟ ଅପ୍ରତ୍ୟକ୍ଷ ।
କିନ୍ତୁ ଅଧ୍ୟାପକ ନିଜେ ସରସ, ଉଦାର
ସଙ୍ଗୀତେ, ସାହିତ୍ୟେ ତାଙ୍କ ନିରତ ବିହାର
ଦୟାବାନ, ଦାନହସ୍ତ ବ୍ୟକ୍ତିନିର୍ବିଶେଷେ
ଦେଖିବାକୁ ସୁପୁରୁଷ, ରୁଚିବନ୍ତ ବେଶେ ।
ଶ୍ମଶ୍ରୁଳ ବଦନୁ ଫୁଟେ ସୃଜନିକ ଜ୍ୟୋତି
ଦନ୍ତଜାଳ ଯେହ୍ନେ ଗୁନ୍ଥା ଦୁଇ ପଂକ୍ତି-ମୋତି ।
ଦର୍ଶନର ଅଧ୍ୟାପକ, ବାଗ୍ମୀ ଓ ବିଜ୍ଞାନୀ
ଶତ ଶତ ଛାତ୍ର ତାଙ୍କୁ ଗୁରୁବୋଲି ମାନି ।
ଦୁଇ ପୁତ୍ର, ଏକ କନ୍ୟା ସନ୍ତତି ତାଙ୍କର
ପତ୍ନୀ ମହାମାୟା, ଯୋଗ୍ୟା ସଖୀ ସ୍ୱାମୀଙ୍କର ।
ଘରର ଝଞ୍ଜଟ ସବୁ ନିଜ ମୁଣ୍ଡେ ନେଇ
ସ୍ୱାମୀଙ୍କୁ ସ୍ୱତନ୍ତ୍ର 'ମାୟା' ଖୁଆଇ, ପିଆଇ ।
ଅଧ୍ୟୟନ ଅଧ୍ୟାପନେ ଥାନ୍ତି ଅବିନାଶ
ଥୋଇ ଦେଇ ଦରମାହା ଯୋଗ୍ୟ ପତ୍ନୀ ପାଶ ।
ବଡ଼ପୁଅ ହେମକାନ୍ତ ହୋଇ ବାରିଷ୍ଟର
ସଦ୍ୟ ବିଲାତରୁ ଫେରି, ପାତି ଅଛି ଘର
ଉତ୍ତର ଭାରତେ କେଉଁ ବୃହତ ସହରେ
ଭବିଷ୍ୟତ ଶ୍ୱଶୁରର ସ୍ନେହ ଆଶ୍ରୟରେ ।
କନ୍ୟା,—କରୁଣା ତା ନାମ; ବିଜ୍ଞାନର ଛାତ୍ରୀ
କଲେଜେ; ବିବାହ ପାଇଁ ଅନୁପମ ପାତ୍ରୀ ।
ସୁନ୍ଦରୀ, ସଙ୍ଗୀତବତୀ, ଗାର୍ହସ୍ଥ୍ୟ-ନିପୁଣା
ପୁରୁଷ ଯା ଖୋଜେ କେଉଁ ଗୁଣ ନାହିଁ ଊଣା ।

କିନ୍ତୁ ସେ ଧରିଛି ଜିଦ୍ ହେବ ଡାକ୍ତରାଣୀ,
ନ ଜାଣନ୍ତି କିନ୍ତୁ କେହି ତା'ର ମର୍ମବାଣୀ ।
ବେଳେ ବେଳେ ଜନନୀଠୁ ପାଇଲେ ହେଁ ବାଧା,
ବାପା ଦେଇଁ ସବୁ କାମ କରଇ ସମାଧା;
ଅବିନାଶ କେବେ ହେଲେ କରୁଣାର କଥା
ଜଣାଯାଇ ନାହିଁ କରିଥିବାର ଅନ୍ୟଥା ।
ସାନପୁଅ ଉଦୟନ—ଡାକ ନାମ 'ମିଠା'
ବଂଶରୁ ବାହାର, ଖାଏ ମାଆଙ୍କଠୁ ପିଠା
ପ୍ରତିନିତ୍ୟ ଦୁଷ୍ଟପଣେ; ପଢ଼ୁ ନାହିଁ ପାଠ
ଘୂରି ବୁଲୁଥାଏ ସାଙ୍ଗ ଘେନ ରାସ୍ତା, ଘାଟ ।
ଘରୋଇ ଶିକ୍ଷକ ଜଣେ ନିତାନ୍ତ ଦର୍କାର
ମିଠା ପାଇଁ, ଥିବ ଯିଏ ଘର ଓ ବାହାର
ସବୁବେଳେ ତାହା ସାଥେ, କିଛି ପଢ଼ାଇବ,
ଯାହାକରୁ ବରାବର ଆଖି ରଖିଥିବ ।
କିଏ ସେ ରହିବ ଆସି,—ନାନା ତର୍କ ପରେ
କରୁଣା ଉଦାସ ଭାବେ ଦିନେ ସ୍ପଷ୍ଟ କରେ
"ବାବା, ସେଦିନ ଯେ ପିଲା ନେଲା ପୁରସ୍କାର
ବିବର୍ତ୍ତନ ବକ୍ତୃତାରେ, ତାକୁଇ ମିଠାର
ଶିକ୍ଷକ କରୁନା; ଶୁଣେ ଦରିଦ୍ର ବିଦ୍ୟାର୍ଥୀ
ଟିଉସନେ ଚଳେ; ଭଲ ହୋନ୍ତା ମିଠା-ସାଥୀ ।"
ଅବିନାଶ ଥିଲେ ନିଜେ ବିଚାର ଆସନେ
ସେଦିନ, କମଳ ଅଛି ସେଦିନୁଁ ସ୍ମରଣେ,
ଶୁଣିଛନ୍ତି ଖ୍ୟାତି ତାର ବନ୍ଧୁ ଅଧ୍ୟାପକୁଁ
କରୁଣାର କଥା ତାଙ୍କ ଆସିଲା ମନକୁ ।

ଦେଖିଦେଲା ବୁଝି କାହିଁ ରହଇ କମଳ,
ଜାଣି ତାହା, ବାଟେ ନିତ୍ୟ ସାନ୍ଧ୍ୟ ଭ୍ରମଣର;
ନିଜେ ଧରି ଆଣି ତାଙ୍କୁ କରିଲେ ପ୍ରସ୍ତାବ,
କମଳ ନ କହିପାରେ, ସଲଜ୍ଜ-ସ୍ୱଭାବ
ହିଁଅ, ନାହିଁ ପ୍ରଥମରେ । ଚହାଲିଲା ତା' ଚିନ୍ତା
କି ହେବ 'ସମିତି' ଦଶା ? ଭାବିବେ କି ପିତା
ତା' ରହିବା ବ୍ରାହ୍ମ-ଘରେ ! ସ୍ୱାଧୀନତା ତାର
ଖଣ୍ଡିତ ହୋଇବ ନିକି ? ଜାଣେ ସେ ଉଦାର

ଅବିନାଶଙ୍କ ଗୃହରେ କମଳର ହୃଦୟର ନିଯୁକ୍ତି

କିନ୍ତୁ ଅବିନାଶ୍‌ଚନ୍ଦ୍ର, ଅନ୍ୟର ହୃଦୟ
ବୁଝି ସେ ପାରନ୍ତି, ଥାଇ ନିଜେରେ ତନ୍ମୟ ।
କମଳର ନିଜ ଦୁଃଖ ନ ପୁଛନ୍ତି ମୁଖେ
କହିଲେ ସେ ଗୋଟି ଗୋଟି ହସି କଉତୁକେ
ବିଶ୍ୱସ୍ତ ବାନ୍ଧବ ପରି; ସେ ଭାବ-ପ୍ରବଣ
ତରୁଣର ସବୁ ଦ୍ୱିଧା କ୍ଷଣକେ ଦ୍ରବଣ
ହେଲା ପ୍ରବୀଣର ମଧୁ ସମାନୁଭୂତିରେ,
ସ୍ୱୀକୃତ ସେ ହୋଇଦେଲା ବିନା ଦ୍ୱିରୁକ୍ତିରେ ।

ମେସରୁ ବିଦାୟ ନେଇ, ବାକସ, ପୁଟୁଳି
ଧରି ଅଳ୍ପ ଦିନେ ଆସି, ସଙ୍ଗେ କରି କୁଲି
କମଳ ପ୍ରବେଶ କଲା ଅଧ୍ୟାପକ ଘରେ
ଆକାଶର ପକ୍ଷୀ ଯେହ୍ନେ ଆଶ୍ରେ ଡାଳପରେ ।

ବାହାରେ ସ୍ୱତନ୍ତ୍ର କକ୍ଷେ ବସନ୍ତି ତାହାର
ଆଗରୁ ନିର୍ଦ୍ଦିଷ୍ଟ ଥିଲା, ଟେବୁଲ, ଚେୟାର

ଖଟ, ଗଦି, ବସ୍ତ୍ରବନ୍ଦ ଆଭିଜାତ୍ୟମୟ,
ପରିଷ୍କୃତ, ଚୁନ୍ତମନ୍ତ,—ଦରିଦ୍ର ତନୟ
କମଳର ମନ ଏଥି ରହେ ଖାପ-ଛଡ଼ା
କିଛିଦିନ ଲାଗି, କାଳେ କହୁଥିବେ ପର
କିସ କିଏ ଦେଖି ତାର ଧନ ବେଶ ବାସ
ଏ ଉଚ୍ଚ ସ୍ୱାଚ୍ଛନ୍ଦ୍ୟ ମଧ୍ୟେ ! ଆଣିଲା ଆଶ୍ୱାସ
ଶୀଘ୍ର କିନ୍ତୁ ଅଧ୍ୟାପକଙ୍କ ମଧୁ ବ୍ୟବହାର ।
କେବଳ ତାଙ୍କର ନୁହେଁ,—ସାରା ପରିବାର
ଭୃତ୍ୟ ସହ, ନିଜ ଲୋକ ପରି ନେଲେ କରି
କମଳର କ୍ରମେ ସର୍ବେ ହେଲେ ନିଜ ପରି ।
ଅଳ୍ପ ଦିନେ ଅବିନାଶ ଦେଲେ ଜନ୍ମାନ୍ତର
କମଳକୁ, କରିଆଇ ପୋଷାକ ସୁନ୍ଦର ।
ମିଠାକୁ ଧରି ସେ ଯେବେ ଯାଅଇ ଭ୍ରମଣେ
ଦୁଇଭାଇ ବୋଲି ଲୋକେ ଭାବୁଥାନ୍ତି ମନେ ।

କମଳଠୁଁ ପାଇ ସତ୍ୟେ ଭ୍ରାତୃ ବ୍ୟବହାର
ନମମାପୁ କ୍ରମେ ମିଠା, ମିଷ୍ଟ ଅତ୍ୟାଗ୍ରର
କ୍ରମେ ତାର କମି ଆସେ, ପାଠେ ଦିଏ ମନ,
କରେ ଯତ୍ନେ 'କମଳଦା'-ବଚନ ଶ୍ରବଣ ।
ଅନ୍ୟଠାରୁ ଶୁଣି ବୃତ୍ତି, ପୁରସ୍କାର କଥା
କମଳଦା ପ୍ରତି ତାର ସମ୍ମାନ ଅଯଥା
ଆସିଅଛି; ଶିଶୁ ଚକ୍ଷେ କମଳଲୋଚନ
ପାଣ୍ଡିତ୍ୟ ଓ ସମ୍ମାନର ମଧୁର ସ୍ୱପନ ।

ସନ୍ଧ୍ୟାବେଳେ ହୁଏ ନିତ୍ୟ ମିଳିତ ପ୍ରାର୍ଥନା
ସରଳ ନିରାଡ଼ମ୍ବର ବ୍ରାହ୍ମ ଉପାସନା ।
କରୁଣା କରଇ ଗାନ ରବୀନ୍ଦ୍ର ସଙ୍ଗୀତ
ଅନ୍ତର୍ଦ୍ଦୀପ୍ତ, ଭାବେ ହୁଏ ଦ୍ରବୀଭୂତ ଚିତ୍ତ;
ଆତ୍ମା ଯେତେହେଲେ ଲଘୁ ହୋଇ ନଭେ ଭାସିଯାଏ
ଊର୍ଦ୍ଧ୍ୱେ ଊର୍ଦ୍ଧ୍ୱେ ସଙ୍ଗୀତର ତରଙ୍ଗ-ପ୍ରବାହେ,
ପାର୍ଥିବ କ୍ଷୁଦ୍ରତା ଲୁଚେ, ସାର୍ବଭୌମ ଭାବ
ଶ୍ରୋତାର ମନନେ ରଚେ ଦବନ ପ୍ରଭାବ ।
କମଳେ ଅଜ୍ଞାତ ଥିଲା, କରିବା ସଙ୍ଗୀତ
ଆତ୍ମାକୁ ଉଦ୍‌ବୁଦ୍ଧ, କ୍ଲାନ୍ତ ଦେହେ ବର୍ଦ୍ଧିତ ।
ରବୀନ୍ଦ୍ରର ବାଣୀ ଆଉ କଣ୍ଠ କରୁଣାର
ମିଶୁଁ, ପ୍ରତିଭାତ ହେଲା ନୂତନ ସଂସାର ।
ମନ୍ତ୍ର-ମୁଗ୍ଧ ପରି ଶୁଣେଁ; ଅପେକ୍ଷାରେ ଥାଏ
ଦିନ ସାରା, ପ୍ରାର୍ଥନାର ମଧୁ କ୍ଷଣପାଇଁ ।
ଅବିନାଶ କରିଥାନ୍ତି ପାଠ ବା ପ୍ରାର୍ଥନା;
କିଛୁକ୍ଷଣ ଧ୍ୟାନେ ହୁଏ ଶେଷ ଉପାସନା ।
ସଂଗୀତ, ପ୍ରାର୍ଥନା ଅବା ପାଠ ପ୍ରଭାବରେ
କମଳ ନୟନୁ ବେଳେ ବେଳେ ଅଶ୍ରୁ ଝରେ ।

ବନ୍ଧୁ ଦିନ ଗଲେ ମଧ୍ୟ, କମଳ, କରୁଣା
ରହୁଥାନ୍ତି ବ୍ୟବଧାନେ । ନିତ୍ୟ ଦେଖାଶୁଣା,
ନିତ୍ୟ ପ୍ରାର୍ଥନାରେ ଭେଟ, ଦେଖା କଲେଜରେ
ଦଶଙ୍କ ଆଗେ କଥା ନ କହଇ ଲଜ୍ଜା, ଡରେ ।

କମଳ ମାନସେ ସଭ୍ୟ, ସ୍ନେହଶୀ କରୁଣା
ସ୍ୱର୍ଗର ଅମରାଠାରୁ ନୁହେ କଛୁ ଊଣା;
ଅଲଭ୍ୟା ସେ, ଅପାର୍ଥିବ, ଅନ୍ୟ ଲୋକାଗତ;
ନିଜେ ଭାବେ ସ୍ଥୂଳ, ଗ୍ରାମ୍ୟ, ଦରିଦ୍ର, ପାର୍ଥିବ ।
ସଖ୍ୟ ତା'ର କମଳର କଳ୍ପନା ବାହାରେ,
ସେ କେବଳ ଦୂରୁଁ ପୂଜା କରେ କରୁଣାରେ ।
ବାଟେ, ଘରେ, ପଡ଼ିଗଲେ କେବେ ମୁହାଁମୁହିଁ
ବାଟ ଛାଡ଼ି ଚାଲିଯାଏ ଲାଜେ ଗୃହେଁ ଭୁଇଁ ।

ନାରୀ ଜାତି—ସହଜାତ ଅନ୍ତର୍ଦୃଷ୍ଟି ବଳେ
କରୁଣା ଚହ୍ନିଛି କିନ୍ତୁ ସଲଜ୍ଜ କମଳେ ।
ସେ ଜାଣେ ତା'-ତା'ର ମଧ୍ୟେ ଧନ ବ୍ୟବଧାନ,
ପୁରୁଷର ନାରୀ ପ୍ରତି ଭୟ ଓ ସମ୍ମାନ,
ସେ ଜାଣେ ସଦ୍‌ଗୁଣ ସଙ୍ଗେ ମୈତ୍ରୀ, ସଙ୍କୋଚର;
ସେ ଜାଣେ ସହଜ ଲଜ୍ଜା ଅକଳୁଷିତର ।
ଧୀରେ ଧୀରେ ସ୍ଥିରକଲା ତେଣୁ ସୁଚତୁରୀ
ନିଜେ ସେ ଖୋଲିବ କ୍ରମେ ଅର୍ଗଳେ କଉଶି ।

'କମଳଦାଠାରୁ ତୋର ଆଣ ତ ସେ ବହି"
"ଏ ଖାତାଟା ଫେରାଇ ଦେ,—ଟେବୁଲୁଁ ନ କହି
କାଲି ସେ.ନ ଥିଲା ବେଳେ ଆଣିଥିଲି ଦେନ,
"କହିବୁ ଝରକା, ଘରେ ନ ଦେଇ ଯିବେନ
ମାଙ୍କଡ଼ ପଶିବେ ଘରେ" "କହିବୁ ଦାଦାଙ୍କୁ"
ବଜାରେ ସେ ଯିବେ ନେଇ ମତେ ଓ ମାଆଙ୍କୁ" ।

କମଳର ସଖ୍ୟ ପାଇଁ

କରୁଣାର ଆଗ୍ରହ

ମିଠା ମାଧ୍ୟମରେ ଏହିପରି ନାନା ଛଳେ
ନିକଟୁ ନିକଟେ କ୍ରମେ ଆଣିଲା କମଳେ
ଚତୁର କରୁଣା; କ୍ରମେ ପିତୃ ସମକ୍ଷରେ
ପଚରଇ ଶ୍ରେଷ୍ଠ ଶ୍ରେଷ୍ଠ ପ୍ରଶ୍ନ କୌତୂହଳେ
"ଆପଣଙ୍କ ଗାଆନ୍ତି ନା ?" "ପଢ଼ନ୍ତି ବଂଗଳା ?"
"ମିଠା ଏବେ ପୁଣି ଯତେ ହେଲାଣି ଚଗଲା !"
ଦରହସେ କ୍ଷୀଣ ସ୍ୱରେ ହଁଅ, ନାହିଁ କରି
କମଳ ବଂଚୁଏ ନିଜେ—ଶେଷ ଦ୍ୱିଧାବସ୍ଥା
ସଂକୋଚେ ପଳାଏ ଯେହ୍ନେ ଉଷାର ଚୁମ୍ବନେ,
ଶେଷ ମଲ୍ଲୀ-ପୁଷ୍ପ ଅବା ଶରଦ ଆଗମେ ।

ଛିଣ୍ଡିବାରୁ ବ୍ୟବଧାନ-ଲୂତାତନ୍ତୁ ଜାଲ
କ୍ରମେ ହେଲା ପରସ୍ପରେ ବାକ୍ୟ ବ୍ୟବହାର,
କ୍ରମେ ଘୁଞ୍ଚେ କମଳର ସଂକୋଚ ସଭୟ,
ଗ୍ରୀଷ୍ମ ଘୁଞ୍ଚଇ ଯେହ୍ନେ ହେଲେ ମେଘୋଦୟ ।
କରୁଣା ଆସଇ ଏବେ କମଳର ଘରେ
ପାଠ ବୁଝେ, ପାଠ ପୁଛେ, ଖେଳ, ଥଟ୍ଟା କରେ,
'କମଳଦା' ବୋଲି ଡାକେ, ଦିଅଇ ଆଦେଶ
ଏକାମ ସେକାମ ପାଇଁ, ଦିଏ ଉପଦେଶ
ମଧ୍ୟେ ମଧ୍ୟେ କିଂ-କର୍ତ୍ତବ୍ୟ ବିଚୁର ପଡ଼ିଲେ;
ଅଲକ୍ଷିତେ ସେବା ମଧ୍ୟ କରେ ଧୀରେ ଧୀରେ,
ଶ୍ରେଷ୍ଠ ଶ୍ରେଷ୍ଠ କାମ କରି, ତାଁର ରୁମାଲ
ବୋତାମ ଲଗାଇ ଅବା ପଂଜାବୀରେ ତାର ।

କମଳ ସ୍ନେହେଁ ସେ ସେବା ମଧ୍ୟେ ମମତା ଦେଇ
ଉତ୍କୃଷ୍ଟ ପୁସ୍ତକଟିଏ, କୁସୁମେ ସଜେଇ ।
କ୍ରମେ ଅଲକ୍ଷିତେ ଜାଣିଲେଣି ପରସ୍ପରେ
ପରସ୍ପର ପ୍ରତି ଜାତ ସ୍ନେହ ଅନ୍ତରରେ ।
ଏକ ଏବେ ଗୃହେ ଆନ—ଅଚ୍ଛିନ୍ନ-ସନ୍ନିଧି,
ଏକ ଗୃହେ ଆରେକର ହୃଦୟ ପରିଧି ।
ଉଭୟ ଗୃହାନ୍ତ ଅଧିକାର ଉଭୟର
ଶୁଣିବାକୁ——"ତମେ ମୋର, ଏକାନ୍ତ ମୋହର" ।
ବାହାରର ଥଟ୍ଟା, ହସ, କଥୋପକଥନ
ଆଗ ପରି ନାହିଁ ଆଉ ହୃଦୟ-ନନ୍ଦନ ।
ଏବେ ଗୃହେ ମନ୍ଥି ହୃଦ ଦୁହେଁ ଦୁହିଁଙ୍କର
ନିଃସାରିତ ସୁଧା ପିଇ ଭରିବେ ଅନ୍ତର ।
ନିଜ ନିଜ ହୃଦୟର ଗୋପ୍ୟ ଅନ୍ତଃପୁର
ଖୋଲି, ଅଭ୍ୟର୍ଥିବା ପାଇଁ ଉଭୟେ ବ୍ୟାକୁଳ ।
କିନ୍ତୁ କାହିଁ ବ୍ୟପଦେଶ ? ସୁଯୋଗ, ଛଳନା ?
କିଏ ଆଗେ ବଖାଣିବ ହୃଦୟ ବେଦନା ?

—*—

# ଚତୁର୍ଥ ସର୍ଗ

## ପ୍ରଣୟ ଓ ପରିଚୟ

ପୂଜା ଅବକାଶ, ତେଣୁ ଛାତ୍ର ପ୍ରଫେସରେ
ଯାଉଛନ୍ତି ଦଳେ ଦଳେ ନିଜ ନିଜ ଘରେ ।
କରୁଣାର ପରିବାରେ ଦେବାକୁ ବିଦାୟ
ଯାହାର ବିବିଧ କର୍ମେ ହେବାକୁ ସହାୟ,
କମଳ ବି ଆସିଅଛି ଆଜି ଇଷ୍ଟେସନେ
କିନ୍ତୁ ଗୃହେ, ବ୍ୟଥା ଯେହ୍ନେ ଲାଗଇ ଚରଣେ ।
କରୁଣା ରହିଛି ପିତା-ଜନନୀ ସଙ୍ଗତେ
ମିଠା ସାଥେ ବୁଲୁଛି ସେ ଧରି ତାର ହସ୍ତେ ।
କମଳ ପାଉଛି ଶାନ୍ତି ଦେଇ ତାକୁ ସ୍ନେହ
ଭଗିନୀର ପ୍ରତିମୂର୍ତ୍ତି,—ତାରି ମୁଖ, ଦେହ ।
ଶ୍ରେଷ୍ଠ ସେ ବାଳକ, କିନ୍ତୁ ଉତ୍ଫୁଲ୍ଲ-ମାନସ
ଗୁରୁଠାରୁ ପାଇ ସ୍ନେହ,—ଘନିଷ୍ଠ, ସରସ,
କହେ ସେ, "କମଳ ଦାଦା, ଫେରିବାରବେଳେ
ଯାହା ଦରକାର, ଆଣିଦେବ ଅବହେଳେ
କହ କିବା ଦରକାର ! ଆମ କଲିକତା
ତମ ଏ କଟକଠାରୁ ହୋଇବ ଦଶଠା ।
ସବୁ ଚିଜ ମିଳେ ତହିଁ—ଯାଇଛ ନା କେବେ ?
ଯାଇନା ? ଆସୁନା କିପାଁ ଆମ ସଂଗେ ଏବେ ?
ଯାଏ ବାବାଙ୍କୁ ମୁଁ କହେ"—ଚଞ୍ଚଳ ଶିଷ୍ୟରେ
ଅଟକାଇ ରଖେ ଗୁରୁ, ନିବିଡ଼ ସ୍ନେହରେ ।

ଯାକ କହେ, "କଷ୍ଟ ମୋର ନାହିଁ ଦରକାର,
ଘରେ ଯାଇ ଶଠି ଦେବୁ ମାତ୍ର ବାରମ୍ବାର ।"

ରେଲ ଆସି ଉପସ୍ଥିତ, ଯେତେ ମୁଶାଫେର
ଦଉଡ଼ନ୍ତି ଏଣେତେଣେ, ଅଳ୍ପ ମାତ୍ର ବେଳ,
ରହେ ଗାଡ଼ି ଏଠି । ଅଧ୍ୟାପକ ଅବିନାଶ
ଯେଜନଲେଣି ସକୁଟୁମ୍ବ, ଉଚ୍ଚ ଏକକ୍ଲାସ ।
କମଳ ବାହାରେ ଠିଆ । ଖୋଲି ବାତାୟନ,
ଦେଖୁଛନ୍ତି ଯାତ୍ରୀଙ୍କର ଗମନା ଗମନ
କରୁଣା ଓ ମହାମାୟା । ଡାକଲେ କମଳେ
ମହାମାୟା, "ଶୁଣ ବାବା, ଫେରି ଯାଇ ଘରେ
ନମସ୍କେଶଠି ଦେବ; ବାପା, ମାଆ, ଭଗିମାଙ୍କୁ
ଜଣାଇବ ଆମ ଶ୍ରଦ୍ଧା; ଆଣିବ ତନଙ୍କୁ
କେବେ ଏଥି, ଦେଖିବାରେ ବାସନା ଆମର,
ଗାଡ଼ି ଛାଡ଼େ······ଥାଅ ବାବା, ନମସ୍କାର କର
ମୂର୍ଖ ମିଛା, ମାଷ୍ଟରଙ୍କୁ—"···ଗାଡ଼ି ଛାଡ଼େ ଧୀରେ,
କରୁଣା କାହୁଛି ଶେଷେ ବାତାୟନଟିରେ
ମୁଖ ରଖି; ହାତ କାଢ଼ି, 'ପତ୍ର ଦେବେ ଦାଦା'
ପ୍ରଥମ ବିଚ୍ଛେଦ ଗାଡ଼ି ଗତି-ଶବ୍ଦ ତାହାପରେ ହେଲା ବାଧା ।

ନିମିଷେ ଗଲାଣି ଗାଡ଼ି ଚକ୍ଷୁ ଅନ୍ତରାଳେ
କମଳ ତଥାପି ଚାହିଁଅଛି ସେହିଆଡ଼େ ।
ହୃଦୟର କୋହ ଆଉ ଚାପି ନ ପାରଇ
ଅଶ୍ରୁ ବହେ ଗଣ୍ଡ ଦେଇ, ରୁମାଲେ ପୋଛଇ ।

କମଳ ଫେରଲା ଗ୍ରାମେ, ଜନମୀ, ପିଅର
ଘେନିଚ ଭାଇ, ନାମୀ, ପ୍ରତିବେଶୀଜନଙ୍କର
ହୃଦେ ରଚ ନବୋତ୍ସାହ । କହନ୍ତି ସମସ୍ତେ
'କମଳର ସ୍ୱାସ୍ଥ୍ୟ ଦେଖ ବଢ଼ିଛି କେମନ୍ତେ ;"
କମଳ ଏ ସବୁ ନାହିଁ ପାରେ ଅନୁଭବ,
ନିଜେ ସେ ନୋହିଛି ମୁଗ୍ଧ ଦେଖି ମୁଖ ଛବ
କେବେ ସେ ଦର୍ପଣେ; ବରଂ ବେଳେ ବେଳେ ଭାଳେ
ନିଜ ପାଖେ ଶଚ୍ଚେ ଠିଆ କର କରୁଣାରେ
କେତେ ସେ କୁତ୍ସିତ, ସ୍ଥୂଳ, ଆକର୍ଷଣ-ହୀନ,
କ୍ଷୀଣ ଆଶାଟିକ ତାର ହୁଅଇ ବଲୀନ ।

ଗ୍ରାମର ଅନ୍ୟାନ୍ୟ ଟୋକା ଆସିଲେ ନିକଟେ
କହିଲେ ତା' ପାଶେ ଯାହା ଘଟୁଛି ବା ଘଟେ,
କିଏ ସେ ଦେଉଛି ବାଧା ଗ୍ରାମ ସଂଗଠନେ,
କେ କରଇ ପ୍ରତିବାଦ ବାଳକା ପଠନେ,
କେଉଁ ବୁଢ଼ା ବଧବାର ଏକାହିଁ ଆଶ୍ରୟ
ନାତି ଗୋଟି ନେଲା ଯମ, ତା' ବଳାପ-ମୟ
ଏବେ ଗ୍ରାମ ତୋଟା, ବଲ; ତର୍କବାଚସ୍ପତି
ପୁଣି କନ୍ୟା ଦେଇ ବୁଢ଼େ, ଆଣିଛୁ ସମ୍ପତ୍ତି,

ମାଲେରିଆ ରୂପେ କିନ୍ତୁ କନ୍ୟା- ଅଭିଶାପ
ଧରିଛି ବୁଢ଼ାଙ୍କୁ, ଏଇ ଥର ହେବ ସାଫ୍ ।
ଏଇପରି ଗ୍ରେଟ ଗ୍ରେଟ ଗ୍ରାମର ଘଟଣା
ଗ୍ରାମଜନ ନେତ୍ରେ ଯାହା ହୁଏ ବଡ଼ ଜଣା
ଅନ୍ୟ ସ୍ଥାନେ ସାମ୍ରାଜ୍ୟର ଉତ୍‌ଥାନ ପତନୁଁ,
କମଳ ଆଗ୍ରହେ ଶୁଣେ । ଶୈଶବ-ସ୍ମରଣୁଁ
ପ୍ରିୟ ପୀଠ ଏହି ଗ୍ରାମ, ପ୍ରତି ନରନାରୀ
ପ୍ରତି ବୃକ୍ଷ, ପ୍ରତି ଘର, ବିଲ, ତୋଟା, ବାରି
ଅତି ପରିଚିତ ତା'ର—ତେଣୁ ଅତି ପ୍ରିୟ,
କମଳର ଗ୍ରାମ ପ୍ରିୟ ତାର ଏ ଗ୍ରାମର ସ୍ୱଜନ, ଆତ୍ମୀୟ ।
କ୍ରମେ କିନ୍ତୁ ପ୍ରିୟ ଗ୍ରାମ ଭାଙ୍ଗି ଭାଙ୍ଗି ଯାଏ
ଶିକ୍ଷିତ ଯେ, ଗ୍ରାମ ଛାଡ଼ି ସହରେ ପଳାଏ
ଚାକିରିର ଅନ୍ୱେଷଣେ; ପାସୋରଇ ଗ୍ରାମେ ।
ଗ୍ରାମହିଁ ଦଳିତ ଏବେ ଜୀବନ-ସଂଗ୍ରାମେ ।
ଗ୍ରାମ ଥିଲା ସ୍ୱୟଂ-ପୂର୍ଣ୍ଣ;—ଏବେ ଆଉ ନାହିଁ
ସବୁଥିରେ ଗ୍ରାମ ରହେ ସହରକୁ ଚାହିଁ;
ଗ୍ରାମର ମାମଲା ହେଲା ବଡ଼ ସହରେ
ଟାଉନ, ଓକିଲ ବଢ଼ି, ଗ୍ରାମର ଧ୍ୱଂସରେ ।
ଏଇ ଗ୍ରାମେ ଓଳିତଳେ କାବ୍ୟ, ଦରଶନ
ଯୁଗେ ଯୁଗେ ହୋଇ ଆସୁଥିଲା ଅଧ୍ୟାପନ,
ଏବେ କିନ୍ତୁ ପଢ଼ିବାକୁ ଉପନୟଣିକା
ଯାଆନ୍ତି ସହରେ ପିଲେ, କରି ଜମି-ବିକା ।
ଶିକ୍ଷିତ ମାନଙ୍କେ ହେଲେ ଆପଣା-କେନ୍ଦ୍ରିକ
ନିଜ-ପରିବାର-ପ୍ରାଣ, ଅତ୍ୟନ୍ତ ଦାମ୍ଭିକ ।

ପାସୋରିଲେ ପଲ୍ଲୀ-ମାତା, ରହିଲେ ସହରେ
ଗ୍ରାମ ପୁରେ ଦ୍ୱନ୍ଦ୍ୱ-କାଟି ମୂର୍ଖଙ୍କର ଦଳେ ।
ଅରାଜକ ଗ୍ରାମ ଆଜି, ବହୁ ଦଳେ ଭଗ୍ନ
କ୍ଷୁଦ୍ର-କ୍ଷୁଦ୍ର-ଖଳ-କୁତ୍ସା-ଚକ୍ରାନ୍ତରେ ମଗ୍ନ ।
ଦରିଦ୍ର ଶିକ୍ଷକ-ପୁତ୍ର କମଳର ସ୍ଥାନ
ଗ୍ରାମେ କାହିଁ ? ତା କଥାରେ କିଏ ଦେବ କାନ ?
କଲେଜର ଡିଗ୍ରୀ-ଧାରୀ ଅଛନ୍ତି ଅନେକ
ସେମାନେ ତ ମୋଡ଼ୁଛନ୍ତି ଗରିବଙ୍କ ବେକ,
ଏ ଦରିଦ୍ର ତରୁଣର କଥା କେ ଶୁଣିବ ?
କା ଆଗରେ ଗ୍ରାମ ଦୁଃଖ ଯାଇ ଗୁହାରିବ ?
ସ୍ୱପ୍ନ କିନ୍ତୁ ରହିଅଛି କମଳ ଅନ୍ତରେ
ଗ୍ରାମଟିକି ସୁଧାରିବ । ଭାବେ ନିରନ୍ତରେ,
କେମନ୍ତେ ଆଦର୍ଶ -ଗ୍ରାମ ଏହାକୁ କରିବ
ସାମ୍ପ୍ରତିକ ସବୁ ଅଭିଶାପୁଁ ଉଦ୍ଧାରିବ ।
ଛୁଟିରେ ଆସିଲେ ତେଣୁ ସମବୟୁ ଦଳେ
ବରାବର କଥା କରେ ଏହି ବିଷୟରେ ।
କମଳର ଭାଗ୍ୟ ଭଲ, ପିତାଙ୍କଠୁ ତା'ର
ଏସବୁରେ ପାଇଥାଏ ଉତ୍ସାହ ଅପାର ।
ତେଣୁ ସବୁ ବାଧା ସତ୍ତ୍ୱେ ସଚେଷ୍ଟ ସେ ଥାଏ
କିଛି ଯଦି କା'ର ଉପକାର କରିପାଏ ।

ବାହାରେ କରୁ ସେ ପଛେ ଜଗତ ଉଦ୍ଧାର
ଅନ୍ତରେ କରୁଛି ଅହର୍ନିଶି ହାହାକାର ।

ଡେଇଅଛୁ କାନ; ଆଖି, ଡାକବାଲ୍ ପାଇଁ
ପ୍ରତିଶ୍ରୁତ ଚିଠିପତ୍ର କପାଁ ଆସୁ ନାହିଁ !
କେଜାଣି ବା ଭୁଲିଗଲେ, ବଡ଼ ଲୋକ ସେ ତ,
ଲାଗିଥିବ ବଡ଼ ବନ୍ଧୁ-ମିତ୍ର ସଙ୍ଗେ ଭେଟ,
କପାଁଇଁ ପଡ଼ିବ ମନେ ଘରୋଇ ଶିକ୍ଷକ
ମାତ୍ର ସେ ତ ଭୃତ୍ୟ ଏକ, ଗୃହାନ୍ନ-ଭକ୍ଷକ ।
ବାହାରେ ସୌଜନ୍ୟାଭାସ ଏ ନବ ସଭ୍ୟତା
ମୁଖେ ମଧୁ ସମ୍ଭାଷଣ, ପେଟେ ବଭତ୍ସତା ।
ପରେ ଭାବେ, "ନା'ନା' ଏହି ପ୍ରକାର ଶଠତା
ସେ କୁଟୁମ୍ବେ ଅସମ୍ଭବ । ସେ ଶୁଦ୍ଧ ମମତା,
ଈଶ୍ୱର-ନିର୍ଭରଭାବ କର୍ମ, ବଚନର,
ସେ କି ସମ୍ଭବଇ ଥିଲେ କଳୁଷ ଅନ୍ତର ?
ଡାକଘର ଟିକେ ଦୂରେ; ନ ଥିବ ପିଅନ,
ସେଥିପାଇଁ ହୁଏ ଡେରି" ତୁରନ୍ତ ବହନ
ପାଇଁ ନିଜ ଲୋକ ଗୋଟି ଇଚ୍ଛା ପଠାଇବା ।
ସନ୍ଦେହ କରିବେ ଲୋକେ,—ଗୃହ୍ୱ ପାଣ୍ଠି ଥିବା ।

ପ୍ରଥମ ପତ୍ର
ବାକ୍ସମସ୍ତ

ଆସିଲା ଚିଠାଉ କିନ୍ତୁ । ସୁନ୍ଦର ସେ ଖାମ
କରୁଣାର ହସ୍ତାକ୍ଷରେ ଲେଖା ନାମ ଧାମ;
ଏସେନ୍ସରେ ସୁରଭିତ, ଶୁଁଘେ ବାରମ୍ବାର
ଫିଟାଉ ଫିଟାଉ କମ୍ପେ ହୃଦୟ ତାହାର ।
ଖୋଲି ଦେଖେ ଦୁଇପତ୍ର—ଏକ ମିଠାଠାରୁ
ପ୍ରଧାନ ଯା'; ଅନ୍ୟଟିଏ କ୍ଷୁଦ୍ର, କିନ୍ତୁ ଗୁରୁ

କାଗଜେ ଲିଖିତ ଆର ପତ୍ର କରୁଣାର—
ତାକୁଇ ପଢ଼ଇ ଆଗ, ପଢ଼େ ବାରମ୍ବାର ।
ଅନ୍ତ କଥା ଲେଖିଛି ସେ "ପଦ୍ମଶ୍ରୀକୁ ସୁଖେ,
ପୂଜାର ଉତ୍ସବ-ଊର୍ମି କଲିକତା ବୁକେ
ଅବାରିତ ବହିଯାଏ । ମୋର ଚିତ୍ତ ଗୃହେ
ଯିବ କିନ୍ତୁ ଗ୍ରାମେ ପହୁଁ କପୋତଟି ଗାଏ
କରୁଣ ସଙ୍ଗୀତ ତାର କପୋତିନୀ ପାଇଁ,
ଦୁହେଁ ବନାନ୍ତର ଦୂର ଦୁଇ କୋଣେ ଥାଇ
ଅଦୃଷ୍ଟ ବଟପାଳିକୁଞ୍ଜ, ପାର୍ବତି ସକାଳ,
ସବୁ ଶାନ୍ତ, ସୁନିର୍ମଳ, ମୁକ୍ତ, ନିର୍ଜଂଜାଳ ।
ତମେ ସୁଖୀ, ଜନ୍ମିଅଛ କୋଳେ ପ୍ରକୃତିର
ତାର ପରି ତେଣୁ ତମେ ଉଦାର, ଗମ୍ଭୀର ।
ବାବା ଆଉ ମାଆ ସଙ୍ଗେ ବରାବର ପଢ଼େ
ତମ କଥା । ମନେ ଅଛି ସଦା ଏ ଚିତ୍ତରେ ।
ଆଶାକରେ ଭାଇ, ଭଗ୍ନୀ, ଜନନୀ ଗହଣେ ।
ଆମକୁ ପକାଉଥିବ ମନେ କ୍ଷଣେ କ୍ଷଣେ ।"
ମିଠାର ଚିଠିଟି ପର୍ଦ୍ଦ, କିନ୍ତୁ କିଛି ନାହିଁ,
ଆସିଲୁ, ଖାଇଲୁ, ଗଲୁ, ପହଁଚିଲୁ ଠାଇଁ;
ଥରେ ମାତ୍ର ପଢ଼ି ତାକୁ, ଦେଲା ରଖି ସ୍ଥାନେ,
କରୁଣାର ପତ୍ରଟିକି ଭରି ସେହ୍ନ ଖାମେ
ରଖିଲା ପକେଟେ; ନିଜ ହୃଦ ସାନ୍ନିଧରେ,-
କେ ନ ଥିଲେ, ବାରମ୍ବାର ପଢ଼େ ଖୋଲି ଧୀରେ ।
ସୂକ୍ଷ୍ମ ତବେ ଆଜି ତାର ଫୁଲି ଉଠେ ପ୍ରାଣ
ସେ କି ଭାଗ୍ୟବାନ ତାହା କି ଜାଣିବ ଗ୍ରାମ ?

ତରତରରେ ଲେଖି ବସେ ପୁଣି ପ୍ରତ୍ୟୁତ୍ତର,
ଏଣୁ ଛଠି ଗଲେ ପୁଣି ଆସିବ ଉତ୍ତର ।
ଛୁଟ ପାଶେ ଲେଖେ ପତ୍ର ଗତାନୁଗତିକ,
କି ଲେଖିବ କରୁଣାକୁ ? ହୁଏ ଅଗତିକ
ଲେଖଣୀ ଧରିଲେ ହସ୍ତେ । ପୁଣି ପଢ଼େ ପତ୍ର
ନିରେଖି ପଂକ୍ତିକି ପଂକ୍ତି; ସମସ୍ତ, ସର୍ବତ୍ର ।
ପଚ୍ଚରଇ ନିଜେ 'କାହିଁ ଗନ୍ଧ ପ୍ରଣୟର
ଏ ପତ୍ରେ ? ସମ୍ବୋଧ—ପଦ ଅବଶ୍ୟ 'ସ୍ନେହର'
କିନ୍ତୁ ସେ ତ ଏକାଳରେ ପ୍ରଯୁଜ୍ୟ ସକଳେ
ନିବିଡ଼ ସମ୍ପର୍କ, କାହିଁ ଥିବ ତାହା ଛଳେ ?
ବହୁ ଭାବ, ଭୟେ ଭୟେ, କରୁଣାର ପତ୍ର
ଠିକ୍ ଏକ ପତ୍ର ଲେଖେ ।
"ପାଇଲି ତୁମର
ହସ୍ତାଙ୍କିତ ସ୍ନେହ ପତ୍ର, ଶତ ଧନ୍ୟବାଦ ।
ଅକୁଶଳ କିଛି ନାହିଁ ଆମ୍ଭର ସମ୍ବାଦ ।
କିନ୍ତୁ ଯାହା ଅଛି ପଲ୍ଲୀ ତୁମ କଳ୍ପନାରେ
ବାସ୍ତବରେ ନାହିଁ ତାହା । ସଭ୍ୟତା ଧାଆରେ
ବିକୃତ ତା' ସୁସ୍ଥ ଦେହ, ପୋଡ଼ୁ ତା ଅନ୍ତର;
ସହରର ବିଷେ ଆଜି ପଲ୍ଲୀ ଜରଜର
ନିଜ-ଗ୍ରାମ ଦଶା ଦେଖି ହୁଏ ମୁଁ ହତାଶ,
ଉଦ୍ଧାରିବା ପାଇଁ ଯାକୁ କଲେ ଯେତେ ପ୍ରାସ,
ନାନା ବାଧା ପହଞ୍ଚୁଛି, ନାହିଁ ହାତେ ଧନ
ନାହିଁ ଅଛି ସହଯୋଗ, ଅବା ସଂଗଠନ ।
ତଥାପି ଲଗିଛି କାମେ । ଦରିଦ୍ର ଅଧମେ
ବଡ଼ ବଡ଼ ବନ୍ଧୁମେଳେ ରଖିଛ ଯା' ମନେ

ସେଇ ବଡ଼ ଭାଗ୍ୟ ମମ । ମିତ୍ରାର ପତ୍ରରୁ
ବୁଝିବ ଅନ୍ୟାନ୍ୟ ସବୁ । ପୁଣି ତବ କରୁ
ପତ୍ରପାଇଁ ଆଶାକରି ରହିଲି ଅନାଇ,
ବାବା ମା'ଙ୍କୁ ଦେବ ମୋର 'ନମସ୍ତେ' ଜଣାଇ ।"

ଇତିମଧ୍ୟେ ସଜ ଦେଖି କମଳର ନନା
ପଢ଼ାଇଲେ ପରିବାରେ ଯେ ପତ୍ର ରଚନା
କରିଥିଲା ସେ କମଳ ପିତାଙ୍କୁ ପତ୍ରରି,
ସଂସାରୀ ସେ ହେବ, ଅବା ଜନସେବାକାରୀ ।
ଭାଇନା କହିଲେ ଶୁଣି "ତାଙ୍କୁ ତାହା ସାଜେ
ଯା'ର ଘରେ ଜମି ଜମା ସମ୍ପତ୍ତି ବିରାଜେ ।
ଦେଶ ସେବା କରେ ସିନା ଗୋପବନ୍ଧୁ ଦାଶ,
ଭାଇ ତାର ବଢ଼ାଉଛନ୍ତି ପଇତୃକ ବୃଷ
ପ୍ରତିବର୍ଷ । ତମର ତ ଖାଇବାକୁ ନାହିଁ,
ନିଜେ ସେବ, ବ୍ୟଗ୍ର କିପାଁ ପରସେବା ପାଇଁ ?"
ଜନନୀ ଏ ସବୁ କିଛି ବୁଝନ୍ତି ତ ନାହିଁ,
କହିଲେ କେବଳ ଦ୍ୱାର ଅନ୍ତରାଳେ ଥାଇ
"ତା ସାଙ୍ଗର ପିଲାଙ୍କର ବୋହୂ ଆସି ଘରେ
ଖଟିଲେଣି ବର୍ଷେ ବର୍ଷେ, ମୋର କମଳରେ
କନ୍ୟା କି ଅଘଟ ସତେ ? ବୁଲିଛନ୍ତି ପର
କେତେ ମାଆ କନ୍ୟା ଧରି, କର ବୁଝାପଡ଼ା
ଶୀଘ୍ର;—କାଳେ ମରିଯିବ ! ପୁଣି ଜନରବ
ସେ କାଳେ ଖ୍ରୀଷ୍ଟାନ ଘରେ ଚେତଣେ ବାହାହବ !

କାହିଁକି ଅଜାତି ହେବ ? ନଥିବା ସୁଦର୍ଶ
ବୋଧ ହିଏ ପିଲା ପାଇଁ ମୋର ଆଣ ଧର ।"
କହିଲେ କମଳ-ପିତା "ବାବା, ଆଜି ପଢ଼
କ-କହିବ, ଏଥିପାଇଁ ନୁହ ଡର ଡର ।
କର ଆଗେ ନିଷ୍ଠାସହ ଜ୍ଞାନ ଅରଜନ,
ଅଜ୍ଞ, ଦେଶେ କଣପାରେ କି ସେବା ଅର୍ପଣ ?
ତିଲକ, ମାଳବ୍ୟ ଆଦି ଯେତେ ଯେତେ ନେତା
ଦେଖୁନୁକି କେମନ୍ତେ ସେ ନାନା-ଶାସ୍ତ୍ର-ବେତ୍ତା ?
ଦେଶସେବା ନୁହେ ଖାଲି ବାଣ୍ଟିବା ତଣ୍ଡୁଳ
ଅବା ଗାଳିଦେବା ଇଂରାଜକୁ ହୋଇ ଠୁଳ ।

**କମଳର ପିତାଙ୍କ ନିକଟରୁ ପତ୍ରର ଆଲୋଚନା**

ଦେଖୁ ନୁ କି ପାରୁନୁ ଶ୍ରେଷ୍ଠ ଏ ଗ୍ରାମେ ସୁଧାର
ଘରୁ କି କେମନ୍ତେ ହେବୁ ଦେଶ-ସେବାକାରୀ ?
ଜ୍ଞାନେ ଧନେ ମନେ ମହତ୍ତର ଜନତାରୁ
ହେଲେ ସିନା ଜନତାକୁ ସଙ୍ଗେ ରଖିପାରୁ ?
ନ ହେଲେ କିଏ ସେ କହିଁ ମାନିବ ତୋ କଥା
ମନରେ ମାରିବୁ ଖାଲି ନିଜ ମନବ୍ୟଥା ।
ଗୋପବନ୍ଧୁ, ଲୋକମାନ୍ୟ ବାଣୀକି ଶୁଣିଲ ?
କହିଁକି ହୁଅନ୍ତି ଲୋକେ ତା ପାଖରେ ଠୁଳ ?
କେମନ୍ତେ ସେ ବାଗ୍ମୀ ଦେଖ, କି ଗଭୀର ଜ୍ଞାନ,
କି ସୁନ୍ଦର ଲେଖା ତାର ମଧୁର, ମହାନ;
ଲୋକୋତ୍ତର ଥିବାରୁ ସେ, ଲୋକ ତାକୁ ମାନେ;
ଲୋକୋତ୍ତର ହୁଅ ତୁହି ଚରିତ୍ରେ ବା ଜ୍ଞାନେ ।
ସେତେବେଳେ ବାଛି ନେଇ ଗ୍ରହିବୁ ଯେ ପଥ,
ତୋ ପଛରେ ଯିବେ ବାପା, ବୋଉ ଓ ଜଗତ ।"

ସେ ଦିନ ରାତିରେ ବାପା ଶୋଇଥିବା କାଳେ
ସନ୍ତର୍ପଣେ ମୋଡ଼ ପାଦ, ପ୍ରାୟ-ଅନ୍ଧକାରେ
କମଳ କହଇ ଅଶ୍ରୁ ଗଦ ଗଦ ଭାଷେ
"ନନା, ମୁଁ କରୁଛି କ୍ଷମାଭିକ୍ଷା ତବ ପାଶେ,
ଯଦି ସେ ପନ୍ଧ ମୋ' କଷ୍ଟ ଦେଇଥିବ କାଳେ
ତବ ହୃଦେ । ଲଜ୍ଜିତ ମୁଁ ନିଜ କ୍ଷୁଦ୍ରତାରେ ।"
ଟାଣି ତାରେ ବକ୍ଷ ପାଶେ, ଅଙ୍ଗୁଳି ସଂଗ୍ନଳ
ଦେହେ ତାର କହିଲେ ସେ "ଖୁସି ମୁଁ ରେ ଘର
ସେ ପନ୍ଧ ପଢ଼ି ମୁଁ ହେଲି । ମୁଁ କି ଚାହିଁବିରେ
ହେବୁ ତୁହି କ୍ଷୁଦ୍ର ପୁତ୍ର-କନ୍ୟା ପରିଧିରେ
ଆବଦ୍ଧ ନିଜକୁ ରଖି ? ମୋ ଦେଶ, ମୋ ଜାତି
ହେଉ ତୋର ପରିବାର, ସାରା ଦେଶ ମାଟି
ହେଉ ତୋର କ୍ରୀଡ଼ାକ୍ଷେତ୍ର । ଗୌରବ ସେ ବଡ଼
ତାଠାରୁ କି ବଡ଼ କଥା ଭାର୍ଯ୍ୟା, ଜମି, ଘର ?
ନ ଭୁଲିବୁ କିନ୍ତୁ ତୁହି,—ଘର-ଉପକାର,
ପର-ଉପକାର ପରି ଦେଶେ ଦରକାର ।
ଏ ଦେଶରେ ପତି-ପତ୍ନୀ ଇଂରାଜ-ଦମ୍ପତି
ପରି ଯଦି ଗଢ଼ୁଥାନ୍ତେ ନିଜର ସନ୍ତତି,
ସେପରି ଚଳାନ୍ତେ ଘର, ଆମେ ଦାସ ଜାତି
ରହନ୍ତେ କି ? ଭିନ୍ନ ନୁହନ୍ତି କି ଏଇ ମାଟି ?"

ଉତ୍ତର ଆସିଲା ତେଣୁ । ଏଥର କେବଳ
କରୁଣାର ହାତ-ଲେଖା, ଅମୂଲ୍ୟ ସମ୍ବଳ ।

ଲେଖିଛନ୍ତି ସେ "କମଳଦା, ପରମ ସ୍ନେହର,
ଦେଖୁଛନ୍ତି ସରଳ ନୁହଁ, ସାବଧାନୀ ବଡ଼ ।
ଆଫିସିଲ ପତ୍ର ପରି ମାପି ଚୁପି ଲେଖା
ତମ ପତ୍ର, ରଖିଅଛ ଦୈର୍ଘ୍ୟ, ପ୍ରସ୍ଥ, ରେଖା
ସମାନ ମୋ ପତ୍ର ସଙ୍ଗେ । ହୋଇଥିଲେ ବଡ଼
ହାନି ହୋଇଥାନ୍ତା ବୋଧେ ଆତ୍ମ ସମ୍ମାନର !
ଚିଠି ଯଦି ଦବ, ତାର ଥିବ ଦୈର୍ଘ୍ୟ, ପ୍ରସ୍ଥ
ଭଲଭାବେ । ଦେବ ତବ ସମ୍ବାଦ ସମସ୍ତ
ସବୁ ଠିକନକ କଥା ଘର ଓ ଗ୍ରାମର,
ଜାଣିବାକୁ ଗୃହେ ଜଣେ ସମଗ୍ର ଭ୍ରମର ।
ଚିଠି ଦେବ ପୁଣି । କନ୍ତୁ ଫେରୁଅଛୁ ଆମେ
କଟକ ସପ୍ତାହ ପରେ । କଟାଇବ ଗ୍ରାମେ
ସମଗ୍ର ଛୁଟୀଟି ଅବା ଆଗୁଁ ଆସିପାର
ପତ୍ରେ ଜଣାଇବ ତାହା । ଏଠାରେ ମିଠାର
ଚଗଲାମି ବଢ଼ିଅଛି ଚତୁର୍ଗୁଣ ଯାଏଁ
ବଜାରେ ବଜାରେ ବୁଲେ, ଘରେ ନାହିଁ ଥାଏ ।
ଚିଠି ଦେବ, ରହିଲି ମୁଁ ଇତି ଶ୍ରୀ କରୁଣା
କଂମଳଙ୍କ ଦୟା ତା'ଠି ନାହିଁ ହେବ ଊଣା"

ପତ୍ର ପାଇ ଆଦ୍ୟେ ହୁଏ କମଳ ସ୍ଥବର,
କିଛି ନାହିଁ ଭାବିପାରେ । ତା ପରେ ଗମ୍ଭୀର
ଚିନ୍ତାରେ ବୁଡ଼ଇ ଚିତ୍ତ । କିଏ ଏ ବାଳିକା ?
କି ଗୃହେ ସେ ? ନିଜେ ସେ ଯେ ହୃଦୟ ବେଦିକା
ତିଆରୁଛି ତାହା ପାଇଁ, କିବା ଅର୍ଥ ତାର ?
କିବା ସେ ଜାଣଇ ତାର ? ଖଣ୍ଡ ଅବା ଖାର ?

ସତେ କି ସେ ସ୍ନେହ ଗୃହେ ? କି'ବା କମଳର
ଅଛି, ହେବ ଆକର୍ଷଣ ନାରୀ ହୃଦୟର ?
ବିଶେଷେ କରୁଣା ପରି ଅତି ଲୋଭମୟୀ
ଯା କଟାକ୍ଷେ ରହିଁଅଛି ଶତ ଯୁବା ହିୟା,
ସେ କିପାଁ କମଳପରି ଦୀନ ଦରିଦ୍ରର
ସ୍ନେହ ଭିକ୍ଷା ଯିବ କରି ? ମହା ସମୁଦ୍ରର
ତରଙ୍ଗେ ମିଶିବା, ନଦୀ ସ୍ରୋତ ସ୍ୱାଭାବିକ,
ବିଲେ ଯଦି ପଶେ ସେ·ତ ଦୃଶ୍ୟ ବିଷ୍ଠିକ ।
କିନ୍ତୁ ସେ ଲେଖଇ ପତ୍ର, ସ୍ନେହ ଦାବି କରି
ବ୍ୟବହାର କରେ ଘରେ ଆପଣାର ପରି,
ମନେପଡ଼େ, ରହିଁଥାଏ ସତୃଷ୍ଣ ନୟନେ,
କମଳ ବାହାରେ ଗଲେ, ମୁକ୍ତ ବାତାୟନେ,
ମୁଖାମୁଖି ହେଲେ ବେଳେ, ଫେରି ରହିଁ ବାରେ
ସ୍ମିତ ହସି, ବନ୍ଧୁ ଭାବେ କମ୍ର ହାତ ଠାରେ ।
ମୁଁ କି ତା ପ୍ରଥମ ସ୍ନେହ ? ଅଥବା ରଙ୍ଗିଶି
ଏ ସମସ୍ତ,—ନାରୀଜନ ହୃଦେ ଥାଏ ପୂରି
ବୋଲି ଯାହା ଶୁଣାଅଛି—ଛି'ଛି ଏ କି କରେ
କରୁଣାକୁ ଦେଖେ ପୁଣି ସନ୍ଦେହ ନେତ୍ରରେ !
କ୍ଷମା କର, କ୍ଷମା କର,—କାନ୍ଦଇ ବ୍ୟାକୁଳେ
ବ୍ୟଥାର ତରଙ୍ଗ ପିଟେ ହୃଦ କୂଳେ କୂଳେ ।
ନବୀନ ଯୌବନେ ଏହି ପ୍ରଥମ ପ୍ରମାଦ
ଚିତ୍ତେ ଚିତ୍ତେ ବନ୍ଧାବନ୍ଧି, ହୃଦୟେ ବିବାଦ,
ସମଗ୍ର ଶରୀର ମନେ ଜଣକୁ ଗୃହିବା
ଅନ୍ତରର ତଳେ ତଳେ ସ୍ପର୍ଶ ତା' ଖୋଜିବା,

ତାକୁ ଯେନ କଣ୍ଟାକଟି ଆଶା ନିରାଶାର
ଲାଗିବାରୁ, ନିରନ୍ତର ପ୍ରାଣେ ହାହାକାର ।

ତେଣେ ମହା ନଗରୀର ଉତ୍ସବ କଲ୍ଲୋଳେ
ମୁଖରିତ ନିଜ ଗୃହ ପ୍ରମୋଦିତ ଗୋଳେ ।
ଆନନ୍ଦର ହସ ହସେ ସଖାସଖୀ ସନେ,
ଯୋଗନ୍ଦିଏ ପୂଜୋତ୍ସବେ ଭବନେ ଭବନେ,
ଅନ୍ତରେ ଜଳୁଛି କିନ୍ତୁ ନୂତନ ମଶାଲ
ନୀରବେ ଆହ୍ଲାଦ ତାପ, ଆଲୋକ ତାହାର
ନିଜର ତରୁଣ ବକ୍ଷେ, ଦିନ ଅତିପାତ
କରଇ କରୁଣା, ବନ୍ଧି ନବ ସ୍ୱପ୍ନପାତ;
ବହେ ବର୍ଷା-ମେଘ ଯଥା ବାରି ଓ ବିଦ୍ୟୁତ
ବୃଷ୍ଟି, ମୌନ କାନ୍ତି ତଳେ । ନୂତନ ଉଦ୍ଭୂତ
ହୃଦ କ୍ଷେତ୍ରେ ପ୍ରଣୟର ନୂତନ ଅଙ୍କୁର,
ମଞ୍ଜରିତ ହୁଏ ନିତ୍ୟ ନିଷେକେ ଅଶ୍ରୁର
ନିରୋଳ ନିଶୀଥ ଶେଷେ । ନବୀନ ବିରହ
ହେଲା ସେ ତରୁଣ ବୁକେ ଶକ୍ତିର ଆବହ
ଉଷ୍ଣ ସୂର୍ଯ୍ୟକର ସମ । ଯହିଁ ଯାହା କରେ
କରୁଣାର ତପ୍ତ ଯାଇଁ ଦୂର କମଳରେ ।
ସେ ମଧ୍ୟ ବିଜନ ଘରେ ଶୋଇଣ ଉତ୍ସନେ
ବାରମ୍ବାର କମଳର ପତ୍ର କାଢ଼ି ଆଣେ
ବକ୍ଷ ଆଚ୍ଛାଦନ ତଳୁ, ପଢ଼େ ପୁଣି ପୁଣି
ଚୁମ୍ବେ, ଆଘ୍ରାଣଇ, ସ୍ପର୍ଶେ, ଡାକେ ଗୁଣି ଗୁଣି

ଚିତ୍ତେ କମଳଦା ନାମ, ନେବୁ ସପ୍ତ ବାର ।
ଅଜାଣତେ ବହିଯାଏ ଗଣ୍ଡରେ ବାହାର ।

ପ୍ରଥମ ବରଷ କିନ୍ତୁ ଶୀଘ୍ର ହୁଏ ଶେଷ,
ନ ଚାଉଣୁଁ ପ୍ରଣୟୀଏ ଅଧିକ କେଳେଶ
ଯୁକ୍ତ ହେଲେ ପୁଣି ଆସି କଟକ ଭବନେ
ସ୍ମିତ-ମୁଖ ଦୁହେଁ ପରସ୍ପର ଦରଶନେ ।
ଦୁହେଁଯାକ ନିରନ୍ତର ବିବିକ୍ତ-ଆଶାୟୀ;
ଖୋଲିଦେବେ ଏକ ଆନ ହୃଦ, ପାଖେ ପାଇ ।
ସହଜେ ନ ପଡ଼େ ଯୋଗ । ତ୍ରୁଟି ଅଛି ବାକି,
ଅବିନାଶ ଘରେ ସଦା । କରୁଣା ବରାକି
ଜନନୀର ଚକ୍ଷୁ ତଳେ କାଟେ ଅହର୍ନିଶି
କମଳର କାଳ କଟେ ମିଠା ସଙ୍ଗେ ମିଶି ।
ସ୍ଥିରଚକ୍ଷୁ ହୁଏ ମାତ୍ର ଦିନେ ବନ୍ଧୁବାର
ସେତିକରେ ତୁଷ୍ଟ ଦୁହେଁ । ଦୁହେଁ ହୁସିଆର ।

ସପତ୍ନୀକ ଅବିନାଶ ଭୋଜ୍ୟ-ନିମନ୍ତ୍ରଣେ
ଯାଉଁ ଦିନେ ସନ୍ଧ୍ୟାକାଳେ, ଏ ପ୍ରଣୟୀ ଜନେ
ମିଳିଲା ସୁଯୋଗ ଏକ । ଗଳ୍ପ ପାଠେ ରତ
ମିଠା ରହେ ପଢ଼ା ଘରେ । ଯୁଗ୍ମ ପକ୍ଷୀ ବତ
କମଳ କରୁଣା ଗଲେ ଉପରର ଛାତେ
କମ୍ପିତ ହୃଦୟେ, କିନ୍ତୁ କ୍ଷିପ୍ର ପଦ-ପାତେ ।

ସେଦିନ ଜୋଛନା ରାତି,—ନିର୍ମେଘ ଆକାଶ
ବୃଷ୍ଟିଆଡ଼େ ଆନନ୍ଦର ନିବିଡ଼ ପ୍ରକାଶ,
ମନ୍ଦ ବହେ ସମୀରଣ, ଶୁଭ୍ର ଜ୍ୟୋତ୍ସ୍ନା ତଳେ
ଠିଆହେଲେ, ପ୍ରାଣ ଗୃହେ ଦୋସର ପାଶରେ ।
ଘୃତ ଏକ କୋଣେ ଦୁହେଁ କାନ୍ଥ ଆଶ୍ରା କରି
ହେଲେ ଠିଆ; କମଳର ବକ୍ଷଯାଏ ଥରି
ଉଠିବାର ଶବ୍ଦୁଁ, ପୁଣି ଥିବାରୁ କରୁଣା
ନିକାଞ୍ଚନେ ଏକ ପାଖେ; ମନର ଫୁରୁଣା
ଉଡ଼ିଯାଏ, ଭୟେ ଜାତ ପ୍ରଖର ନିଶ୍ୱାସ,
ଲୁପ୍ତ ନିଜଠାରୁ ହୁଏ ସକଳ ବିଶ୍ୱାସ ।
ନିର୍ଭୀକ କରୁଣା କିନ୍ତୁ । ଘୁଞ୍ଚି ଆସେ ପାଶେ
ଧରେ ହାତ କମଳର, ମଧୁ ସ୍ମିତ ହାସେ,
କହେ କଥା "ଅକାରଣ କରୁଛ କି ଶଂକା ?
ନିଶ୍ୱାସ ଛାଡୁଛ ବେଗେ, ଦିଶୁଛ ତାଟଂକା !
ମନ ବିନିମୟ ଭୟ କିସ ? ଆସ ବସ—"ବସାଇଲା ତଳେ
ନିଜେ ମଧ୍ୟ ବସେ ତାକୁ ଲାଗି ନିକଟରେ ।
ଗ୍ରେଷ୍ଠ ଗ୍ରେଷ୍ଠ ପ୍ରଶ୍ନକରେ, ଘଞ୍ଚିବାକୁ ଭୟ,
ଗାଁ ଆରେ କେମନ୍ତେ କଟୁଥିଲା ତା' ସମୟ
ଘରେ କିସ କରୁଥାଏ ବିଧବା ଭଗିନୀ ?
ମନେ କି ପକାଏ ସ୍ୱାମୀ ସେ ହତଭାଗିନୀ ?
କିଏ ତାର ଅଛି ଆଉ ଏବେ ଶାଶୁଘରେ ?
ସାନ ଭାଇ କିପରି ବା ପଢ଼େ ଇସ୍କୁଲରେ;
ଇତ୍ୟାଦି ଇତ୍ୟାଦି ପ୍ରଶ୍ନ । ନ କରି ଅପେକ୍ଷା
କମଳର ପ୍ରଶ୍ନେ, କହିଯାଏ ହେଲା ଦେଖା

କି କି ନୂଆ କଥା କଲିକତାରେ ଏଥର,
ଧରି ଶାଢ଼ିଁଲଇ ଧୀରେ ହସ୍ତ କମଳର ।
କମଳ ହୋଇଲା କ୍ରମେ ଅନେକ ଆମୃଷ୍ଟ,
ଉତ୍ତରଇ କରୁଣାର ଜିଜ୍ଞାସା ସମସ୍ତ;
ନିଜେ ବି ଓଲଟି କରେ ପ୍ରଶ୍ନ ଏକ ଏକ,
ମୁଗ୍‌ଧେ ମୁଖଛବି ତାର କରୁଛି ନିରେଖ ।

ପଚ୍ଚରେ କରୁଣା ଶେଷେ । "ଶ୍ରେଷ୍ଠ ଅଭିଳାଷ
କିବା ତବ ଜୀବନରେ ? ପଠନ-ନିକାଶ
କଲାପରେ କାହିଁ ଯିବ ? କହିବନି ମତେ ?
ଆମେ କି ସେ ଗୋପ୍ୟ ଶୁଣିବାକୁ ପାରୁ ସତେ ?
କହିବନି ଅବା,—"
ବାଧା ଦିଅଇ କମଳ
"କହିବାର କିବା ଅଛି, ଜାଣ ପୂର୍ବାପର;
ଗ୍ରାମରେ ମୋ ଇଚ୍ଛା ମୁହିଁ, ଦେଶର ସେବାରେ
ଭାଗ୍ୟବାନ ହେବି ଯଦି କିଛି ଲାଗିପାରେ ।"

"ଅତ୍ୟନ୍ତ ଉତ୍ତମ କଥା । ଦେଶ ଏହା ଚାହେ
କହଇ କରୁଣା, 'ଶୁଣି ବଡ଼ ସୁଖ ପାଏ ।"
ପୁଣି କହେ ହସି ହସି 'ମତେ ସାଥୀ କର,
ନାଗ୍ରି ବୋଲି କିଛି କ'ଣ ସେବା ଏ ଦେଶର
ନ ପାରିବୁ କରି ଆମେ ?"
ଚମକେ କମଳ
"ତମେ ହେବ ସାଥୀ ଆମ ? କୁସୁମ—କୋମଳ
ଚରଣ ଗ୍ଭଲିବ କାହୁଁ ରୁଷ ହିଡ଼ମାଳେ,
ସେ ତ ଦୂରକଥା—ପାଦ ପଡ଼ିଛି ଗାଆଁରେ ?

ଦେଖିଛ ଦେଶର ଗୃହୀ ରହନ୍ତି କପରି
କି ଖାଇ, କେମନ୍ତେ ବାସେ, ଜନ୍ମ ଜନ୍ମ ଧରି ?"
ଉତ୍ତରେ କରୁଣା "ସତ୍ୟେ ନଦେଖିଛୁ ଗାଁଆ,
କିନ୍ତୁ ମୋର ତାହା ପ୍ରତି ଚିରନ୍ତନ ମାୟା ।
ଅଯୋଧ୍ୟାର ରାଣୀ ସୀତା କାଟିଲେ ଜୀବନ
ପଥହୀନ ବନେ ବଣେ; ଆମେ କିବା ଜନ
ନ ପାରିବା କରି ଏତିକ ଦେଶ ପାଇଁ ?
ଆନନ୍ଦେ ରହିବ ତମ ଗାଆଁ ଘରେ ଯାଇ"

"ଆମଘର ! ଛି'ଛି ଛି ଛି—ନେବ ମୁଁ ସେଠାକୁ
ତମୁକୁ !" —କମଳ କହେ ହସି କରୁଣାକୁ,
"କୁଡ଼ିଆରୁ ହୀନ ସେ ଯେ ବାତାୟନ-ହୀନ
ତମର କଳ୍ପନା ନାହିଁ, ଆମେ କେଡ଼େ ଦୀନ ।"

ଉତ୍ତରଇ ସୁଚତୁରୀ ଦୁଷ୍ଟ ହସ ହସି
"ତେବେ, ତେବେ"—କମଳର ହୃଦୟ ପରଶି—
"ଏଇଠାରେ ଦିଅ ହେଲେ ଟିକେ ମତେ ଥାନ,
ସେଠିବି କି ଅରଗଳ ହେବ ଧନ, ମାନ ?"

ଧରିଲା କରୁଣା-ହସ୍ତ ବକ୍ଷେ ଗୁପିତା'ର,
କମଳ । ଡାକିଲା ଧୀରେ ନାମ କରୁଣାର ।
ଗୃରିଚକ୍ଷୁ ହେଲାକ୍ଷଣେ । କରୁଣା ଚାପଟେ,
କମଳର ବକ୍ଷେ ଆଉଜଇ ଅବଶରେ ।
ସାଉଁଟି କମଳ ଧରେ, ବକ୍ଷେ ବକ୍ଷ ଥୋଇ,
ନିବିଡ଼ରେ ଥରେ ଯାକ, ଅଶ୍ରୁ ଯାଏ ବୋହି

ଉଭୟର ନୟନରୁ, ସୁଖେ, ଅଭିମାନେ;
ନିମଜ୍ଜିଛ ପରସ୍ପରେ ଅନ୍ୟୋନ୍ୟ ଆଘ୍ରାଣେ ।

ମୁକୁଳାଇଁ ନିଜ ଦେହ ଘନ ଆଶ୍ଳେଷରୁ
କରୁଣା ଉଠଇ ଭଙ୍ଗ, କହେ "ବନ୍ଧୁ ଘରୁ
ବାବା-ମା ଫେରିବା ବେଳ ହେଲା ବୋଲି ଜାଣ
ଯାଏଁ ଗୃହ କକ୍ଷେ ମୋର, ଅଟକାନା, ଶୁଣ ।
ଭେଟିବାର ପୁଣି ଯୋଗ ଅଛି ବୋଧେ କାଲି,
କହିବାର ଅଛି ମୋର କଥା ଦୁଇ ଚାରି;
ଆସିବ ନିଶ୍ଚୟ ।" କହି, ପ୍ରଣମି ଚରଣେ
କମଳର, ହସି ନମ୍ରେ ଚଳଇ ଭବନେ
ଏକ-ଧାଇଁ ବାୟୁପରି । ବହିଳାଡ—ଚିତ୍ତ
କମଳ ବସିଥେ ଗୃହେ ସ୍ଥିତ, ଉଲ୍ଲସିତ ।

ତାପର ସନ୍ଧ୍ୟାରେ ଯେବେ ମିଳିଲେ ଉଭୟେ
ସେହି ଗୃହେ, ପ୍ରିୟ ସଙ୍ଗ—ଉଦ୍‌ବଗ୍ନ—ହୃଦୟେ,
କରୁଣା ପ୍ରଣମି ପାଦେ ପ୍ରିୟ କମଳର
ଉପହାର ଥୁଏ ତଳେ—ରୌପ୍ୟ ଶିଭଲ୍‌ଭର !
'ଏ କିସ ।' ଏ କିସ !' କହି ଚମକେ କମଳ
କରୁଣା ସସ୍ନେହେ ଧେନି କମଳର କର
ଟାଣି ଅନ୍ୟସ୍ଥାନେ, କହେ "ଆସ ମୁଁ କହିବି;
ସାବନିମ ଶିଭଲ୍‌ଭରେ ତମୁକୁ ମାରିବି !
ନିଜକୁ ମାରିବି ବରଂ, ଯଦି ମୁଁ ନପାଏ
ଯାହା ମୁଁ କରୁଛି ଆଶା ମୁଁ ତୁମ୍ଭର ପାଖେ ।"

ତାପରେ ବସାଇ ସ୍ଥାନେ ସୁସ୍ନେହେ କମଳକୁ
ଅଳଙ୍କୃତ କରି ନିଜ ମାଥେ ତା କୋଳକୁ,
କହିଲି ସେ କଥା ତାର
"ଅଟେ ମୁଁ ମେମ୍ବର
ସଙ୍ଘାସକ ଦଳେ,—ଏଥିଁ ନାହିଁ ଗୁହ୍ୟତର
କିଛି କଥା,—କହେ, ଯେଣୁ ତମଠି ବିଶ୍ୱାସ ।
ବହୁଦିନ ଧରି ପ୍ରାଣେ ଲାଗିଛି ପ୍ରୟାସ
ଜଣେ କାରେ ପ୍ରାଣ ଖୋଲି କହିବି ସକଳ
କାହିଁ ସେଇ ଜୀବନର ଏକାନ୍ତ ଦୋସର !
ଯେଦିନ କଲେଜେ ତମେ ଦେଲ ସେ ବକ୍ତୃତା
ମୁଁ ଥିଲି ସେ ସଭାସ୍ଥଳେ; ଛାଡ଼ି ଲଜ୍ଜା, କୁଣ୍ଠା
ଚିତ୍ତ ମୋ କହିଲା ମତେ 'ଏଇ ସେହି ସେହି
ଖୋଜୁ ଯାରେ, ସାଥୀ ତୋର ହେବ, ସବୁ ନେଇ'
ତାପରେ ମୁଗୁଧ ଚକ୍ଷେ ତମ ପରୋକ୍ଷରେ
ଲୁଚିରେ ମୁଁ ଦେଖୁଥାଏ । ଆସି ଆମ ଘରେ
ତମର ରହିବା ମୂଳେ ମୋହରି ପ୍ରଯତ୍ନ ।
ତମେ ଜାଣ ନାହିଁ ଗୃହେ ହୋଇଗ ଅସପତ୍ନ ।
ଉଦାର ହୃଦୟ, ପୁଣି ଚରିତ୍ର ନିର୍ମଳ,
ଫୁଟି ଉଠୁଥିବ ମୁଖେ ରୂପ ଅନ୍ତରର,
ରସେ ଭରା ଚିତ୍ତ, ପୁଣି ରୁଚି ଗରୀୟାନ,
କ୍ଷୁଦ୍ର, କ୍ଷଣିକର ଊର୍ଦ୍ଧ୍ୱେ ଥିବ ଯା ଧିଆନ,
ସତ୍ୟବାକ, ଆତ୍ମ-ପୂର୍ତ୍ତି, ନିର୍ଭୀକ, ମଧୁର,
ଦରିଦ୍ର ହେଉ ସେ ପଛେ, ହେଉ ନୀଚକୁଳ,
ଏପରି ବୟସ୍ୟ ଖୋଜୁଥିଲି ମନେ,—ଧ୍ୟାନେ
ସାଥୀ ବୋଲି ବରି ନେବି ଯାଙ୍କୁ ସସମ୍ମାନେ

ଗଢ଼ିବ ଜନନୀ ପରି ଆପଣାର କରି
ପାଥେୟ ମୋ ପଥେ ହେବ ପ୍ରଣୟ ଯାଙ୍କରି ।
ମୋ ପଥ କଠିନ ଜାଣ, ମୃତ୍ୟୁ ପଦେ ପଦେ—
ଜୀବନ ମୁଁ କାଟେ ଚିର ଆସନ୍ନ ବିପଦେ ।
ପ୍ରାଣ ପ୍ରତି ଲୋଭ ଯେହ୍ନେ ଯକ୍ଷ୍ମା ରୋଗୀଙ୍କର,
ଅନିଶ୍ଚିତ ଭବିଷ୍ୟତ କଲା ମୋ ଅନ୍ତର

କରୁଣାର ଆତ୍ମ ପରିଚୟ

ବ୍ୟାକୁଳ, ପ୍ରାଣର ସେହ୍ନ ସାଥୀ ଅନ୍ୱେଷଣେ
ମୃତ୍ୟୁ ହେବ ସୁଖକର ଯା' ନାମ ସ୍ମରଣେ ।
ତମ୍ଭୁକୁ କରିଛି ସ୍ନେହ, ଦିଶୁଥିଲ ମୋ ନାହିଁ
ତମେ କନ୍ତୁ ବନ୍ଧା ନୁହଁ ଏ ଅଧମା ପାଇଁ ।
ଗୃହୀନା ମୁଁ ତମେ ହେବ ସଭ୍ୟ ମୋର ଦଳେ,
ଥାଏ ଯଦି ତମ ସ୍ନେହ ଅନ୍ୟ ହୃଦୟରେ
ଯିବି ମୁଁ ଅନ୍ତର ହୋଇ—ଜୀବନେ, ମରଣେ
ଶାନ୍ତି ମୋ ରହିଲା କନ୍ତୁ ତୁମରି ବଦନେ ।"

"କେମନ୍ତେ ପଶିଛି ମୁହିଁ ସନ୍ତ୍ରାସକ ଦଳେ
କହୁଛି ମୁଁ ଶୁଣ ଏବେ—ଦାକ୍ଷିଣାତ୍ୟେ ଥରେ
ଯାଇଥିଲେ ବୁଲି ବାବା । ରେଲେ ଉଚ୍ଚ କ୍ଲାସେ
ଯାଉଥାନ୍ତି, ଆମେ ଥାଉଁ ଆନ କକ୍ଷେ, ପାଶେ ।
କେଉଁ ଏକ ଷ୍ଟେସନରେ, ଇଂରେଜ ହାକମ
ଆସିଲେ ଜନେକ, ସଙ୍ଗେ ସାମାନ ଅସୀମ,
ପୁଣି ଦୁଇ ସାରମେୟ ବିଶ୍ୱାସିକା-ପ୍ରଦ
ସଙ୍ଗେ ଅଛି ଭାର୍ଯ୍ୟା, ଯେହ୍ନ ପ୍ରାସ୍ବେକ ମରଦ ।

ଗାଡ଼ିରେ ଅଭାବ ସ୍ଥାନ । ପ୍ରଭୁଙ୍କ ଅଭାବ
ନଥିଲା ତ ! ଶ୍ୱେତ ପ୍ରଭୁ, ଦୁର୍ମଦ-ସ୍ୱଭାବ,
କହିଲା ବାପାଙ୍କୁ ଯାଇ—ଉଠି ଯାଇପାର,
ଅଥବା ବ୍ୟବସ୍ଥା କର ସ୍ଥାନ ବସିବାର
ତୁମ୍ଭ ସଙ୍ଗେ ଏକାସନେ ।'

କଲେ ବାବା ସ୍ୱୀର
ଦୃଢ଼ରୂପେ ପ୍ରତିବାଦ । ଉନ୍ମତ୍ତ ହୁଂକାର
କରି ଗର୍ଜେ ଶ୍ୱେତଚର୍ମୀ, ଭୟଙ୍କର ସଂସ୍କର
କରି ସାରି ଇଷ୍ଟେସନେ କର୍ମଗୃଷ୍ଟି ଜାଲ
ଜମା ହେଲେ ପ୍ଲାଟଫର୍ମେ ନିକଟ ଡବାରେ
ଆମେ ବସି ଭାବୁଥାଉଁ କିସ କି ହେଲାରେ ।
ଏକାଳେ ଦେଖିଲୁଁ ବାବାଙ୍କର ଜିନିଷାଦି
ଫିଙ୍ଗୁଛି କେ ପ୍ଲାଟ୍‌ଫର୍ମେ, ଗୃକର ଅନାଦି
ଗୋଟାଉଛି ଗୋଟି ଗୋଟି । ନିରସ୍ତ୍ର, ନିଷାଦ
ବାବାଙ୍କୁ, ଦେଇ ସେ ଗାଳି ଅସଭ୍ୟ, ଅପ୍ରିୟ
ଶ୍ୱେତାଙ୍ଗ, ଡବାରୁ ପେଲି ଦେଉଁ ବଳତ୍କାରେ
ଅନାଦି ନେଲାକ ଧରି ନିଜର ବାହାରେ,
ପହଁଚାଇ ଦେଲା ଆଣି ଆମ ନିକଟରେ,
ଆଣିଲା ଜିନିଷପତ୍ର ପଡ଼ିଥିବା ତଳେ ।
ସାହେବ ବସିଲା ସୁଖେ, ଗାଡ଼ି ଦେଲା ଛାଡ଼ି
ବାବା କହିଲେକ ସବୁ ଘଟଣା ବିସ୍ତାରି ।
ରକ୍ତ ମୋର ଟକମକ ହେଉଥାଏ ଖାଲି,
ସାହେବର ଅନ୍ତପୁଟା ପକାନ୍ତି ଓଟାରି ।
ତାର କେତେଦିନ ପରେ ଜାଲିଓ୍ୱାନାବାଗେ
ଇଂରେଜର ନୃଶଂସତା ଦେଶର ସବାଙ୍ଗେ

ସୃଜଲ ଘୃଣିତ କ୍ରୋଧ—ଜାଣ ସେ ସମସ୍ତ,
କଲା ତାହା ମୋ ଶୋଣିତେ ଆନ୍ତର ଉତ୍ତପ୍ତ ।
ପଢୁଥାଏ କାଗଜରେ ଟେରରିଷ୍ଟ୍ କଥା,
ଭାବୁଥାଏଁ କାହା ସଙ୍ଗେ ଭେଟ ମୋ ହୁଅନ୍ତା
ଶିଖାନ୍ତା ସେ ବାଟ ମତେ ଇଂରେଜ-ମାରଣେ
ପିତୃ-ଦେଶ-ଅପମାନ ଶୁଝନ୍ତ ଜୀବନେ ।
କୌଣସି କୁଟୀରେ ଆମେ ଥାଉଁ ପାଟନାରେ
ୟୁକାଲପଟସ୍ ବୃକ୍ଷ ଥାଏ ଏକ ଦ୍ୱାରେ
ସୁରଭିତ କରି ବାୟୁ; ଶୁଭ୍ରମଥା ତାର
ଉଠିଥାଏ ଗଗନଭେ, ଜ୍ୟାମିତି-ରେଖାର
ଦୃଷ୍ଟାନ୍ତ ସ୍ୱରୂପ । ଆମେ ଟୋକା ଟୋକୀ ଦଳ
ଗ୍ରୀବାଭଙ୍ଗି ରହୁଁ ତାରେ, ମଞ୍ଜି ତା ପତର
ଆଘ୍ରାଣୁ ଆନନ୍ଦଭରେ, ଫିଙ୍ଗୁ ବେଳେ ବେଳେ
ଢେଲା ପୁଣି ଦେଖିବାକୁ କାର ଅବହେଳେ
ଢେଲା ଯାଇ ଲାଗି ପାରେ କେତେ ଉଚ୍ଚେ ତାର;
ବ୍ୟର୍ଥତା ହିଁ ଦେଉଥାଏ ଆନନ୍ଦ ଅପାର ।
ଦୂର ସମ୍ପର୍କୀୟ ଏକ ମାମୁ ଥାନ୍ତି ଆସି
ଦେଖୁଥାନ୍ତି ଆମ ଖେଳା, ବଡ଼ ଅଳ୍ପ-ଭାଷୀ
କିନ୍ତୁ ଅମାୟିକ ଲୋକ; ଦିନେ ସେ ଡାକିଲେ
"ଏଣୁ ତେଣୁ କପାଁ ମାର, ଲକ୍ଷ ଶିଖ ପିଲେ ।"
ଆଣିଲେ ସେ ପୁଣି ଗ୍ଲେଟ ମୁଦ ରବରର
ମାରିଦେଲେ ଗଛଦେହେ, କହିଲେ 'ଏଥର
ମାରଢେଲା, ବାଜେ ଯେହ୍ନେ ମୁଦର ମଧ୍ୟରେ
ଏପଟେ ସେପଟେ ନୁହେଁ ।' ଗ୍ଲେଟ ଆମ ଦଳେ

କୌତୁକ ଜାଗ୍ରତ ହେଲା; ମାରଲୁ ସିମସ୍ତେ
ସବୁଠାରୁ ବେଶୀ ଲକ୍ଷ ହେଲା ମୋର ହସ୍ତେ ।

ସେଦିନ ସଂଧାରେ ମତେ ପାଇ ଏକାନ୍ତରେ
କହିଲେ, 'କରୁଣା, ଯଦି ଥାଏ ତୋ ମନରେ,
ଶିଖାଇ ଦିଅନ୍ତି ତତେ ମାରିବାର ଗୁଳି
ରିଭଲ୍‌ଭର ଅଛି ମୋର । ତୋ ହସ୍ତ-ଅଙ୍ଗୁଳି
ହୋଇ କ୍ଷମତାପନ୍ନ । ଶିଖିନେଏ ଏବେ,
କାମ ତତେ ଦେଇପାରେ ଜୀବନରେ କେବେ ।'
ସେହି ହେଲେ ଗୁରୁ ମୋର, ବାପାଙ୍କ ଜାଣତେ
ଅଣାହେଲା ରିଭଲ୍‌ଭର, ତାଙ୍କର ଅଗତେ
କେତେବାର ସୂକ୍ଷ୍ମ ଲକ୍ଷ୍ୟ ଭେଦି ରିଭଲ୍‌ଭରେ
ଫୁଟାଇଛି ମଧୁସ୍ମିତ ତାଙ୍କ ବଦନରେ ।
କିନ୍ତୁ ବାବା ଜାଣନ୍ତି ନ—କେହି ଜାଣନ୍ତି ନ
ସଂତ୍ରାସ-ଦଳରେ ମୁହିଁ, ମରଣ-ସଂଗିନୀ ।
ଜୀବନର ଶବଳିତ ଉତ୍ସବ ତଳେ
ବର୍ଷିଷିକା ଭାସିଉଠେ ମୋର ଉତ୍ସବରେ ।
ସେ ମାମୁଁ ଏଖଣି ବନ୍ଦୀ ଆଣ୍ଡାମାନ ଦ୍ୱୀପେ
ନିର୍ଜ୍ଜନ, ନିଷ୍ଠୁର 'ସେଲେ' । ତାହାଙ୍କ ସମୀପେ
କେହିହେଲେ ପିତା, ମାତା, ବାନ୍ଧବ, ସ୍ୱଜନ
ଅନୁମାନ କରିପାର କିବା ସେ କଷଣ ।
ନିଜ ଶୋଣିତରେ ମୁହିଁ କରିଛି ସ୍ୱାକ୍ଷର
ଦଳର ପ୍ରତିଜ୍ଞାପତ୍ରେ । ହୋଇବ ହାଜର

ଯଥାସ୍ଥାନେ ଆଜ୍ଞାମାନ୍ତେ। ହୋଇନ ସମୟ ।
ଇତିମଧ୍ୟେ ଖୋଜିଛି ମୁଁ ତୁମର ପ୍ରଣୟ
ଦଳର ନିୟମ ଲଙ୍ଘି, ପ୍ରାଣର ନିୟମେ—
ଆଶାକରେ ବୁଝିବେ ସେ ନାରୀର ମରମେ ।

ନିଜକୁ ସଁପିବା ଆଗୁଁ ଚରଣେ ତୁମର
ଧଳା, କଳା, ରୋଗ, ସ୍ୱାସ୍ଥ୍ୟ ମୋର ଜୀବନର
ଯୁକ୍ତ ଜଣାଇବା, ଭାବ କହିଲ ସମସ୍ତ'
କହି, କମଳର ଓଠେ ରଖିଲ ତାର ହସ୍ତ
କହେ 'ଶୁଣିଛନା ସବୁ, ମେଲ ଆଖି କାନ
ଅବା ଘୁମାଇଛ ବସି ? ଶତ୍ରୁ-ଓଷ୍ଠ-ପାନ
ନୁହେ ଏ ପ୍ରଣୟ, ଏହା ମୃତ୍ୟୁ-ପଥ ଯାତ୍ରା
ହାତ ଧରାଧରି ହୋଇ; କଣ୍ଟକିତ-ଗାଥା
ପ୍ରଣୟିନୀ ଏଥି; ରକ୍ଷଣଶୀଳ ପ୍ରଣୟୀ
ତପଃକ୍ଲିଷ୍ଟ ଶିବ ସମ, ତାପ-ଦଗ୍ଧ ମନ୍ତ୍ରୀ ।

କହ ତମେ ଖୋଲିକରି, ନକରି କୈତବ,
ସତରେ କୁହକ ମତେ ? ଭବିଷ୍ୟ ଭୈରବ
ମୋ ଲାଗି କି କରିବାକୁ ଅଛ ହେ ପ୍ରସ୍ତୁତ,
ଅଥବା କୁହ ହେ ଖାଲି ପିଇବ ଅମୃତ
ଲୋକୋତ୍ତର ରୂପସୀର ବଦାନ୍ୟ ଅଧରୁ
ଶାନ୍ତିମୟ ଗୃହ କୋଣେ, କମ୍ର ପ୍ରୀତି-ତରୁ
ବଢ଼ିଆଇ ସେବା, ସ୍ନେହେ ?'

ସୁନ୍ଦର କମଳ
ଠିଆହେଲା ଜ୍ୟୋସ୍ନାତଳେ, ଧୀରେ ଛନ୍ଦ କର

କରୁଣାର ତନୁ ଦେହେ, ଉଠାଇଲା ତାକୁ
ଜଡ଼ାଇଲା ନିଜ ଦେହେ, ରୁଚିର ଗ୍ରୀବାକୁ
ଧରି ତା'ର ପାପୁଲିରେ, ମୁଖେ ତା'ର ଚୁମ୍ବି
ସୁରଭିତ 'ଶ୍ୱାସେ ତା'ର ନିଶ୍ୱାସ ମିଶାଇ
କହେ ଭାବ-ବିହ୍ୱଳିତ, ଅଳପ ବଚନ
"ତୁମେ ମୋ ସମ୍ପ୍ରୀତି, ପରି, ବିଳାସ, ମରଣ ।"

———

# ପଞ୍ଚମ ସର୍ଗ

## ରକ୍ତପାତ

---

ମାତୃ ଚକ୍ଷୁ ଅନ୍ତର୍ଯ୍ୟାମୀ ! ମାତା ମହାମାୟା
ଲକ୍ଷ୍ୟକଲ କନ୍ୟା ମୁଖେ ନୂତନର ଛାୟା,
ଲକ୍ଷ୍ୟକଲ ହାବ ଭାବ, କଲୁ ଅନୁମାନ,
ଏକାନ୍ତରେ ଥାଉଁ ଦିନେ, କରୁଣାରେ ଆଣି
ନିଜପାଶେ, ସ୍ନେହେ କେଶେ ଅଙ୍ଗୁଳି ଚଳାଇ
କହିଲେ, "ଧନରେ, ତୁ କି ରଖିଛୁ ଲୁଚାଇ
କିଛି କଥା ମୋହଠାରୁ ? ତା'ଙ୍କ ଅନୁମାନେ ।
କହିବୁନି ମତେ ତୁହି ?"
ଫଲୁଚିତ ପ୍ରାଣେ,
ସରମାକ୍ତ ନେତ୍ର ଯୁଗ ରଖି ଧରାତଳେ
କହେ କନ୍ୟା "ସମ୍ଭବ କି ତାହା ମୋ ପକ୍ଷରେ ?
କି କଥାରେ ତୋ' ସନ୍ଦେହ, କହ ମା ଫିଟାଇ
ସବୁ ମୁଁ କହିବି ଖୋଲି ।"
"ପାରେ କି ମା ଥାଇ
ସନ୍ଦେହ ତୋ ପ୍ରତି ହୃଦେ ?"
—ଆ ଆ ମୋ ସଙ୍ଗାଳି···"
କହି ମାତା ନେଲେ ତା'ରେ କୋଳକୁ ଓଟାରି
କହିଲେ ମମତା-ବାକ୍ୟ-"ତୋ ସୁଖରେ ଧନ
ଆମର ପରମ-କାମ୍ୟ । ତୋ' ଲାଗି ଜୀବନ

ଏଘରେ ଆନନ୍ଦ-ମୟୂ; ମୋ ଧାନ କୁଟୀରେ
ତୁଇ ମୋର ରତ୍ନ-ଦୀପ । ଲୁବ୍ଧ ତୋ ଆଖିରେ
ଦେଖିବାକୁ କେବେ ଯେହ୍ନେ ମରଣ ଏପଟେ
ସେହ୍ନ ମୋ ପ୍ରାର୍ଥନା ନିତ୍ୟ । ତେଣୁ ଅକପଟେ
କହିବୁ ରେ ଧନ ଯେତେ ଯାହା ତୋ ଜଞ୍ଜାଳ
ବତାଇବି ବାଟ, ଶିଖାଇବି ପ୍ରତିକାର ।
ଯୌବନ ବିଷମ କାଳ, ଅଙ୍କିଲ ଏ ପଥ
ନାନା ଆକର୍ଷଣେ ଚିତ୍ତ ଉଦ୍‌ଭ୍ରାନ୍ତ ସତତ,
ଥରେ ପାଦ ଗଲେ ଖସି, ଚିର ନିପତନ,
କ୍ଷଣକର ସୁଖୁଁ ଜାତ ଜୀବନ-କଷଣ ।
ତତେ ଧନ······” ଆଉ କହି ନ ଦେଇ କହୁଣା,
ମାତା କଣ୍ଠେ କରି ଶ୍ଳୀଳାପିତ ବାହୁ-ଗୁଣା
ମାତା ବକ୍ଷେ ମୁଖ ଗୁଞ୍ଜି, କାନ୍ଦେ ଫୁଲି ଫୁଲି
କହେ କଥା ଅସ୍ଫୁଟିତ ଖଣ୍ଡିତ-ମାଧୁରୀ
“ମାଆଗୋ” “ମାଆଗୋ” ଡାକ । ମାତା ମହାମାୟା
ତେଜନ୍ତି ଲୋତକ, ଯାକ କମ୍ର କନ୍ୟା-କାୟା
କହନ୍ତି ଆଶ୍ୱାସ-ବାଣୀ “ନ କାନ୍ଦରେ ଧନ,
ଯାହା ତୋର ଇଚ୍ଛା ତାହା କରିବି ପୂରଣ ।”

ଏମେ କଥା ପରିସ୍ଫୁଟ ହେଉଁ ଅବଦାଣ
କରି ଛୁଟୀ ଦିନେ ଉପାସନା, ପ୍ରାତଃସ୍ନାନ;

କରୁଣା-କମଳର ସତ୍ୟବ୍ରତ ପିତାଙ୍କର ଆଶୀର୍ବାଦ ଓ ଅୟୋଜନ

ଡାକ ଦୁଇ ତତ୍‌କ୍ଷଣରେ ପାଶେ, ରଖି କର
ଦୁହିଁଙ୍କର ସ୍କନ୍ଧ ଦେଶେ, ରହିଲେ ନିଶ୍ଚଳ
କିଛି କାଳ; ଦେଇ ଦୁହେଁ ଆଶୀଷ, ମଙ୍ଗଳ
ତା ପରେ କହିଲେ, 'ଶାନ୍ତିଃ' ଡାକ ପୁନଃ ପୁନଃ—
"ପ୍ରେମ ନୁହେଁ ଦେହ-ଦେହୁଁ ଭୋଗ ଅନ୍ୱେଷଣ
ପ୍ରେମ, ଏକ ଆତ୍ମା ପ୍ରତି ଅନ୍ୟର ବନ୍ଧନ ।
ପ୍ରେମ, ପୂର୍ଣ୍ଣ ସମର୍ପଣ ଏକ ଅନ୍ୟ ପାଇଁ
ପ୍ରେମ, ଆନପାଇଁ ଦେବା ନିଜକୁ ହଜାଇ ।
ନୈରାଶ୍ୟ, କଷଣ, ଅଶ୍ରୁ ସାଥୀ ପ୍ରଣୟର
ପ୍ରେମିକେ, ପୋଛନ୍ତି ଖାଲି ଅଶ୍ରୁ ଅନ୍ୟୋନ୍ୟର ।
ସୁଖ ଦୁଃଖ ଭୋଗ, ବ୍ୟାଧି, ଥିଲା ନ ଥିଲାରେ
ସେହି ଏକ ଛଡ଼ା ଆନେ ନଚାହିଁ ଧରାରେ
ଦୁର୍ଗମ ଜୀବନ-ପଥ କାଟି ଚାଲ ଦୁହେଁ
ଧରି ହାତ ପରସ୍ପର, ଗାଇ ଦୁଇ ମୁହେଁ
ତାଙ୍କ ନାମ, କରନ୍ତି ଯେ ସୃଜନ, ବିନାଶ—
ସମସ୍ତର ପଛେ ଯେହୁ, ନିତ୍ୟ, ଅବିନାଶ ।
ଏଇ ମୋର ଆଶୀର୍ବାଦ ପ୍ରାଣର ପ୍ରାର୍ଥନା
ତବପ୍ରେମ ହେଉ ମଧୁ ତପସ୍ୟା-ସାଧନା,
ମିଳନ ଭୂମିର ହେଉ ଶୁଭ୍ର ଏଧରାର,
ମିଳନରେ କରିବ ରୋଧ ଦୁଃଖ, ଅନାଚାର ।
ଦୁହେଁ ଯୋଗ୍ୟ ଅନ୍ୟୋନ୍ୟର, ତଥାପି ବୟସ
ହୋଇନାହିଁ ପରିପକ୍ୱ, ହୃଦୟେ ସାହସ
ଭରି ଦୁହେଁ ନିଜେ ନିଜେ କର ଯୋଗ୍ୟତର,
ଆପେ ଥୋଇ ନିଜ ମଧ୍ୟେ ଜାତୁ ବିଚ୍ଛେଦର ।

ସ୍ଥିର ମୁଁ କରିଛି ଏହା, ଯିବ ଆମେରିକା
କମଳ, କୃଷିରେ କେହ୍ନେ ଅର୍ଜିବ ଜୀବିକା
ଶିଖିବ ତା' ସେହି ଦେଶେ । ପଢ଼ିବ ଡାକ୍ତରି
କରୁଣା, ପାରିବ ଯେହ୍ନେ ଜନସେବା କରି ।
ବିଦ୍ୟାର୍ଜନ ଶେଷେ ଦୁହେଁ ଯିବ ମଫସଲେ
ଜାତି ଯହିଁ ପ୍ରକୃତରେ ସେବା ଲୋଡ଼ାକରେ,
ଜାତି ଯହିଁ ବାସ କରେ ଅକପଟ ବେଶେ
ଦେଖାଇ ତା' ଦୈନ୍ୟ, ବ୍ୟାଧି, ଧର୍ମ-ନିର୍ବିଶେଷ,
କର୍ମକ୍ଷେତ୍ର ଦୁହିଁଙ୍କର ହେବ ସେହି ସ୍ଥାନେ,
ସହରର ମାୟା ନ ରହିବ ତବ ଧ୍ୟାନେ ।
ଯାଅ ଦୁହେଁ, ପୁଷ୍ପମୟ ହେଉ ତବ ପଥ
କର୍ମ ହେଉ ଶୁଭଙ୍କର, ଉଦାର ମହତ ।
ରଖ କିନ୍ତୁ ଏ ସମସ୍ତ ଅତ୍ୟନ୍ତ ଗୋପନ
ଓଲଟିବି ଯାଇ ପାରେ କେବେ ତମ ମନ ।"

ଜଣାପଡ଼ୁଁ ବିଜ୍ଞାନରେ କରୁଣାର ପା'ଶ
ଚଳିବ ସେ କଲିକତା ଡାକ୍ତରି ସକାଶ;
ବାବା-ମା କରନ୍ତି ତାର ତ୍ୱରନ୍ତ ବ୍ୟବସ୍ଥା
ବଢ଼ାଇ ପ୍ରଣୟୀଙ୍କର ଦୈନନ୍ଦିନ ବ୍ୟଥା ।
ଯିବାର ଅଳପ ପୂର୍ବୁ, ପାଇଁ ଅବକାଶ
କରୁଣା ଓଟାରି ନେଲା କମଳକୁ ପାଶ,
ସ୍ଥିତ ପରେ । ଅନ୍ଧକାର ଥିଲା ସେ ରଜନୀ
ଆକାଶ-ଝିଲ୍ଲଣେ ଧପୁ ଥିଲେ କୋଟି ମଣି ।

କୋଟି ସେ ନକ୍ଷତ୍ର ତଳେ ଦୁଇଟି ହୃଦୟ
ସରସ, ଅପରିପକ୍ୱ, ସଶଙ୍କ, ସଭୟ
ଗୃହୁଥିଲେ ପରସ୍ପରେ ହୋଇବେ ବିଲୀନ,
ଭ୍ରମିବେ ସଂସାର କ୍ଷେତ୍ରେ ଅଗଳ-ବନ୍ଧନ ।
ପାଇବେ କି ସତେ ସେହୁ ? ମିଟି ମିଟି ହସେ
ଅଯୁତ ନକ୍ଷତ୍ର ଜାଲ; ଜଳି ଜଳି ଖସେ
ଏକ ଏକ ଉଲ୍‌କା ତଳେ । ସପ୍ତର୍ଷି ମଣ୍ଡଳ
କରୁଛନ୍ତି ପ୍ରଦକ୍ଷିଣ ଚୌଦିଗେ ଧ୍ରୁବର;
ଖଣ୍ଡ ଖଣ୍ଡ ମେଘଯାଏ ନଭେ ଭାସି ଭାସି
ବେକାର ମନୁଷ୍ୟ ପରି । ତଳେ ଯାଏ କାନ୍ଦି
ଦାଣ୍ଡେ କୁକୁରୀ, ଜରଜୀର୍ଣ୍ଣ, ବିକଳ ଉଦାସ
ଭିକ୍ଷା କରି କରି ଦସ୍ୟୁ,—ଶତ ପଥଗୃହ
ଯାନ୍ତି ଘୂଳି ନିର୍ବିକାର; କେ ଶୁଣେ କା କଥା ।
କିଏ ବା ଶୁଣିବ ଦୁଇ ପ୍ରଣୟୀର ବ୍ୟଥା
ସେପରି ଏ ଧରାତଳେ ? ରେଣୁ ରବ ନାଏ
ପ୍ରତ୍ୟେକେ ସ୍ୱସ୍ଥରେ ଛୁଟିଛନ୍ତି କ୍ଷିପ୍ର ପ୍ରାଏ
ନିଜ ନିଜ ପଥ ଧରି; ଏ ପ୍ରେମୀ ଯୁଗଳ
ନ ହେବେ କି ସେହିପରି କ୍ଷିପ୍ର ପଥଚର ?
ଅନ୍ଧକାରେ ଦୁହେଁ ବସି ଘୁଚ ଏକ କଣେ
ତାରାଲୋକେ ଦେଖୁଛନ୍ତି, ଅନ୍ୟୋନ୍ୟ ଆନନେ
କରୁଣାର ଗାଢ଼ ଆଲିଙ୍ଗନେ ବାନ୍ଧି; ମୁଖ ପରସ୍ପର
ବଦାନ୍ୟ ରବି ଆଘ୍ରାଣନ୍ତି ପରସ୍ପରେ, ଓଷ୍ଠ ଉଭୟର
ପାଉଛି ମଧୁର ପୀଡ଼ା ନିବିଡ଼ ଚୁମ୍ବନେ,
ଉଭୟେ ଜପନ୍ତି ଉଭ ନାମ ମନେ ମନେ ।

କହଇ କରୁଣା "କାହେ କଥା କହୁଛ କହ;
ଅରେ ପ୍ରାଣ, ଦେଖ ଆଗେ ଘୋରଘ ବିରହ ।"
"ଯାଉଛ ତ, କି କହିବ,"—କହଇ କମଳ
"କହିବାର କିବା ଅଛି ? କହିଛି ସକଳ ।"
"ମୋର କନ୍ତୁ ଏଠା ଗୃହ ଅନିଚ୍ଛା ଯିବାକୁ
ସ୍ୱର୍ଗେ ହେଲେ; ବୁଝାଉଛି ଯେତେ ମୋ ଆତ୍ମାକୁ
ବୁଝୁନି ସେ; ପ୍ରାଣ ଗୃହେ ଥିବ ତମ ସାଥେ
ଭୁଞ୍ଜାଇବ, ସଜାଇବ ଆପଣା ବକ୍ଷତେ ।
ପାଠ ମୋର ଲୋଡ଼ା ନାହିଁ, ଥାଉ ଦେଶ ଜାତି
କୃତାର୍ଥ ମୁଁ, ଯଦି ଶୁଣେ ତୁମ୍ଭର ସୁଖ୍ୟାତି ।"
ଆଲିଙ୍ଗନୁ ଖସିଯାଇ ଉଦ୍‌ବେଗେ କମଳ
କହେ "ଏ କି ଦୁର୍ବଳତା, ନିର୍ଘୃଣା ତମର !
ପରାଧୀନ ହିନ୍ଦୁସ୍ଥାନ, ନିର୍ଯ୍ୟାତିତ ଜାତି
ଦେଶ ଲୋକେ ଭୋକେ ଖାଉଛନ୍ତି ଘାସ, ମାଟି
ସାରା ଜାତି ଭୟ-ତ୍ରସ୍ତ, ଦୁର୍ମଦ ଇଂରେଜ
ଶାସଇ ଆମକୁ କରି ନିରସ୍ତ୍ର, ନିସ୍ତେଜ,
ଏସବୁକୁ ଆଖି ବୁଜି, ଗୃହ ସୁଖମୟ
ଆପଣାର ସୁଖନୀଡ଼, ନିଶ୍ଚିନ୍ତ, ନିର୍ଭୟ ?
ଭୁଲିଗଲ ଦିନ ତବ, ପ୍ରତିଜ୍ଞା ତମର
ଧୋଇବାକୁ ପିତୃ-ଦୁଃଖ ରକ୍ତେ ଇଂରେଜର ?
ଭୁଲିଯାଅ ମାମୁ-ଗୁରୁ, ସଙ୍ଗେ ଆଣ୍ଡ୍ରାମାନେ
ଭୁଲ ଜାଲିଆନାବାଗ-ଗୁରୁ-ଅପମାନେ ?
ଭୁଲ ପୁଣି ମତେ, ମୁଁ କି ଘର, ଭାର୍ଯ୍ୟା ନେଇ
ଗୃହସ୍ଥ ହେବାକୁ ତତେ ପ୍ରେମ ଅଛି ଦେଇ ?

କ୍ଷଣିକ ଏ ଦୁର୍ବଳତା···"
"ଥାଉ, ଥାଉ ଥାଉ"
କହି ମୁଖ ବନ୍ଦ କରେ, ସୁଗୋଲ ତା ବାହୁ
କରୁଣା କମଳ·କଣ୍ଠେ ଜଡ଼ାଇ ନିବିଡ଼େ
ବକ୍ଷେ ତାକୁ ଆଉଜାଇ କହେ କାନେ ଧୀରେ
"ଯେପରି ଆଦେଶ ଦେବ କରିବି ସେପରି
ତମେ କିନ୍ତୁ ହୃଦେ ଆଜ ବଡ଼ ସର୍ବୋପରି
ଦେଶ, ଜାତି, ଧର୍ମଠାରୁ । ହୁଏତ ଶେଷରେ
ଏଇ ତଥ୍ୟ ସାର ବୋଲି ମାନିବ ମୁଖରେ ।"

* * *

କରୁଣା ଗଲାଣି ଗୃହେ । ଏକାକୀ କମଳ,
ଭୁଲି ପଉରୁଷ ତାର, ନେତ୍ରୁ ଅବିରଳ
ଢାଳିଲା ଉତପ୍ତ ବାରି କେତ୍ତୁ ଦିନ ଯାଏଁ,
ନାହିଁ ପଢ଼େ ପାଠ, ନାହିଁ ମନ-ସୁଖେ ଖାଏ ।
ତାପରେ ପାଉଁ ସେ ପଥ, କ୍ରମେ ଧରେ କାମ
ଅନ୍ତର ଜପଇ କିନ୍ତୁ କରୁଣାର ନାମ ।
ପ୍ରିୟତମ କାମ ଏବେ ଲେଖିବା ଚିଠାଉ
କଟାଇବା କାଳ ପୁଣି ଉତ୍ତରେ ଅନାଉଁ ।
ପ୍ରତି ପଦେ ବରାବର କହି କରୁଣାର
'ଲମ୍ବା ଚିଠି ଦେବ । ନୋଟେଡ୍ ମୋଠୁ ପାଇବାର
ଉତ୍ତର, ନ କର ଆଶା ।' ଆରମ୍ଭ କମଳ
କରନ୍ତି ବି ମାଗିବାର ଘରଦ୍ଧ ପତର ।

ଅଧ୍ୟାପକ-ଅବକାଶ-ଗୃହ-ଅଭ୍ୟନ୍ତରେ
ଏ ଯେଉଁ ନାଟକ ଘଟିଯାଏ ସ୍ତରେ ସ୍ତରେ
କେହି ନ ଜାଣନ୍ତି ତାହା ଘରର ବାହାରେ,—
କମଳ ସେ ଯାନ ଗୁପ୍ତ ଅଛି ସବୁଠାରେ ।
ଶୁଣିଲେ ସେ କଥା କିଏ କରିବ ପ୍ରତ୍ୟୟ ?
ଧୂଆଁରେ କି କରିପାରେ ବିଦ୍ୟୁତ ଆଶ୍ରୟ ?
ଜଳଗର୍ଭ ମେଘ ଯେହ୍ନେ ଭାସଇ ଗଗନେ
କମଳ କରଇ କର୍ମ, ପ୍ରସନ୍ନ ବଦନେ,
ନ ଜାଣନ୍ତି କେହି କେହ୍ନେ ଅନ୍ତରେ ତାହାର
ଜଳେ ଲାଭା-ଉଦ୍‌ଗାରକ ଆଗ୍ନେୟ ପାହାଡ଼ ।

× × ×

ଗଲାଣି ଅନେକ ମାସ କ୍ରମେ ଏହିପରି
ଚିଠାଉତ୍ତର ସ୍ରୋତ ଆଉ ନାହିଁ ପୂର୍ବପରି
ଯୁଗଳ ପ୍ରଣୟୀ ମଧ୍ୟେ । ଯେତେ ଅଙ୍ଗୀକାର
ଯେତେ ସର୍ବ-ସମର୍ପଣ, ଭବିଷ୍ୟ-ବିଗ୍ରହ
ଉଭୟେ କଲେଣି ଶେଷ ପତ୍ରେ ପତ୍ରେ
ମାନ, ମନାନ୍ତର ହେଲାଣି ବି ଥରେ ଥରେ ।
କମଳର ଚରିତ୍ରଙ୍କ ବିରାଟ ସହରେ
ନାନା ସଖ୍ୟ, ନାନା ଚିତ୍ତବିନୋଦନ ଫଳେ
ସେ ବିଗ୍ରହ ହୋଇପାରେ ସହଜେ ପାସୋର
ଊର୍ଣ୍ଣନାଭ-ସୂତ୍ର-ସୂକ୍ଷ୍ମ ଆଦ୍ୟ-ପ୍ରେମ ଡୋର ।
ରାତ୍ରଯାକ ବୁଣେ ଜାଲ ବୃକ୍ଷୁ ବୃକ୍ଷେ ଡେଇଁ
ଊର୍ଣ୍ଣନାଭ, ପ୍ରାତଃକାଳେ ଯାଏ ଯା ଉଭେଇ

ସାମାନ୍ୟ ଆଘାତ-ସ୍ପର୍ଶେ । ଯୌବନ ପ୍ରଣୟ
ସେହିପରି ଅନ୍ୟସ୍ପର୍ଶେ ଭଜିପାରେ ଲୟ ।'
ଏପରି ଆଶଙ୍କା କରୁଁ ପତ୍ରରେ ପ୍ରକାଶ
ଥରେ ଅଧେ, କରୁଣାର ହୁଏ କ୍ରୋଧୋଚ୍ଛ୍ୱାସ,
ହୁଏ ମାନ ଅଭିମାନ, ଭାଷା କରେ ବନ୍ଦ;
ବହୁଦିନ ଲାଗେ ପୁଣି ହେବାକୁ ଆରମ୍ଭ ।

ଏଇପରି ଶଙ୍କାମୟ ଅଭିମାନ କାଳେ
କମଳ ବସିଛି ଯେବେ ପତ୍ରର ଆଶାରେ
ହଠାତ୍ କରୁଣା ଲେଖେ "ପ୍ରିୟତମ ମମ,
କ୍ଷମିବ ମୋ ଅଭିମାନ, ପ୍ରିୟ ଭ୍ରାତା ସମ ।
କିନ୍ତୁ ଏଇ ଶେଷ ପତ୍ର, ଶତ ଶତ ଗୁଣ
ମତେ ନ ଲେଖିବ ଆଉ; ହେବ ହଇରାଣ
ବୃଥାରେ, ପଡ଼ିଲେ ଜଣା ମୋ ସଙ୍ଗେ ସମ୍ପର୍କ
ଭସ୍ମସାତ୍ କରିଦେବ ପୂର୍ବ ଶଠିତକ ।
ସ୍ୱାଧୀନ ଏଥର ତମେ ଯାହା କରିପାର
ନ କରିବ ମୋ ସଙ୍ଗରେ ସମ୍ବନ୍ଧ-ବିସ୍ତର ।
କହିବନି ଏ ପତ୍ରର କଥା ବି କାହାରେ
ପକାଅନି ବାବା ମାଙ୍କୁ ବୃଥା ଦୁଶ୍ଚିନ୍ତାରେ" ।

କି ବ୍ୟାପାର ? କଥା କିସ ? କି ଅର୍ଥ ଏହାର ?
ଶେଷ ନାହିଁ ହୁଏ ପ୍ରଶ୍ନ କମଳ-ଚିନ୍ତାର ।

ନିଜକୁ ଧିକ୍କାର କରେ, କିପାଁ ସେ ଗଢ଼ିଲା
କଳ୍ପନାର ସୌଧାବଳି, ଜାଣିକି ନ ଥିଲା
ନିଜେ ସେ ନିଜର ସୀମା ? ଆକାଶ-ସୁମନ
ତୋଳିଯାଉଁ ମିଳା ଏବେ ହୃଦୟ ଗଞ୍ଜନ !
କିପାଁ ସେ ସେଦିନ ଛାଡ଼ି ଶାନ୍ତିମୟ 'ଟେମସ୍'
ଆସିଲା ଏ ବଡ଼ ଘରେ ? ସେହିଦିନୁ କ୍ଲେଶ
ଭୋଗୁଛି ସେ ପ୍ରାଣେ ପ୍ରାଣେ, ମାୟାବିନୀ ନାରୀ
ତା ଜୀବନେ କରେ କ୍ରୀଡ଼ା କନ୍ଦୁକ ବର୍ତ୍ତୁଳ ।
ଅସହ୍ୟ ଏସବୁ ଆଜ, ହେଉ ଅବସାନ
ରଙ୍ଗମଞ୍ଚ—ଅଭିନୟ; ପତନ ଉତ୍ଥାନ
ଆନର ସଙ୍କେତ ଘେନି । ନାହିଁ ଦରକାର
ଏ ପ୍ରେମ, ଅବା, ଏ ମାନସିକ ଅତ୍ୟାଚାର ।

କିନ୍ତୁ ଭାବ ବଦଳଇ; ପତ୍ର ପୁଣି ପଢ଼େ,
ଲେଖାଅଛି 'ପ୍ରିୟତମ', କ୍ଷମା ଭିକ୍ଷା ପରେ,
ଜଣାପଡ଼େ କଉଣସି ବିପଦ ସୂଚନା,
କି ଅଛି ଏ ପତ୍ରେ ତାର ହେବାକୁ ବିମନା ?
ପୁଣି ନିଜେ ଧିକ୍କାରଇ, ପୁଣି ପଢ଼େ ପତ୍ର
ପାଗଳ ପରି ସେ ବସେ, ଉଠେ ଯତ୍ର ତତ୍ର ।
କରୁଣାର ବୀଣା ସ୍ୱର ପ୍ରାଚୀନ ଛଟାଉ
କାଢ଼େ ଜାଳିଦେବ ବୋଲି; ହାତ ଯାଏ କାହୁଁ ?
ଗୋଟି ଗୋଟି କରି ଖାଲି ପଢ଼େ ଥର ଥର
ନୟନରୁ ଗଣ୍ଡରେ ବହେ ଲୁହ ଝର ଝର ।

ପତ୍ର, ପ୍ରିୟା-ପ୍ରତିନିଧି, ତହିଁ ହୃଦ ଭାର;
କେମନ୍ତେ ସେ କରିପିବ ତାକୁ ଭସ୍ମ ସାର ?

ସପ୍ତାହକ ପରେ ଏଣେ ଖବର କାଗଜେ
ବାହାରେ ଯା, ନାହିଁ ହୁଏ ବିଶ୍ୱାସ ସହଜେ ।
ବଙ୍ଗଲାଟ କଲିକତା ବିଶ୍ୱବିଦ୍ୟାପୀଠେ
ଆସିଥିଲେ ଦଳବଳେ ପତ୍ନୀଙ୍କ ସହିତେ
କରିବାକୁ ଡିଗ୍ରୀ-ଦାନ କନଭୋକେଶନେ
ବହୁ ସଂଖ୍ୟ ଉପସ୍ଥିତ ଥିଲେ ଗଣ୍ୟ ଜନେ ।
ଉପବିଷ୍ଟ ହେଉ ହେଉ ସିନେଟ୍ ମଧ୍ୟରେ
ଗୁଳି ଚଳେ କାହିଁ ଘୋର ବିକଟ ଭଙ୍ଗିରେ;
ପଳାଇଲେ ଲୋକ ସବୁ; ମହା ଗୋଳମାଳ,
ପରେ ଆଣୁ ଶାନ୍ତ ସେଠି ଥିବା-କଟୁଆଳ,
ଜଣାଗଲା ଲାଟ୍ ନିଜେ ବିଶେଷ ଆହତ
ଶ୍ୱେତ ଅଧ୍ୟାପକ ଦୁଇ ସଙ୍ଗେ ସଙ୍ଗେ ନଷ୍ଟ ।
ରାଜନୈତିକ ବନ୍ଦହୁଏ ସଙ୍ଗେ ସଙ୍ଗେ କନଭୋକେଶନ
ହତ୍ୟାକାଣ୍ଡରେ ପୋଲିସ କରଇ ଅପରାଧୀ ଅନ୍ୱେଷଣ ।
କରୁଣାର ପ୍ରେରଣ ଭାରତର ସବୁପ୍ରାନ୍ତେ, ସମଗ୍ର ସାମ୍ରାଜ୍ୟେ
ମହା ହୁଲ ସ୍ଥୂଳ ଏହି ଲଜ୍ଜାକର କାର୍ଯ୍ୟେ,
ଅନ୍ୟ ଅଙ୍ଗୁ ବୋହୁ ରକ୍ତ, ସେ ତ ମାତ୍ର ପାଣି
ଏ କିନ୍ତୁ ଶ୍ୱେତାଙ୍ଗ ରକ୍ତ, ଅବଧ୍ୟ ଯେ ପ୍ରାଣୀ ।
ଧରଆଡ଼େ ଚାଲିଅଛି ଆରେଷ୍ଟର ଲୀଳା
କେବଳ ପୁରୁଷ ନୁହେଁ, ଅଛନ୍ତି ମହିଳା,

ତାଙ୍କ ମଧ୍ୟେ ଅଛୁ ଆମ କରୁଣା ପ୍ରଧାନ,
ଏବେ ହୁଏ କମଳର ଦ୍ୱନ୍ଦ୍ୱ ସମାଧାନ ।
ସଙ୍ଗେ ସଙ୍ଗେ କରୁଣାର ପଦେ ଦେଇ ନାଆଁ
କମଳ କାଟଇ କାଳ ଠାଣ କରି ହିସ୍ବା ।
ମୁଦ୍ୟମାନ ମହାମାୟା କନ୍ୟା ସମ୍ବାଦରେ,
ଅବିନାଶ ଯାନ୍ତି କଲକତା ତରତରେ,
ପୋଲିଶ ତଲାସେ ଘର ଅଳ୍ପ କାଳ ପରେ
ସରକାର ତାଙ୍କୁ ବାନ୍ଧି କରେ ଅବସରେ ।
କଣ୍ଠକରୁ ବସା ଉଠେ, ବ୍ୟଥିତ କମଳ
ମୁଣି ଚଳେ ମେସେ ତାର, ଚକ୍ଷୁ ଛଳ ଛଳ ।

———*———

# ଷଷ୍ଠ ସର୍ଗ

## ଦୀର୍ଘ ଦଶବର୍ଷ

---

ଡିଗ୍ରୀ ପ୍ରାପ୍ତି, ପିତାଙ୍କର ମୃତ୍ୟୁ, କମଳର
ଭାଗ୍ୟେ ଘଟେ ଏକ କାଳେ । ପୂର୍ବୁଁ ମରଣର,
ଶୁଣି କମଳର ପିତା ଡିଗ୍ରୀର ସମ୍ବାଦ,
ତେଜିଲେ ଆନନ୍ଦ ଅଶ୍ରୁ, ଦେଲେ ଆଶୀର୍ବାଦ
ପୁତ୍ରରେ । କହିଲେ ଡାକି, 'ମରେ ମୁଁ ବାବାରେ
ଶାନ୍ତରେ ଏଥର, ରଖି ଭଉଣୀ, ମାଆରେ
କନିଷ୍ଠ ଭାଇରେ ପୁଣି, ତୋହର ଯତନେ,
ତାଙ୍କ ସୁଖ, ଧର୍ମ ମାନ ରଖିଥିବୁ ମନେ ।'

କମଳ ପିତାଙ୍କର ମୃତ୍ୟୁ

ସେତେବେଳେ କରିବାକୁ ଜବାବ ସବାଲ
କାହାର ବା ଧୈର୍ଯ୍ୟ ଥାଏ ? ନେତ୍ରୁ ଅଶ୍ରୁଧାର
ବୁହାଇ କମଳ କରେ ଚରଣେ ପିତାର
ନମସ୍କାର ବାରମ୍ବାର । ମାତ୍ର କଟ୍ଠୁ କାଳ
ବଞ୍ଚି ଆଜ, ସେ ସଜ୍ଜନ ତେଜିଲେ ଏ ଧାମ
ପୂର୍ବେ ଦେଇ ହାହାକାର, ନଜରେ ବିଶ୍ରାମ ।

ଶୋକ-କ୍ଷୀଣ, ଦୈନ୍ୟ-ଜୀର୍ଣ୍ଣ, ମୁଣ୍ଡିତ ମସ୍ତକ
କମଳ ନଗରେ ଫେରେ, କଟାଇ ମାସକ
ଗୃହର ଜଞ୍ଜାଳେ, ଦୁଃଖେ । ସାଙ୍ଗ ଅଧ୍ୟୟନ,
ସାଙ୍ଗ ପ୍ରାୟ ସ୍ୱପ୍ନ-ମୟ ଆଦ୍ୟ ଯଉବନ,

ସାଙ୍ଗ ସେ ଦିନର ଯେତେ ମଧୁର କଳ୍ପନା,
ଏବେ ହେଲା ଜୀବନର ରୁକ୍ଷ ସ୍ତର ଜଣା ।
କରିବାକୁ ହେବ ଏବେ ଅର୍ଥ ଉପାର୍ଜନ,
ନ ହେଲେ କୁଟୁମ୍ବେ କବଳିବ ଅନଶନ ।

ନିଜକୁ ବା କେ ପୋଷିବ ? ସେହି ଭାଗ୍ୟବାନ
ଯାଁକ ପାଇଁ କରିଅଛି ଭାଗ୍ୟ ସମାଧାନ
ଦୈନନ୍ଦିନ ବଞ୍ଚିବାର ଯେତେକ ଜଞ୍ଜାଳ,
ନିଶ୍ଚିନ୍ତ, ସ୍ୱୟଂସ୍ଥ, ମତ୍ତ, ଯାଁକ କାରବାର ।

ବଞ୍ଚିବାକୁ ହେବ ନିଜେ, ବଞ୍ଚିବେ ସ୍ୱଜନେ
କମଳର କମଳ ଭ୍ରମଇ ନଗ୍ରେ ଚଣ୍ଟା ଅନ୍ୱେଷଣେ ।
ଜୀବିକାନ୍ୱେଷଣ ଦୁଇବର୍ଷ ଅଧ୍ୟାପକ ଅବନୀ ଘରେ
ସୁଖମୟ ବାସ ପୁଣି, କରୁଣା ସଙ୍ଗରେ
ରସାଳ ମଧୁର ସଖ୍ୟ, ଭୁଲଇ କମଳ
ଗଭୀର ନିଦ୍ରାରୁ ଉଠି ହୁଏ ଅଧା-ସୁର

ଯେସନେ ଏକ ସୁଖ-ସ୍ୱପ୍ନ, ପୁଷ୍ପ ପ୍ରସ୍ଫୁଟିତ,
ମିଶଇ ମାଟିରେ ଯେସନେ ବୃନ୍ତ-ବିଲୁଣ୍ଠିତ,
ସାନ୍ଧ୍ୟଲଗ୍ନ ନଭେ ଯେସନେ ମନ୍ଦ ବର୍ଣ୍ଣାଭ
ହୁଏ ଅନ୍ଧକାରେ ଲୀନ ରଙ୍ଗ [illegible] ଳବ ।

ଅବନାଶ, ମହାମାୟା କାହିଁ[illegible]ନ୍ତ ଯାଇ
ଜାଣେନା କେହ, ରଚି ପଦ ଦିଅ ନିଆ ନାହିଁ ।

କରୁଣାର ଦଣ୍ଡ ଦଶବର୍ଷ କାରାବାସ
ଘୋଷିତ ହୋଇଛି ଏବେ; ସାତ ଆଠ ମାସ
କଟିବଣି ଜେଲେ ତାର । ଦେଶ ତୋଳପାଡ଼
ହେଉଛି ଏଯାଏଁ, ରାଜା କରେ ପ୍ରତିକାର
ଖୋଜି ଅନ୍ଧ କନ୍ଧ, କରି ସହସ୍ର ଗ୍ରେପ୍ତାର
ନାଶ କର ନିର୍ବିଶେଷେ, ନ କର ବିଚାର ।
ଧନ୍ୟବାଦ କରୁଣାର ସତର୍କତା ପାଇଁ;
କମଳର ଅଭିମାନ୍ୟ—ଝପାଁ ନେଲା ନାହିଁ
କରୁଣା ତାହାକୁ ସାଥେ । ତାହା ପରେ ପରେ
ବାପାଙ୍କର ମୃତ୍ୟୁ, ପୁଣି ଅମୂଢ଼ ଦୁଃଖରେ
ହେବା ମହାମାୟା ଅଭିମାନୀ କନ୍ୟା-ଦଣ୍ଡେ,
ନେବା ଅବସର, ସ୍ଥାନ ତ୍ୟାଗ ସଙ୍ଗେ ସଙ୍ଗେ,
ସବୁ ମିଶି ଏହି ଦୁର୍ବିପାକ ଆକସ୍ମିକ
ମୁହ୍ୟମାନ କଲେ ତାକୁ । ସ୍ୱପ୍ନିଳ, ନିର୍ଭୀକ
କମଳ, ଗାନ୍ଧିକା ଖୋଜେ କଟକ ନଗରେ
ଦାରିଦ୍ର୍ୟ, ମଳିନ-ବେଶ, ନଗ୍ନ ପଦରେ,
ପିତୃହୀନ, ସଙ୍ଗୀହୀନ, ଭବିଷ୍ୟତ-ହୀନ,
କମଳ ଆଖିରେ ତାର ଦୁଃଖ ଦୈନନ୍ଦିନ,
ଜାତିଠାରୁ, ଦେଶଠାରୁ, ସବୁଠାରୁ ବଡ଼
ନିକଟତମର ଦାସ ସବୁବେଳେ ନର ।

ଦେଶରେ ଉଠିଛି ପୁଣି ଗାନ୍ଧି-ଝଡ଼ ବାୟୁ
ଅସହଯୋଗର ଡାକେ କ୍ଷୀଣ ଜାତି-ସ୍ନାୟୁ ।

ତ୍ୟାଗ ଅଳ୍ପ, ଉତ୍ସାହର ବନ୍ୟା କିନ୍ତୁ ବହେ
ସ୍କୁଲଛାତ୍ର ଗାଳିଦିଏ ଇଂରାଜେ ନିର୍ଭୟେ ।
ଛଳ-ବସ୍ତ୍ର ଗ୍ରାମେ ନଗ୍ରେ ହୁଏ ଅଗ୍ନ୍ୟୁତ୍ସବ
ଛାଡ଼ୁଛନ୍ତି କେହି କେହି ପଦବୀ, ବିଭବ ।

ଅସହଯୋଗର ଝଡ଼

କମଳର ଦଳେ ଏକ ଜମିଦାର ପିଲା
ଖେଳ, ଖାନା, ଏକମାତ୍ର ବୃତ୍ତି ଯାର ଥିଲା,
ବାପ ଯାର ଶଠାପୂର୍ଣ୍ଣ ପ୍ରସିଦ୍ଧ ଡେପୋଟୀ
ରାଜଭକ୍ତ, ଅଟ୍ଟାଳିର ଥିଲା ଦୁଇ କୋଠି
ଯାର ଘୃଣ୍ୟ ପୌରୁଷର; ଅର୍ଥ ଥାଉଁ ଜମା,
ପୁଅ ଯାର ହୋଇଅଛି ଫାଜିଲ, ନିଷ୍କର୍ମା,
ସେ ଆଜ ହୋଇଛି ନେତା ଖଦୀ-ପରିଧାୟୀ
ନେତୃତ୍ୱର ଅନ୍ୟ କିଛି ଗୁଣ ଖୋଜା ନାହିଁ ।
ଦଳ ଦଳ ଛାତ୍ର ଯେଉଁ ଅପକ୍ୱ, କିଶୋର,
ନ ବୁଝନ୍ତି ଅର୍ଥ କିଛି ଅସହଯୋଗର
ହୁଙ୍କାରେ ଡାକନ୍ତି ଦାଣ୍ଡେ ନୂତନ ସ୍ଲୋଗାନ
ନଭିକର ଛାଡ଼ କର ଯୁଦ୍ଧେ ଯୋଗଦାନ ।,
'ସ୍କୁଲ୍ ଛାଡ଼୍' 'କୋର୍ଟ ଛାଡ଼' 'ଛାଡ଼ ମିଲବସ୍ତ୍ର'
'ଚରଖା ହିଁ ଏକମାତ୍ର ଧର୍ମ, ଶାସ୍ତ୍ର, ଶସ୍ତ୍ର ।'

କମଳର ସମିତିରୁ ଏକେ ଏକେ ଖସି
ଗଲେଣି ଇଂରେଜ-ରାଜ ଖୁକସରେ ପଶି,
ଭୁଲିଛନ୍ତି ଦଳ, ଦେଶ, ପ୍ରତିଜ୍ଞା ପୂର୍ବର
ଖୋଜାହୁଏ ଅଙ୍କଲକ୍ଷ୍ମୀ ଏବେ ପ୍ରତ୍ୟେକର ।

ଦୁର୍ବିପାକ-ମୁହ୍ୟମାନ ଜୀବକା-ଅନ୍ୱେଷୀ
ନଜେ ସେ କ ଶକ୍ତ ପାରେ ଦଳରେ ନବେଶି ?
ମହାଦଳ କଂଗ୍ରେସର ଆବର୍ଭ ବ ଦେଶେ
ଶ୍ରେଷ୍ଠ ଦଳ ପ୍ରୟୋଜନ କ ଅଛ୍ଛ ବଶେଷେ ?
ବର୍ତ୍ତମାନ ପ୍ରଶ୍ନ—ପୂର୍ବ ସ୍ୱପ୍ନ ଅନୁଯାୟୀ
ଗାନ୍ଧି-ଆନ୍ଦୋଳନେ ଝାମ୍ପ ଦେବ ଅବା ନାହିଁ ?
ଦେଶେ ମୁକ୍ତ ଦେବା ପାଇଁ ଇଂରେଜ କବଳୁ
କରୁଣା ସଡ଼ଇ ଜେଲେ, ଯାଇ ବଳାସରୁ;
ସେହ ମୁକ୍ତ ଦେବାପାଇଁ ଗାନ୍ଧି-ଆନ୍ଦୋଳନ
ମୂର୍ତ୍ତି ହୋଇ ଆସିଅଛ୍ଛ ଯେହ୍ନେ ତା ସ୍ୱପନ,
କରୁଣା କହବ କସ, କ ବୋଲବେ ଜନେ
ଯଦ ସେ ପଶ୍ଚେଇ ରହେ ନବ-ଆନ୍ଦୋଳନେ ।
ପରଚତେ ଦେଖି ତାର ଥାଆ-ନାନା ଗତ
କହନ୍ତ 'ଚେଞ୍ଚର୍' 'ଅସ୍ଥି-ହୀନ,' 'ଛନ୍ଦୁମତ ।'
ସେ କନ୍ତୁ ବତୃର କରେ ନଭୃତେ ନର୍ଜନେ
'ମୋ ଦୁଃଖ କେମନ୍ତେ ବୁଝାଇବ ଆନ ଜନେ
ଅସହାୟ ମାତା, ଭ୍ରାତା, ବଧବା ଭଉଣୀ
ଏମାନଙ୍କୁ କାହେ ଦେବ ? ଯାଁକର କାନ୍ଦୁଣି
ନ ଶୁଣି ମୁଁ ଯିବ ଦେଶ-ମାତାର ଲୋତକ
ପୋଛ୍ଛବାକୁ—ମୋଠାରୁ କେ ବଡ଼ ପ୍ରତାରକ ?
ଡେଇଁଲେ ଲଭବ ଖ୍ୟାତ, ତାଳ ଜନତାର,
ସଭାସ୍ଥଳେ ମିଳପାରେ ଶସ୍ତା ଫୁଲମାଳ ।
ଶେଷ-ଶୁଶ୍ରୂଷାରୁ ମି୍ୟମାଣା ଜନମାର,
ଅଧିକ କ ଦେଶ, ଜାତ ? ଦେବା ଶସ୍ତା ହାର ?

କୁଟୁମ୍ବ କି ନୁହେଁ ଜାତି, ଗ୍ରାମ ନୁହେଁ ଦେଶ ?
ତ୍ୟାଗର କି ବୃତ୍ତମଧ୍ୟେ ନାହିଁ ସ୍ଥାନ ଲେଶ ?
ଖାଲି କି ଜନତା ଆଗେ ସ୍ଥାନ ପୌରୁଷର
ନୀରବ ସାଧନା ନାହିଁ ଆତ୍ମ-କର୍ତ୍ତବ୍ୟର ?

**ପାଖ ଓ ଦୂର କର୍ତ୍ତବ୍ୟ**

ନିକଟକୁ ଦୁଃଖ ଦେଇ, ଦୂର-ସୁଖ ପାଇଁ
ପର ଯାଇ ହେବ ବୋଲି, ଘର ହେବ ଯାଇ !
ଏ କେଉଁ ଅଦ୍ଭୁତ ଶାସ୍ତ୍ର ? କର୍ମର ବସ୍ତୁର
ନୋହିପାରେ ଆଡ଼ମ୍ବରେ; ଉଦ୍ଦେଶ୍ୟ ହିଁ ସାର ।
ନିକଟେ କର୍ତ୍ତବ୍ୟ ଯାହା ତାକୁ ଛାଡ଼ି ଦେଇ
କହାଁ ଦୂର କର୍ତ୍ତବ୍ୟକୁ ଯିବି ମୁଁ ଆଗେଇ ।
ଯିବାର ଯାଆନ୍ତୁ ଯିଏ; ମୋହର ସମସ୍ତ
ଦରକାର ଥିଲେ ଦିନେ ଆସିବ ନିଶ୍ଚୟ ।'
ସକଳ ବଦ୍ରୂପ ସହେ ଅଟଳ କମଳ
କରି ଖ୍ୟାତି-ପ୍ରଲୋଭନ-ତ୍ୟାଗ କଷ୍ଟକର
ଯାପିବାକୁ ସ୍ଥିର କଲା ନୀରବ ଜୀବନ
ଯେ ଯାଏଁ ନାହିଁଛି ପୋଛି ଆଶ୍ରିତ-କଷଣ ।

ନଗରେ ନ ହେଉଁ ତାର କିଛି ବନ୍ଦୋବସ୍ତ
ଚଳିଲା ସେ ମଫସଲେ, ହୋଇ କିଛି ବ୍ୟସ୍ତ ।
ହାଇସ୍କୁଲେ ଶିକ୍ଷକତା, ଦରମା ସାମାନ୍ୟ
ଚଳିଯିବ, ଥୁଏ ଘରେ ଅଳ୍ପ କିଛି ଧାନ୍ୟ ।
କମଳର ଶିକ୍ଷକତା କିଛିକାଳ କଟେ ନେହେ ପିଲାଙ୍କ ସଙ୍ଗତେ,

**ଭ୍ରମଣ**

ଖୋଜିଯାଉଁ ଗ୍ରୁଟେବର ଗ୍ରାମେ କେଉଁ ମତେ,

ପରେ ଆଣି ରଖେ ପାଶେ ସବୁ ପରିବାର
କଷ୍ଟେ ମଷ୍ଟେ, ଚଳିଯାଏ ଶ୍ରେଷ୍ଠ ତା ସଂସାର ।
ଜନନୀଙ୍କୁ କନ୍ଥ ଗ୍ରାମ ବାସ୍ତୁଭିଟା ଥାଣେ,
ସଂଗରୁ ମମତା ଜାତ ମାଟି ପ୍ରତି ପ୍ରାଣେ,
ପୁଣି ବନ୍ଧୁ ସ୍ମୃତିପୂର୍ତ୍ତି, ନିଜହାତେ ଗଢ଼ା
ଶ୍ରେଷ୍ଠ ଶ୍ରେଷ୍ଠ ନାନା ଦ୍ରବ୍ୟ, ହେଲେ ଅପଚର
ନଷ୍ଟ ହୋଇଯିବ ସିନା । ଏବେ ତ କମଳ
ଆଣିବ ଘରକୁ ବୋହୂ ରୂପ-ଝଲମଲ,
ଜନନୀଙ୍କ ଆଶା ସେହି ସ୍ୱର୍ଣ୍ଣ ପ୍ରତିମାରେ
ଥାପି ଯିବେ ଦେଖା କରି ଶ୍ରେଷ୍ଠ ସେ ସଂସାରେ ।
ସେ ସଂସାର ଛାଡ଼ିବେ କି ଜୀବ ଥାଉ ଥାଉ,
ସ୍ୱାମୀ ପରି ଛାଡ଼ିବେ ସେ ସେଠି ଶେଷ ବାୟୁ ।
କନ୍ୟା ସ୍ଥାନ ପୂର୍ବେ ରଖି ପାଶେ କମଳର
ସଙ୍ଗେ ଘେନ ଦାସୀ ଏକ ବହୁତ ଦିନର
ଚଳିଲେ ଜନମ ଗ୍ରାମେ—ପରିଚିତ ମାଟି,
ଯାହାପାଇଁ ଦିଏ ପ୍ରାଣ, ବ୍ୟକ୍ତି ଆଉ ଜାତି ।

୨୨

ବ୍ରତ ପରି ଧରିଅଛି ଯୁବକ ଅଧ୍ୟାପନା
ନାହିଁ ରଖି ଚରିତ୍ର ବନ୍ଧନମୟର ଗଣନା
କମଳ; କରଇ ବିଦ୍ୟାଦାନ ଅକାତରେ
ଶିକ୍ଷକ ସେ ସବୁବେଳେ, ଇସ୍କୁଲେ ବା ଘରେ ।
ଘରେ କରେ ଅଧ୍ୟୟନ, କରେ ପରିଶ୍ରମ
କରିବାକୁ ଜ୍ଞାନ, ଯୁବକର ହୃଦଂଗମ,

ଦେଖେ ତାଙ୍କ ଖାତାପତ୍ର ସାବଧାନତାରେ
ଦେଖାଏ ପ୍ରମାଦ ସବୁ ମୃଦୁ ତିରସ୍କାରେ,
ତାଙ୍କ ସଙ୍ଗେ ଏକ ହୁଏ, କ୍ରୀଡ଼ନେ, ବଳାପେ,
ତାଙ୍କ ଶ୍ରେଷ୍ଠ ଶ୍ରେଷ୍ଠ ଦୁଃଖେ ବେଦନା ପ୍ରକାଶେ ।
ସବୁ ସଙ୍ଗେ ଥାଏ କିନ୍ତୁ ଆପଣାର ସ୍ଥାନେ
ଯେହ୍ନେ ସେ ଉନ୍ନତ ଜୀବ ଜ୍ଞାନେ, ଚରିତ୍ରେ ।
କ୍ଷୁଦ୍ରତାର ଉର୍ଦ୍ଧ୍ୱେ । ଶୁଦ୍ଧ, କ୍ଷୀଣ ଅହଂକାର
କରେ ମଧ୍ୟ ତାକୁ ଭୟପ୍ରଦ ଜନତାର ।
ଶ୍ରେଷ୍ଠ ସେ ସ୍ଥାନରେ ଜନପ୍ରିୟ, ଗୁରୁ-ପ୍ରିୟ
କମଳ, ସ୍କୁଲରେ ହୁଏ ନାୟକ-ସ୍ଥାନୀୟ ।
ଯାହା କିଛି ନାମ ପଡ଼େ, ନ ଥିଲେ କମଳ
ଶଂକା ଯେହ୍ନେ ନ ହେବ ତା ସୁନ୍ଦର, ସଫଳ ।
ଏକବର୍ଷ ପରେ ତା'ର ବିନା ଆବେଦନେ
କମିଟି ଘଟାଏ ବୃଦ୍ଧି ସ୍ୱଳ୍ପ ତା' ବେତନେ ।
ଦୁଇବର୍ଷ ପରେ ଯେବେ ଶିକ୍ଷକ ପ୍ରଧାନ,
ଯାଆନ୍ତି ଅନ୍ୟତ୍ର, ସର୍ବେ କମଳର ନାମ
ଉଚ୍ଚାରିଲେ ଆଗ୍ରହରେ ସେହି ପଦ ପାଇଁ
କମିଟି ତା ଗ୍ରାହ୍ୟ କଲେ ଆପତ୍ତି ନ ଥାଇ ।
ଅର୍ଥର ସ୍ୱାଚ୍ଛନ୍ଦ୍ୟ ହେଲା, ସଉଖ୍ୟ ଘରର
କର୍ମେ ସ୍ୱାଧୀନତା ପୁଣି—ଆନନ୍ଦ କମଳ ।

ଉଚ୍ଚ ଜୀବ ଯେବେ ଯାଇ ବସେ ଉଚ୍ଚାସନେ
ମସ୍ତିଷ୍କ ରହେନା ସ୍ଥିର ଉପର-ପବନେ ।

କାଳେ ଚଳନ୍ତିକେ ନବ ଉଚ୍ଛନ୍ନ ତାଙ୍କର
ଭୁଲି ଯିବେ, ଏଣୁଟି ସେ ରହନ୍ତି ତତ୍ପର ।
କମଳ ରହଇ କିନ୍ତୁ ସେହି ପୂର୍ଣ୍ଣ ଜୀବ
ସମସ୍ତଙ୍କ ସେବାକାଂକ୍ଷୀ, ସଖା ଓ ସଚିବ ।
ସମସ୍ତ ଇସ୍କୁଲେ ଭାବି ନିଜ ପରିବାର,
ଚଳାଏ, ସର୍ବସ୍ୱ କରି ସ୍ନେହର ସଞ୍ଚାର,
ଅନ୍ୟାୟର ଶତ୍ରୁ କିନ୍ତୁ, ଶତ୍ରୁ ଅସତ୍ୟର
ଏଇଠି ଫୁଟଇ ତେଜ ନୂତନ ପଦର ।
ଅନ୍ୟଥା ସମ୍ପର୍କ ତାର ଚିର ସକରୁଣ
ସ୍ନେହ-ସିକ୍ତ ହୃଦୟୁଁ ହିଁ ଶ୍ରେଷ୍ଠ ତା' କାନୁନ ।

ଦିନେକ ସନ୍ଧ୍ୟାରେ ଏକ କିଶୋର ବିଦ୍ୟାର୍ଥୀ
କମଳର ଘରେ ଆସି ହୁଏ ଦୟା-ପ୍ରାର୍ଥୀ ।
ହସ୍ତେ ଦରଖାସ୍ତ ତା'ର—ହଷ୍ଟେଲ ଅଧ୍ୟକ୍ଷ
ସଦୟ ହେଡ଼୍ ମାଷ୍ଟର — କରିଛନ୍ତି ନାମଞ୍ଜୁର, କରିଣ କଟାକ୍ଷ
ଶ୍ରେଣୀରେ ତା' ନିମ୍ନ-ସ୍ଥାନେ, ପୁଣି ଅହଙ୍କାର
ବାରମ୍ବାର ହଷ୍ଟେଲରୁ; ତଡ଼ା ସେ ଅଚିର
ହେବ ଯଦି ବରମ୍ବାର ଗୃହେ ଯିବ ଘରେ,
ବାପର ସ୍ୱାର୍ଥର ନାହିଁ ତା' ଦରଖାସ୍ତରେ ।
ପଢ଼ିଲା କମଳ ସବୁ—କିଶୋରେ କହଇ
'ଯାଇ ପାରିବନି ତମେ'—କାନ୍ଦେ କଇଁ କଇଁ
ସଙ୍ଗେ ସଙ୍ଗେ ସେ କିଶୋର ଶୁଣି ତା ଉତ୍ତର ।
କମଳ କହଇ ତାକୁ "ନ ଥାଇ ବାପାର

ସ୍ୱାକ୍ଷର, କେମନ୍ତେ ଛୁଟା ହେବ ହଷ୍ଟେଲରୁ,
କାନ୍ଦୁନ୍ତ କପାଳେଁ ? କିଏ ଆସିଛନ୍ତି କ ଘରୁ ?”
କହେ ଗୁଣ କାନ୍ଦ କାନ୍ଦ, ‘କେ ଆସିନ ସାର୍’
ବଜାରେ ଭେଟିଲି ଜଣେ ଲୋକ ମୋ ଗାଆଁର
ତା ହାତେ ଖବର ଦେଇ ପଠାଇଛି ବୋଉ
“ଚତାଉ ଅମାବସ୍ୟା କାଲି, ବାଟିବ ପିଠୋଉ
କାହାପାଇଁ ? ଧନ ମୋର ଦୂରସ୍ଥେ ରହିଲା,
ଦେଖୁନ୍ଥ ତ ଘର ମୋର ଶ୍ମଶେ କି ଶୁଖିଲା ।
କହିବ ଲୁଚିଇ କରି ମୋର ଗଂଗାଧରେ
କେଉଁ ମତେ କାଲି ଆସି ପହଞ୍ଚିବ ଘରେ,
ପିଠା ଖାଇ ଯିବ ଚାଲି । ଛୋଟ ଭାଇ ତାର
‘ନନା’ ‘ନନା’ ବୋଲି ହୁଏ, ଘର’ ବାରି, ଦ୍ୱାର ।”
“ବୋଉକୁ ଦେଖିବ ସାର୍ , ଦେଖିବ ମୋ ଭାଇ
ଶୁଣିଲୁ ବେଳରୁ ମୋର ମନ ରହୁ ନାହିଁ,
ନିଶ୍ଚେ ମୁଁ ଫେରିବି କାଲି, କହୁଅଛି ସତ,
ନ ଗଲେ ମୁଁ, ବୋଉ ମୋର ହେବ ହନ୍ତସନ୍ତ ।”
କଥା ଶୁଣି କମଳର ଆର୍ଦ୍ର ହୁଏ ନେତ୍ର
କିଏ ଏଠି ଦେଖାଇବ କାନୁନର ନେତ୍ର
ପଶୁ ଛଡ଼ା ? ସେ ଅଧମ ଗୁଣେ ନ୍ୟୂନତ୍ୱ ଧରି,
ନିଜ ମାଆ ସ୍ମୃତିରେ ତା ଚିତ୍ତ ଉଠେ ଭରି ।
ଉଷୁଲ ନୟନୁଁ ବଜ୍ର ଜନନୀ ହୃଦୟ
ଶାସନରୁ ସ୍ନେହ, ଦୟା ବଢ଼ି ନିଃସଂଶୟ ।
ଫିଟାଇ ସେ କହେ “ବାବା ଦେଲି ଅନୁମତି
ଯାଅ ତୁମ୍ଭେ ।” ଗୁଣ ଚଳେ କରଣ ପ୍ରଣତି ।

କାରାଗାରୁ କାରାଗାରେ ପ୍ରଦେଶୁ ପ୍ରଦେଶେ
କରୁଣା ହୁଅଇ ଝଣା, ଶାସନ-ନିର୍ଦ୍ଦେଶେ ।
ଭୁଲିଅଛି ଦେଶ ତାଙ୍କୁ । ଅନ୍ୟ ହୁଜୁଗରେ
ମତ୍ତ ଏବେ ଦେଶ । ଉଚ୍ଚ ପ୍ରାଚୀର ପଛରେ
ଦେଶର କୁସୁମ ସମ ଯୁବକ ଯୁବତୀ
ଶତ ଶତ ଶୃଙ୍ଖଳିତ, ଦୁଃଖେ ସନ୍ତ୍ରସ୍ତ,
ପିଞ୍ଜରାର ଜୀବପରି, ନ ସ୍ମରେ କେ ତାଙ୍କୁ,
ତାଙ୍କର ଖବର ନାହିଁ ଆସେ ତାଙ୍କ ପାଖୁ ।
ଜଗତୁ-ବିଚ୍ଛିନ୍ନ ଏହି ଜୀବନ୍ମୃତ ଦଳେ
କରୁଣାର — କରୁଣା, କମ୍ରାଙ୍ଗୀ ନବବୟା ଧୀରେ ପଶେ ।
ଜଘନ୍ୟ କାରାବାସ — ରୁକ୍ଷାବସ୍ଥା, ରୁକ୍ଷକେଶା, ନିସ୍ପନ୍ଦିତ-ଗତି,
ପାପିନୀ କଏଦୀ ସଙ୍ଗେ ତାହାର ବସତି ।
ତାଙ୍କ ସଙ୍ଗେ ପେଷେ ଚକି, କୂପୁଁ କାଢ଼େ ପାଣି
ଲୌହ ପାତ୍ରେ ଅନ୍ନଭୁଞ୍ଜେ ନୋହି ଅଭିମାନୀ;
କଠିନ ପ୍ରସ୍ତରେ ଶୁଏ ରୁକ୍ଷ କମ୍ବଳରେ;
ନିମ୍ନ-ଶ୍ରେଣୀ ନାରୀ-ଗଳ୍ପ ଶୁଣେ ଅବସରେ ।
ଅନଭିଜ୍ଞ ବାଳିକାର ନ ଥିଲା ଧାରଣା
କାରାବାସ ଏପ୍ରା ବୋଲି, ନାହିଁ ଥିଲା ଜଣା
ନାରୀତ୍ୱ ଏପରି ଘୃଣ୍ୟ, ଶୂନ୍ୟ ହୋଇପାରେ,
ଜନନୀ ହିଁ ଥିଲେ ନାରୀ-ଆଦର୍ଶ ତା'ଠାରେ,
ଥିଲେ ପୁଣି ଯେତେ ସବୁ ନାୟିକା କାବ୍ୟର
ନିଜକୁ ସେ ଭାବୁଥାଏ ତାଙ୍କର ସଙ୍ଗର ।
ଏକ ସଙ୍ଗେ ରହିବାର କରିବ କଳ୍ପନା
ସେ କାହିଁ ସେ ନାରୀ ସହ—ଯାହାଙ୍କୁ ଅଜଣା

ନାହିଁ କିଛି ଘୃଣ୍ୟ ଅପରାଧ ଜଗତର,
ନୀଚ, କ୍ଷୁଦ୍ର; ଶ୍ୱାନସମ କଳହ-ତତ୍ପର ?
ଭ୍ରୂଣ-ମରା, ସ୍ୱାମୀ-ଘାତି, ବିଷ ପ୍ରଦାୟିନୀ
ଅଛନ୍ତି, ଅଛନ୍ତି ପୁଣି ବିଶେଷେ ସ୍ୱୈରିଣୀ ।
ଅଛି ଏକ ସୁଦର୍ଶନା, ହିଂସା ପରାୟଣା
ଜନ୍ମ ଯୋଗୁଁ କା'ର ପୁଟେଇ କରି ବାଟବଣା
ଲୁଚାଇ ମୋଡ଼ିଲା ବେକ, ନେଲା ଅଳଙ୍କାର
ପୋଲିସ୍ ଧରିବାଯାଏଁ ଚଳେ ନିର୍ବିକାର ।
ଶୁଣିଲେ ଏସବୁ ଆଦ୍ୟେ ଦିଏ କାନେ ହାତ
କରୁଣା, ପାଇଲେ ଯେହ୍ନେ ସାମାନ୍ୟ ଆଘାତ
ଲାଜକୁଳୀ ଲତା! ଅବୟବ ସମ୍ବରଇ,
ପ୍ରଥମେ ଏସବୁ ପ୍ରତ୍ୟୟରେ ନ ଆସଇ ।
ଦେଖେ ପୁଣି ସେମାନଙ୍କ ନାହିଁ-ଅନୁତାପ
ଉଲୁଗୁଣା ଦେଉଥାନ୍ତି ଇଏ ତା'ର ପାପ—
( "ହଇଲେ ପଇତା-ମାରି, କହିବୁ ତୁ ମତେ ?".
"ଭଲ କଲି; ତୋପରି ତ ଦାଣ୍ଡେ ନାଚି ପଟେ
ଦିନ ରାତି ନାହିଁ ଖୋଜୁଥିଲି ମୁଁ ନାଗର ?"
"ସ୍ୱୈରିଣୀ ତୁ, ତୋର ପୁଣି ଏଡ଼େକ ଗୁମର !" )
ଅହୋରାତ୍ର ଶୁଣି ଶୁଣି ଏହି ବାକ୍ୟାଳାପ
କରୁଣା କରିଲା ଆଦ୍ୟେ କେବଳ ବିଳାପ !
କେଉଁ ସ୍ତରେ ଥିଲା ସିଏ, କାହିଁ ସେ ଆସିଲା
ସଂଗହୀନା, ବିରହିଣୀ, ବୟସରେ ପିଲା ।
ଯେ ଉତ୍ସାହେ ଇଂଲଣ୍ଡରେ କରିଲା ଫାୟାର୍
ସେଦିନ କନ୍‌ଭୋକେଶନେ, ଦୃପ୍ତ ତେଜ ତାର

ରହନ୍ତା କି ସେହ୍ନପରି ? ପାଇଥିଲେ ଫାଶି;
ମୁହୂର୍ତ୍ତକେ ଭୁଲିଥାନ୍ତା ଯିନା ଦୁଃଖରାଶି,
ମରିଥାନ୍ତା ସୁଖେ ପ୍ରିୟ ନାମ କହି କହି,
ଦଶବର୍ଷ କାରାବାସ ହଏ ଚିତ୍ତ ଦହି !
କମଳ-ସମ୍ପର୍କଚ୍ଛିନ୍ନ, ଜ୍ଞାନ-ଚର୍ଚ୍ଚାହୀନ
ପାପ-ପରିବେଶେ ସ୍ଥିତ, ନିୟନ୍ତ୍ରିତ ଦିନ,
ଇତର ପ୍ରାଣୀଙ୍କ ସଖ୍ୟ, ରୁକ୍ଷ ଖାଦ୍ୟ ବାସ
ଜାଣି ସେ ନ ଥିଲା ଏସ୍ଥା ବୋଲି କାରାବାସ ।
ହେମେ କହୁ କରେ ଚିନ୍ତା—ଏଇତ ମୋ ଜାତି,
ଏଇ ପାପ ସବୁ ମୁଁ ବି କରି ପାରିଥାନ୍ତି,
ଥିଲେ ସେମାନଙ୍କ ସ୍ତରେ । ନ ଥିଲେ ଅଭାବ
କିମ୍ପା କେ କରିବ ଚୋରି ? ତାରତମ୍ୟ ଭାବ
ସମ୍ପତ୍ତିରେ ଥାଉଁ ଯିନା, ଈର୍ଷା ସମାଜରେ,
ମୂର୍ଖ ଥିଲେ ନରି ଅବା କେଉଁ ପାପେ ଡରେ ?'
ସମାଜ କି କରିଅଛି, ଅବା ସରକାର
ଏ ନରନାରୀଙ୍କ ପଶୁତ୍ୱର ପ୍ରତିକାର ?
ବିଚକ୍ଷଣା କିସ ପଶୁକର୍ମ କରିବାରେ ?
ଦଣ୍ଡ ବା ସମାଜ ଦେବ କେଉଁ ଅଧିକାରେ ?
ସମାଜର ଉଚ୍ଚସ୍ତରେ ସବୁ ଅପରାଧ
ନଗ୍ନ ବା ପ୍ରଚ୍ଛନ୍ନ ରୂପେ ଚଳୁଛି ଅବାଧ,
କିଏ ନ କହୁଛି ମିଥ୍ୟା, ଚୋରି କେ ନ କରେ
କେତେ ଜଣ ଶୁଦ୍ଧ ବିଶେ, ଯୌନ କରମରେ ?
ସବୁ ପାପ ହେଉଥିଲେ ଦଣ୍ଡିତ ସଠିକ,
ସ୍ୱାଧୀନ ମନୁଷ୍ୟଁ, ହୋନ୍ତେ କଏଦୀ ଅଧିକ ।"

ସୁନ୍ଦର, କୁଳଜ, ନବବୟସ, ଶିକ୍ଷିତ
ଦେଖି ହୁଏ ହୃଦୟରେ ମାୟା ପ୍ରବର୍ତ୍ତିତ
ତା'ପ୍ରତି ଥାଏନେକ କେଉଁ କାରି ଅଧ୍ୟକ୍ଷର,
ଦେଶୀ ସେ, ପ୍ରଚ୍ଛନ୍ନ ଘୃଣା-କାରି ଇଂରେଜର ।
ବୟସ୍କ ସେ, କନ୍ୟା ଅଛି କରୁଣାର ପରି
କରୁଣାକୁ ଦେଖିଲେ ତା' ଚିତ୍ତ ଉଠେ ଥରି ।
ଅଳ୍ପେ ଅଳ୍ପେ କରନ୍ତି ସେ ବ୍ୟବସ୍ଥା ତାହାର
ଦିଅନ୍ତି ନାରିଙ୍କ ପାଇଁ ଅଧାପନା ଭାର,
ରଖନ୍ତି ଅଲଗା କରି ।
ବିଜନ ଆଗାରେ
ବନ୍ଧୁଜନେ ସ୍ମରି ବେଳେ ବେଳେ ଅଶ୍ରୁ ଢାଳେ ।
ଆଦ୍ୟେ ଆସୁଥିଲେ ବାବା, ମାଆଙ୍କ ସଙ୍ଗତେ,
ଏବେ ଆସେ ଭାଇ, ଯିଏ ଉତ୍ତର ଭାରତେ
ଥାଇ କରେ ବାରିଷ୍ଟରି । ଶୁଣେ ତାହାଠାରୁ
ମହାମାୟା ଶଯ୍ୟାଗତା, ମରଣ-ଶଯ୍ୟାରୁ
ପଠାଇ ଥାଆନ୍ତି ମାତା ବହୁଭନ୍ନ ମିଠାଇ
ଖାଇବ ଆଦରି କନ୍ୟା, ମରୁଛି ନ ଖାଇ ।
ପଚାରି ନ ପାରି ଲାଜେ କମଳର କଥା,
ଜ୍ଞାତ ଓ ଅଜ୍ଞାତ ମିଶି ଦିଏ ତାକୁ ବ୍ୟଥା ।
ଭାବେ ବସିବରି "ଆହା, କଷଣ ତାଙ୍କର
ବେଣୀ ସିନା, ସୃଷ୍ଟି କଲି ସବୁ ମୁଁ ପାମରି !
ଜାଣିଥିଲି କଣ୍ଟକିତ ମୋର ଭବିଷ୍ୟତ
ତାଙ୍କୁ କାହିଁ କଲି ମୋର ଭାଗ୍ୟରେ ଜଡ଼ିତ ।
ନିଷ୍ପାପ, ସରଳ, ସାଧୁ, ଶୁଦ୍ଧ, ସୁକୁମାର
ଅଳ୍ପକେ କରିଲି ତାଙ୍କ ହୃଦୟ ଉଜାଡ଼ ।

ମୋଠାରେ ସଁପିଲେ ସବୁ, ମୁଁ ହେଲି ସର୍ବସ୍ୱ ।
କହୁଥାନ୍ତି 'ରଥ ମୁହିଁ, ତମେ ମୋର ଅଶ୍ୱ ।'
ଅଶ୍ୱ ତ ବନ୍ଧନ ଏବେ, ସେ କନକ-ରଥ
କେଉଁ ବନ ପଥେ ଲୋଟେ, ଛିନ୍ନ-ଭିନ୍ନ ବତ ?

କମଳଙ୍କରି ଅନୁଶୋଚନ

କିଛି ମୁଁ ଜାଣିଲି ନାହିଁ, କ ହେଲା ତାଙ୍କର
ସେହି ମୋର ପ୍ରିୟତମ, ଜୀବନ-ଦୋସର ।
ଘର୍ଷ ଦଶବର୍ଷେ ଯାଇଥିବ ଯଉବନ
ଲୋଡ଼ା ହେବ ସଖ୍ୟ ପାଇଁ ନୂଆ ଦୃଷ୍ଟି-କଣ,
ଭାବିଥିଲି ନଜ ହାତେ ଗଢ଼ିବି ସେସବୁ,
ଜୀବନର ଶ୍ରେଷ୍ଠ କାଳେ ପାଶେ ନାହିଁ ଥିବ !
ଅବା ବର ପାଉଥାନ୍ତି ଘଗିନୀ ଅପର—"
ତେଣିକ ତା କଥା ସ୍ତବ୍ଧ, ସ୍ୱର ଥର ଥର ।
ନାନା ଜେଲେ ଘେନ ଏହିପରି ଅଭିଜ୍ଞତା
କରୁଣ ହୁଅଇ କରୁଣାର ପ୍ରାଣ-କଥା ।

କମଳ ବିଶେଷ ଆଉ କିଛି ଭାବେ ନାହିଁ

ରମା— କମଳର ବିଧବା ଭଗିନୀ

ଜାଗରଣ କାଳଯାକ କର୍ମ-ବ୍ୟସ୍ତ ଥାଇ ।
ଘରେ ଆସି ପଢ଼ିଆଏ ଭଗିନୀ, ଭାଇରେ
ଲେଖେ କିଛି, ଅବା ଆଖି ପକାଏ ବହିରେ ।
ବିଧବା ଭଗିନୀ ରମା, ପ୍ରାପ୍ତ ଯଉବନା
ସୁପୁଷ୍ଟଶରୀରା, ସୁସ୍ମିତା, ଚନ୍ଦ୍ରଳବଦନା ।
ଧର୍ମବତୀ, ଶାନ୍ତିପ୍ରିୟା, ଅଳପ ଭାଷିଣୀ
କଣ୍ଠେ ଟି ମଧୁର ଭାଷା ପିକବାଣୀ ଜିଣି ।

ପ୍ରାୟ ହିଁ କମଳ ଘରେ ଗୋଷ୍ଠୀ-ଉପାସନା
ଥାଏ କରି, ରମା କରେ ସଙ୍ଗୀତ-ରଚନା
ଖୋଲି କଣ୍ଠେ । ସୁଧା ବର୍ଷି ହୁଏ ତା'ଭଜନେ
ନାସ୍ତିକର ପ୍ରାଣ ଥରଉଠେ ତା' ଶ୍ରବଣେ ।
କମଳର ଇଚ୍ଛା ଦେଇ ମାଟ୍ରିକ୍ୟୁଲେଶନ
ଶିଖି ଧାତ୍ରୀ-ବିଦ୍ୟା ହେବ ସ୍ୱାଧୀନ-ଜୀବନ ।
ସେହି ଲକ୍ଷ୍ୟ ପଢ଼ୁଥାଏ ।
                    ଭାଇ-ସହକର୍ମୀ ।
ଅରବିନ୍ଦ ନାମ ତାଙ୍କ, ଯୁବା, ଖ୍ରୀଷ୍ଟଧର୍ମୀ ।
ନୂତନ କଲେଜାଗତ, ଦେଖି ସେ ରମାରେ
ପ୍ରସ୍ତାବିଲେ କମଳଙ୍କୁ, ବିଭାହେବେ ତାରେ ।
ସ୍ୱଚ୍ଛଳ ଅବସ୍ଥା ତାଙ୍କ, ନାନା ଗୁଣବାନ,
ସଙ୍ଗୀତ-ନିପୁଣ ନିଜେ, ଶୁଣି ରମା-ଗାନ
ବିଶେଷ ଇଚ୍ଛୁକ କେହ୍ନେ ରମାକୁ ପାଇବେ
ନିପୁଣିକା କରି ତାଙ୍କୁ ସଙ୍ଗୀତେ ଗଢ଼ିବେ ।
ରମାର ଅନିଚ୍ଛା ନାହିଁ, ସ୍ୱୀକୃତ କମଳ;
କେବଳ ଅମତ ହେବ ବୃଦ୍ଧା ମାତାଙ୍କର ।
କିଏ ତାଙ୍କୁ ଦେବ ଦୁଃଖ ଏ ବୃଦ୍ଧ ବୟସେ ?
କଥାରେ କଥାହିଁ ରହେ, ବାଧା ପଡ଼େ ରସେ ।
ଇତିମଧ୍ୟେ ପାଇ ମାତା-ବେମାର ଖବର
ରମାକୁ ପଠାଏ ଗ୍ରାମେ କମଳ ଚଂଚଳ ।

ମାତା, ଜ୍ଞାତି, ବନ୍ଧୁଜନେ, ଶୁଭାକାଙ୍କ୍ଷୀ ଦଳ
ଲାଗିଛନ୍ତି କମଳର ପଛେ ବରାବର

କରିବାକୁ ପରିଣୟ । ଅଭାବ କାହାର
ନାହିଁ ଆଜ; କାହିଁକି ସେ ନ ହେଉଛି ସ୍ଥିର
ଏଥର ସଂସାରେ; ବଂଶେ ସନ୍ନ୍ୟାସୀଙ୍କ ପରି,
କିବା ତାର ଅଭିଳାଷ, ବୁଝିହେ ସ୍ଥିର କରି ।
ଉତ୍ତମ ପ୍ରସ୍ତାବ ଆସେ ଅନେକ କ୍ଷେତ୍ରରୁ
ସୁନ୍ଦରୀ ଶିକ୍ଷିତା କନ୍ୟା, ସଜ୍ଜନ ଗୃହରୁ,
କେବା ପିତାମାତାଙ୍କର କନ୍ୟା ଏକମାତ୍ର

ନିର୍ବିକାର କମଳ

ସୁବିସ୍ତୀର୍ଣ୍ଣ ଜମିଦାରୀ, ସ୍ୱର୍ଣ୍ଣମୟ ଗାତ୍ର,
କମଳ ହୋଇବ ସେ ସବୁର ଅଧିକାରୀ,—
ପ୍ରତ୍ୟାଖ୍ୟାତ କରେ ସବୁ କାହା ନ ବିଚାରି ।
ନାନା ଘଟକାଳି ହେଉଁ ଏପରି ବିଫଳ,
ସେ ପ୍ରସଙ୍ଗ କେହି ନାହିଁ ଉଠାନ୍ତି ଏଥର ।
ଜଳାବର୍ତ୍ତ କେନ୍ଦ୍ର ପରି ସବୁ କର୍ମ ତଳେ
କମଳ ନିଶ୍ଚିନ୍ତ ନିର୍ବିକାର ରହି ଚଳେ ।

ଥରେକ ଛୁଟୀରେ ଗ୍ରାମେ ରହିଛି କମଳ,
ଗ୍ରାମ ସାରା ଭୋଜି, ଭିଡ଼, ନିମନ୍ତ୍ରଣ ସକଳ,
ଘରେ ଘରେ ଆମନ୍ତ୍ରିତ ବାନ୍ଧବୀ ବାନ୍ଧବ
ଭୋଜିଭାତ, ଖେଳ କଉତୁକର ଉତ୍ସବ ।
ସଭେ ଯୋଗଦେବା ପାଇଁ ଉତ୍ସବେ କାହାର
କମଳର ସଙ୍ଗେ ଯାଇଅଛନ୍ତି ବାହାର ।
ଘରେ ଏକା, ପଢ଼ୁଛି ସେ ଖଣ୍ଡେ ଉପନ୍ୟାସ,
ବର୍ଣ୍ଣିତ ବସ୍ତୁରେ ଯହିଁ ଯୌବନ ବିଳାସ

ଉତ୍ତେଜିତ ହୋଇ ଆସେ ନିୟନ୍ତ୍ରିତ ସ୍ନାୟୁ,
ବିଚଳିତ କରେ ଶତ ସ୍ଵପ୍ନ ଆସି କାହୁଁ
ଗତ ଦିନମାନଙ୍କର, ନମଇ ନୟନ;
ଏକାଳେ କେ କରି ମଧୁ ଗନ୍ଧ ବିକୀରଣ
ଆଖି ବୁଜି ପଛ ପଟୁ କମ୍ର ଅଙ୍ଗୁଳିରେ
ପୁସ୍ତକ ଛଡ଼ାଇ ନେଲା । କମଳ ଅଚିରେ
ଦେଖେ ଖୋଲି ଅଙ୍ଗୁଳିର ମଧୁ ଆବରଣ,—
ଉଭା ଆଗେ ସରସ୍ଵତୀ ସସ୍ମିତ ବଦନ ।
ଥିଟା ଲେଖାଲେଖି ସେହୁ, ବଧୂ ଷଡ଼ୋଶିନୀ,
ପୂର୍ବର ସୁନ୍ଦରୀ, ଏବେ ମଧ୍ୟ-ଯଉବନୀ ।
ପ୍ରଗଲ୍‌ଭା ସେ, ମାତୃତ୍ଵରେ ନୁହେ ସେ ସନ୍ତୋଷ,
ରସାନ୍ଵେଷୀ, ସ୍ଵାମୀଠାରେ ଶିର ଅବଶୋଷ
ନ ପାଇ ତା । ଖୋଜେ ସହୁଁ ପାଇବାର ଆଶା,
କମଳଠି ଅଛି ତାର ପ୍ରାଚୀନ ପିପାସା ।
କହଇ ସ୍ମିତ ମାଧୁର୍ଯ୍ୟ ହସି, "ଖୋଜି ମାଉସୀଙ୍କୁ
ଆସୁ ଘରେ; କାହିଁ ନାହିଁ ଦେଖି କାହାରିକୁ,
ଖୋଜୁ ଖୋଜୁ ଦେଖିଲି ମୁଁ ପଢ଼ୁଛ ଏଠାରେ,
ବଡ଼ ଲୋକଠାରୁ କାଳେ କିଛି ମିଳିପାରେ,
ସେ ଆଶାରେ ଗଲି ପଶି । ବିଭା ହେଲ ନାହିଁ,
ଖାଇଥାନ୍ତି ଭୋଜଭାତ, କେଉଁ ନାରୀ ଧାଇଁ,
ରହିଲ ବାଡ଼ୁଅ ହୋଇ, ବୁଢ଼ା ହେଲ ଆସି
ଯୁବାକାଳ ସବୁ-ସୁଖ ଗଲା ଭାସି ଭାସି ?
କି ବହି ଏଇଟା ? ଅଛି କି ପାଠ ଏଥିରେ ?
ଦେବିନି ମୁଁ, ଯାଉଅଛି ନେଇ ମୁଁ ସାଥିରେ ।"

ପ୍ରଲୋଭନ ଓ ପଳାୟନ

ଗମନ ଉଦ୍ୟତା ହେଲା କରି ସେ ଛଳନା—
କମଳ କାକୁତି କରେ, 'ନଆନା, ନଆନା,
ଅଧା ମୁଁ ପଢ଼ିଛି ପରା,'—ଧରେ ତାର କର,
ହସ୍ତରୁ ପୁସ୍ତକ ପଶେ ବକ୍ଷ ଅଭ୍ୟନ୍ତର ।
'ନିଅ ଏଠୁ' କହେ ହସି । ବିମୁଗ୍ଧ କମଳ
କ୍ଷଣକାଳ କିଂକର୍ତ୍ତବ୍ୟ ରହଇ ନିଶ୍ଚଳ ।
କହଇ ପ୍ରଗଲ୍‌ଭା ନାରୀ—'କି ପୁରୁଷ ତମେ,
ବହିଟେ ନପାର ନେଇ, ଭାବୁଅଛ·ମନେ !
'ଆଚ୍ଛା ହଉ' କହି ସେହି ଯୁବା ନିରୁପାୟ
ଖୋଜେ ବକ୍ଷବସ୍ତ୍ରେ ବହି, କଂପେ ସାରାକାୟ
ଯାହୁସ୍ପର୍ଶେ ସୁକୋମଳ କାମିନୀ-ବକ୍ଷର ।
ବକ୍ଷୁ ଯାଇଁ ବହି ରହେ ମୁଷ୍ଟେ ତରତର ।
ପଛକୁ ବଢ଼ାଉଁ ହାତ, ସୁଚତୁରୀ ନାରୀ
ଆଲିଙ୍ଗନେ ଧେନେ ତାକୁ, ନିଶ୍ୱାସ ତା' ଭରି
ବହି ପଡ଼େ ପଛ-ଭୂମେ ତାମ୍ବୁଳ-ବାସିତ
ରଂଜିତ ଅଧର କରୁ କୌଶଳେ ସ୍ଥାପିତ
କମଳର ଓଷ୍ଠ ପରେ, ଉତ୍ତେଜନା ଭରେ
କମଳ ଚୁମ୍ବଇ ତାହା ଅତି ନିବିଡ଼ରେ ।
ବହୁକାଳ-ସୁପ୍ତ-ଇଚ୍ଛା ପାଉଁ ମୁକ୍ତି-ଦ୍ୱାର
କମଳ ଖୋଲଇ ବସ୍ତ୍ର ପ୍ରାପ୍ତନାସ୍ୱୀକାର ।
ଦେଖେ ବକ୍ଷ ମଧୁ ଶୋଭା,—ଏକାଳେ ରମଣୀ
କହେ ବ୍ୟସ୍ତେ "ଏ କି କର, ଏ ନୁହେ ରଜନୀ !
ଜଣା ନାହିଁ କିଏ କେତେବେଳେ ଆସିଯିବ,
ଆସିବି ମୁଁ ସନ୍ଧ୍ୟା ପରେ, ତମେ ନିଶ୍ଚେ ଥିବ ।"

କହ୍ବ ଚଳେ ତରତରେ, ଅସ୍ପଷ୍ଟ କମଳ
ଡାକେ ପଛୁ ଦ୍ୱାରେ ଯାଇ, "ଆସିବ ନକର" !

ରମଣୀ ତ ଗଲା ଚାଲି । ସ୍ଥିତ ଯାଦୁକର
ହେଉଁ ଅପସୃତ; ସ୍ୱେଦ-ସିକ୍ତ କଳେବର
ଠିଆ ହୋଇ, ଅନୁତାପେ ଜଳଇ କମଳ,
'କି କଲି ମୁଁ 'କି କଲି ମୁଁ' ଡାକଇ ଅନ୍ତର ।
କରୁଣା ଉଠଇ ଧାନେ, ମରଇ ମରମେ
ତା ସମ୍ମୁଖେ, ସୂଚୀ ବନ୍ଧେ ମରମେ ମରମେ ।
କି ବୋଲିବେ ମାଆ, ଭାଇ, ଜାଣିଲେ ଏକଥା,
କି ଭାବିବେ ଗ୍ରାମବୃନ୍ଦ ଭକ୍ତି-ନତ-ମଥା !
ଛୁଇଁଲି ମୁଁ ନାରୀ ଅଙ୍ଗ, ପୁଣି ପର-ନାରୀ
ସାମାନ୍ୟରେ କରୁଣାଠି ହେଲି ମିଥ୍ୟାଚାରୀ ?
ଭେଟ ହେଲେ ପଚାରିଲେ ସୁଖେ ଗତ କଥା
ମିଥ୍ୟା କହିବାଠୁ ଆଉ କାହିଁ ଅନ୍ୟ ପନ୍ଥା ?
ମନେ ହେଲା ତା'ର ଯେମନ୍ତେ କହିବ ଏ ନାରୀ
ସାରା ଗ୍ରାମେ ତା' ଭଣ୍ଡତା, ପ୍ରଚାରି ପ୍ରଚାରି ।
କି ଲଜ୍ଜାର କଥା, କେମନ୍ତେ ଚାଲିବ ସେ ଦାଣ୍ଡେ
ଇଚ୍ଛା ହେଲା ଆତ୍ମ-ହତ୍ୟା କରିବ ସେ ଗୁଣ୍ଡେ ।
କାନ୍ଦେ ଅବିରଳ, ନିଜେ ମାରଇ ଚାପୁଡ଼ା
ଚିରଇ ସେ ଉପନ୍ୟାସ କରି ପୁଡ଼ା ପୁଡ଼ା ।
ନିଜ ଦେହେ ଚାହିଁ ତପ୍ତ ବୀଭତ୍ସ ଘୃଣାରେ,
ଏଇ ଦେହ ଦେବ ପୁଣି କେମନ୍ତେ କରୁଣାରେ ?

ପୁଣି ସେ ଆସିବ ନାଶ୍ୱ, ଯିବ ଆଉ ଚଳେ,—
ନ ହେବ ତା, ହୋଇଛୁ ଯା ହେଉ ଭ୍ରମ, ଥରେ ।
ଉଠି ବସେ, ଯାଏ ଭିଷ୍ୱ ଅଙ୍ଗ ବଶୋଧନେ,
କରଇ ସାବୁନ-ସ୍ନାନ । ଅନୁତପ୍ତ ମନେ,
ସଲୋତକ ନେତ୍ରେ, ମାଗେ କ୍ଷମା କରୁଣାରେ
କାକୁତରେ ଭିକ୍ଷା କରେ ଈଶ୍ୱର କୃପାରେ ।
ବୋଉଙ୍କୁ ଖବର ଦେଇ ଚଳେ ସେହ୍ନଦନ
ପୂଷ୍ୱ, କର ପ୍ରାୟଶ୍ଚିତ୍ତ ହେବ କ୍ଲେଦ-ହୀନ ।

ଗ୍ରାମୁଁ ଫେର କର୍ମ-ସ୍ଥାନେ, ଶୁଣଇ କମଳ
ଜନୈକ ସନ୍ନ୍ୟାସୀ ଯୋଗୁଁ ନଗର ଚଂଚଳ ।
ପାଶ୍ଚାତ୍ୟ-ଶିକ୍ଷିତ, ଅନର୍ଗଳ ଇଂରାଜୀରେ
କରନ୍ତ ବକ୍ତୃତା, ଶୁଦ୍ଧ ଗୀର୍ବାଣ ବାଣୀରେ
ବୁଝାନ୍ତ ବ ବେଦାନ୍ତର, ଗୀତାର ନର୍ଯାସ
ପ୍ରତିଦନ ବହୁ ଲୋକ ଯାନ୍ତ ତାଙ୍କ ପାଶ ।
ଆସିଲେଣି ବହୁଦନୁ, ଚଳବେ ଏଥର
ଯୋଗାଉନ୍ତ ଭକ୍ତମାନେ ଖର୍ଚ୍ଚପତ୍ତର ।
ଦନେ ସନ୍ଧ୍ୟାକାଳେ, କେହ୍ନ ନ ଥିବାର ବେଳେ
ଉପସ୍ଥିତ ସର୍ବେ ଦୂରେ, ଫୁଟ୍‌ବଲ୍ ଖେଳେ—
କମଳର ପାଶେ ଆସି କହନ୍ତ ସନ୍ନ୍ୟାସୀ,
"ତୁମରେ ଖୋଜ ହିଁ ମୁହିଁ ଏଠି ଅଛୁ ଆସି ।"
ବସ୍ମିତ କମଳ କହେ ମୁଁ କପର ଜଣା !
ସନ୍ନ୍ୟାସୀ ତା' କର ଧର, ଦେଇ ସ୍ନେହେ ଟଣା,

କହନ୍ତ ସଧୀରେ କାନେ "ଦୂତ କରୁଣାର
ଏହ୍ୱ ନଅ ଚହ୍ଲ ତାର"—କରଲେ ବାହାର
ବନ୍ଧାଞ୍ଜୁ ଶ୍ରେଷ୍ଠ ପତ୍ର, ଲେଖାଅଚ୍ଛି ତହିଁ
"ଚରନ୍ତନ ମୁଁ ତୁମର, ଥାଅ ତମେ ପହିଁ।"
କରୁଣାର ହସ୍ତାକ୍ଷର—ନାହିଁ'ଟ୍ଟି ସନ୍ଦେହ,
ସ୍ପର୍ଶେ ପୁଲକତ ଚତ୍ତ, ପୁଲକତ ଦେହ ।
କହନ୍ତ ସନ୍ନ୍ୟାସୀ "ମୁହିଁ ମାମୁ-ଗୁରୁ ତାର
ଜାଣିଛ ସେ କଥା ତୁମେ, ଜେଲରୁ ବାହାର
ହେବା ମାତ୍ରେ କରଅଚ୍ଛି କରୁଣା-ସନ୍ଧାନ
ମୋ ସଙ୍ଗେ ଯେମନ୍ତେ ହେବ ସମ୍ପର୍କ-ବଧାନ ।
ସେ ଏବେ ଲହୋର ଦୁର୍ଗେ, ସ୍ୱାସ୍ଥ୍ୟ ଅଚ୍ଛି ଭଲ,
ବସବର ଭେଟୁଚ୍ଛନ୍ତ ଗୁପ୍ତେ ଆମ ଦଳ ।
**କରୁଣାର ଛଦ୍ମ ଦୂତ** ସେହ୍ୱ ସୂତ୍ରେ ଜାଣି ତାହାଠାରୁ ତମ କଥା
ଜାଣି ତା' ଗଭୀର ସୁକୁମାର-ହୃଦ-ବ୍ୟଥା,
ପତ୍ର ତାର ଧର କରୁଅଚ୍ଛି ଅନ୍ୱେଷଣ,
ଦେଲ ପତ୍ର—ଶେଷ ମୋର ସମସ୍ତ କଷଣ ।
ଗୋପନ ରଖିବ ସବୁ । ଯାଏଁ ମୁଁ ଏଥର,
ଯେ କାମ କରୁଛ ତହୁଁ ନାହିଁ ଉଚତର,
କରୁଣା ସନ୍ତୁଷ୍ଟ ହେବ ଶୁଣି ଯୁ।, ନଶ୍ଚିତ—"
କମଳ ଭକ୍ତିରେ ହୁଏ ପାଦେ ପ୍ରଣମିତ ।

ରମା ଲେଖେ ଗ୍ରାମୁଁ ଯୁ।ର କଛୁକାଳ ପରେ
"ଭାଇନା, ବୋଉର ହସ୍ତପଦ ନାହିଁ ଚଳେ ।

ବନ୍ଧବର ଶଯ୍ୟାଶାୟୀ, ବଇଦ ଗ୍ରାମର
ଚିକିତ୍ସା କରୁଛି, ମାତ୍ର ନାହିଁ ଛାଡ଼େ ଜର ।
ତମ୍ଭକୁ ଖୋଜୁଛି ଖାଲି ଦେଖିବାକୁ ଥରେ,
ଆସିଲେ, ଆଣିବ କିଛି ଫଳ-ଫଗଡରେ"
ପତ୍ର ପାଇ ସେହିଦିନ ବାହାରେ କମଳ
ସଙ୍ଗେ ଚଳେ ଅରବିନ୍ଦ ରମା ସ୍ୱାମୀ-ବର ।
ଯାଇ ଦେଖେ ଜନମାଙ୍କ ଶେଷ ଦିନାଗତ
ତା' ହେଲେହେଁ ଚିକିତ୍ସାର ଭଲ ବନ୍ଦୋବସ୍ତ
କରିବାକୁ ହେବ ନଷ୍ଟେ । ଅରବିନ୍ଦ ଜାଣେ
ଉତ୍ତମେ ହୋମିଓପାଥି, ଦେଉଁ ପାନେ ପାନେ
ବୁଦ୍ଧିର ଉନ୍ନତି ହୁଏ । ବଞ୍ଚିଯାଇ ପାରେ
ଏ ଯାଟି, ଏ ଆଶା ତାଙ୍କ ହେଉଛି ହିସ୍ତରେ ।

ଦଳେ ଲୋକ ଗଲେ ବେଡ଼ି ଦାଣ୍ଡେ ଦିନେଯାହଁ
କମଳେ । ଜିଜ୍ଞାସା କରୁଛନ୍ତି "କିଏ ଆଜ
ଅଛି ଘରେ, ଉଠାଇବ ଖ୍ରୀଷ୍ଟାନ ବାସନ ?
ବିଧବା ଭଉଣୀ ଦିଏ ତାକୁ ଦରଶନ ! ! !
ବ୍ରାହ୍ମଣ ଶାସନ ଇଏ ! ଆମ ଆଖି ତଳେ
କରଯିବ ଅନାଚ୍ଛର, ଆମ ରକତରେ

**ଅରବିନ୍ଦ** ଓ ରମା । ସହ୍ୟ ହେବ ତାହା ? ଧର୍ମ ଗଲା କହୋ ବଣେ ?
**ଉତ୍ତେଜିତ ଗ୍ରାମବାସୀ** ବିଧାତା ବଞ୍ଚାଇ କପାଁ ରଖିଛି ବ୍ରାହ୍ମଣେ ?
ପୁଣି ଶୁଣୁଅଛୁ ଆଉ ବଡ଼ ପାପକଥା
ଖ୍ରୀଷ୍ଟାନ ସେ ପୁଣି ହେବ ରମାର ଭରତା !

ବଧବା ବବାନ୍ଧ, ତାହା ମୁଣି ଖୀରସ୍ଥାନେ
ତା ପୁଣି ଦେଖିବୁ ଆମେ ନଜ ଏଇ ଗ୍ରାମେ !
ଭଉଣୀକ ଯାହା ତମେ ପଢ଼ାଇଛ ପାଠ,
ତା ଫଳେ ବୁଲୁଛି ଅଲୁଗୃରେ ବାଟଘାଟ,
ତାକୁ ପଦ ସମ୍ଭାଳବା ଦେଖୁଛ ଦୁଷ୍କର
ଦଅ ଗ୍ଳୁଡ଼ ବଡ଼ଦାଣ୍ଡେ, ପାଉ ସେ ତା' ଫଳ !"
ସବୁ ଶୁଣି ଆସୁଥିଲ ନଶ୍ଚିନ୍ତେ କମଳ
କନ୍ତୁ ଏ ବାଭତ୍ସ ଆକ୍ଷେ ଭଗ୍ନୀ-ଚରତର,
ଅସଂଯତ ହେଲ କ୍ରୋଧେ—"ଅସଭ୍ୟ କୁକୁରେ"
କହି ଗର୍ଜେ "କେଉଁ କଥା କହ କାହାକୁ ରେ,
ଜାଣି କ ରେ ନାହିଁ ପାର ? ଭଗିନୀ କ ମୋର
ଗ୍ଳୁଡ଼ିବ ମୁଁ ବଡ଼ଦାଣ୍ଡେ ? ନାହିଁ କର ଗୋଳ
ଯାଅ ଏଠୁ । ଯାହା ଠିକ୍ ତାହା ମୁଁ କରିବି,
ତମପରି କୁକୁରଙ୍କୁ ନାହିଁ ମୁଁ ଡରିବି ।"

ସୁପ୍ତ ଅରବନ୍ଦ ଅଙ୍ଗେ ଜ୍ୱଳନ୍ତ ଅଙ୍ଗାର
ପଡ଼ୁ ଯୁକ୍ତି, ଉଠି ପଡ଼ କରେ ସେ ଚତ୍କାର
ସେ ଦନ ନଶୀଥେ—"ନଆଁ ଲଗିଅଛି ଘରେ
ଉଠ ଉଠ, ହେ କମଳ । ବୁଢ଼ୀକୁ ସତ୍ୱରେ
କାଢ଼ି ଆଣ'
ସମ୍ପ୍ରସାର କହ୍ନା ଲେଲହାନ
କମଳ ଗୃହରେ ବହ୍ନି ଗ୍ରାସିଲଣି ଅଧେ, କ୍ଷିପ୍ର ଧାବମାନ
ଅଗ୍ନି-ସଂଯୋଗ ହୋଇ ଇତସ୍ତତଃ କାଢ଼ି ଆଣିଲେ ବୁଢ଼ୀକୁ

କେଉଁ ମତେ । ଉଚ୍ଚ ସ୍ୱରେ ଡାକ ପଡ଼ୋଶୀଙ୍କୁ
ଉତ୍ତର ନପାନ୍ତ କାହୁଁ, ଉଠିଲେ ସେ ଶେଷେ
ବଙ୍କତା ଦେଖାଇ ଲାଗିଗଲେ ସେ ବଶେଷେ
ଅଗ୍ନି ଯେହ୍ନେ ଦୂଇ ପଟେ ନାହିଁ ପ୍ରସରଇ,
ରୁଗ୍ଣା ବୁଢ଼ୀ କାରୁଣ୍ୟରେ ଢଳେ ଢଳପଇ ।
ନଶା ପାହୁ ଗଲା ଦେଖା ଘନ କମଳର
ନାହିଁ ବିଶ୍ୱେ ମୁଣ୍ଡ ଗୁଞ୍ଜିବାକୁ ଆଉ ଘର ।
ସହସା ଏ ବିପତ୍ତି ପାତେ କମଳ ଜନନୀ
‘ମତେ ନାହିଁ ଗ୍ରାସି କପାଁ ଚଣ୍ଡାଳ ଏ ବହ୍ନି
ମୋ ପିଲାର ସଂସାରକୁ କଲା ଛାରଖାର’
କହି ତେଜୁଥାନ୍ତି ବାରମ୍ବାର ଅଶ୍ରୁଧାର ।
**ଜନନୀର ମୃତ୍ୟୁ** ନିରବିତ ହୁଏ ସ୍ୱର ଅପରାହ୍ନ ଆଡ଼େ,
**କମଳର ଗ୍ରାମତ୍ୟାଗ** ଦେହ ତ୍ୟାଗ କରେ ବୁଢ଼ୀ ତହିଁ ପାହାନ୍ତାରେ

ସୁଖୀ ହେଉଥିଲା ଗୁଳ ଯେ ଗ୍ରାମ-ମାଟିରେ
ଯା’ର ଦୁଃଖ ସୁଖ ବିଜଡ଼ିତ ତା ସୃତିରେ,
ଯାର ଶୁଭ ପାଇଁ କରୁଥିଲା ସେ ସାଧନା
ତହୁଁ ପାଇ ଜୀବନର ନିଷ୍ଠୁର ଗଞ୍ଜଣା,
କମଳ ଛାଡ଼ିଲା ସେହି ଗ୍ରାମ ଅଶ୍ରୁନରେ
ଘେନି ମାତା-ଅସ୍ଥି, ଗ୍ରାମ-ଧୂଳି ତା’ ସାଥିରେ ।

---

# ସପ୍ତମ ସର୍ଗ

## ସତ୍ୟାଗ୍ରହ ଓ ପୁନର୍ମିଳନ

ବିସ୍ତୀର୍ଣ୍ଣ ସୈନ୍ଧବ ବେଳା; ବାଳି ବନ୍ତେ ବସି
କମଳ ଦେଖଇ କେହ୍ନେ ଦିଗ୍‌ବଳୟ ସ୍ପର୍ଶି
ପ୍ରସାରିତ ଦିଗେ ଦିଗେ ମହା ପାରାବାର,
ଲୋଟୁଛନ୍ତି ପରେ ପରେ କ୍ଷୁବ୍‌ଧ ଉର୍ମି ଜାଳ;
ଦୂରେ ଦୂରେ ଦିଗନ୍ତରେ ବାଷ୍ପୀୟ ବହିତ୍ର
ଯାଏ କାହିଁ ଆକାଶରେ ଲେଖି ଧମ-ଶଙ୍ଖ ।
ବନ୍ତୁ ବନ୍ତେ କଣ୍ଟକିତ ଗୁଡ଼ିକଂକ ଫୁଲ
ଉଡ଼ୁଥିଲେ ଆପେ ଆପେ । ବାଳି ମୃଗକୁଳ
ବୁଲୁଛନ୍ତି ଏଣେ ତେଣେ, କରି ଉଲ୍ଲଙ୍ଘନ,
ଗତିବନ୍ତ ଶଙ୍ଖ ଯେହ୍ନେ ତାଙ୍କ ଅପଦାନ ।
ଉଡ଼ୁଛନ୍ତି ସାମୁଦ୍ରିକ ପକ୍ଷୀ ଦଳେ ଦଳେ
ରଚି ଶ୍ୱେତ-କଉଁମାଳା ନୀଳାମ୍ବର ଗଳେ
ବିଜନ ସମଗ୍ର ବେଳା, ଅପରାହ୍ନ କାଳ,
ଦୂରେ ଦୂରେ ଗ୍ରାମ-ଚିହ୍ନ ନାରିକେଳ, ତାଳ
ଦିଏ ଦେଖା ଦନ୍ତୁରିତ ଶ୍ୟାମ ରେଖା ପରି,
ବରୁଣ ଗର୍ଜନେ ସାରା ବେଳ ଯାଏ ଥରି ।
କମଳ ଦେଖଇ ସବୁ, ଭାବଇ ଅନ୍ତରେ
ଯେ ଦୀକ୍ଷା ନେଇଛି ସେହି ନବୀନ ମନ୍ତ୍ରରେ,
ଯେ ମନ୍ତ୍ର କରିଛି ମୁଗ୍‌ଧ ଅଯୁତ ଅଯୁତ
ଯେ ଅଯୁତେ ଲେଖୁଛନ୍ତି କାହାଣୀ ଅଦ୍ଭୁତ ।

ଇଞ୍ଚୁଡ଼ିରେ ଲବଣ ସତ୍ୟାଗ୍ରହ ।
ସତ୍ୟାଗ୍ରହୀ କମଳ

ଭାବୁଛନ୍ତି ସେ କେବେହେଁ ଦୂର ପଶ୍ଚିମ ଭାରତେ
ପଶ୍ଚିମ-ବାରିଧି ତଟେ, ଦ୍ୱାରକା ନିକଟେ
ଜଣେ ଗୁର୍ଜ୍ଜର, କ୍ଷୁଦ୍ରକାୟ ମନୁଷ୍ୟ ଦୁର୍ବଳ
କହେ କଥା ଶାନ୍ତ, ଶୁଦ୍ଧ, ସତ୍ୟ, ଅଳ୍ପାକ୍ଷର,
କୋଟୀ କୋଟୀ ନାରୀ ନର ମୁଗ୍ଧ ସେ ବଚନେ
ସୁଖ ତେଜି ବରୁଛନ୍ତି ଦୁଃଖ, ନିର୍ଯ୍ୟାତନେ ।
ଯୁଗ ଯୁଗ-ଅବରୁଦ୍ଧ ଥିଲେ ପୁରନାରୀ
ଅନ୍ତଃକୋଟରେ ସେହି ଡାକେ ଆସନ୍ତି ବାହାରି,
ବକ୍ଷ-ପୋଷ୍ୟ ଶିଶୁ ଯେନ ଚଳନ୍ତି ସଂଗ୍ରାମେ,
ଗୀତ ଗାଇ ଛାଡ଼ୁଛନ୍ତି ପ୍ରିୟ ଗୃହେ, ଗ୍ରାମେ,
ଯିବେ ଇଂରେଜର ନିରାନନ୍ଦ କାରାଗାରେ—
ସ୍ୱାମୀ, ପୁତ୍ର, ଜ୍ଞାତି, ଜେଲେ ଯାଆନ୍ତି ଅନ୍ୟ ଆଡ଼େ ।
କିଶୋରଙ୍କ କୋମଳାଙ୍ଗେ ରାଜ କଣ୍ଟୁଆଳ
କଲେ କ୍ରୂରେ ବେତ୍ର ଅବା ଲାଠିର ପ୍ରହାର
ନିରଶ୍ରୁ ନୟନେ ଭାଷି 'ଗାନ୍ଧିଜୀଙ୍କ ଜୟ,'
ଦେଖାଇ ଦିଅନ୍ତି ଅଙ୍ଗ ପ୍ରଫୁଲ୍ଲ, ନିର୍ଭୟ ।
ଆସୁଛନ୍ତି ରାଜପୁତ୍ରେ ତେଜି ଅଟ୍ଟାଳିକା
ଆସନ୍ତି ସାଧବେ ତେଜି ପଣ୍ୟ ବଣାବକା ।
ଆସନ୍ତି କୃଷକେ ଛାଡ଼ି ପ୍ରିୟ ଶସ୍ୟ କ୍ଷେତ୍ର,
ଯିବେ ଜେଲେ ଅବା ନେବେ ଅଙ୍ଗେ କ୍ରୂର ବେତ୍ର ।
ପିଣ୍ଡୀଭୂତ କ୍ଲେଦ ପୋଛି ବହୁ ଶତାବ୍ଦୀର
ନୂତନ ଆଧ୍ୟାତ୍ମିକ ଯୁଦ୍ଧ
ବିଶୋଧିତ କରି ସ୍ପର୍ଶେ ଚଣ୍ଡାଳ-ଶରୀର,
ତା ବଚନେ ବିପ୍ରେ ତୋଳି କୋଟି ପତିତରେ
ଦେଉଛନ୍ତି ନର-ପ୍ରାପ୍ୟ ବହୁ ଯୁଗ ପରେ ।

ହିନ୍ଦୁ, ଜୈନ, ମୁସଲେମ, ବ୍ରାହ୍ମ, ଖ୍ରୀଷ୍ଟିୟାନ
ନାରୀ ନର, ଧନୀ, ଧନୀ, କ୍ଷୁଦ୍ର ଓ ମହାନ,
ସର୍ବେ ଆଜ ମନ୍ତ୍ରପ୍ରାୟ, ଫିଙ୍ଗିବେ ଶୃଙ୍ଖଳ
ହେବେ ମୁକ୍ତ, ଭୟହୀନ, ବୀର ଊର୍ଜ୍ଜସ୍ୱଳ ।
ଥିଲା ଯେଉଁ ଏକ ଜାଡ୍ୟ-ମାନସ ଊଷର
କାହିଁର ଛୁଆଁରେ କେଉଁ ମହା ଯାଦୁକର
ସହସା ଊଷରେ କଲା ରମ୍ୟ ଉପବନ
ଚଉଦିଗେ କରି ବର୍ଣ୍ଣ ଗନ୍ଧ ବିତରଣ ।
ଗାନ୍ଧି ସେହି ଯାଦୁକର, କ୍ଷୀଣାଙ୍ଗ, ଦୁର୍ବଳ
ଧରଣୀରେ ଅବତାର ସେବା ଓ ସତ୍ୟର ।
ମାନବର ସେବା ପାଇଁ ସତ୍ୟ କ୍ଷୁର ଧାରେ
ଚଳାଇ ନିଜକୁ ଲୋକ-ନେତ୍ର ଅନ୍ତରାଳେ,
ଆଜ ହିଂସା-ମିଥ୍ୟା-ମସ୍ତ ଧରା ଦ୍ୱାର ଦେଶେ
ହୋଇ ଉଭା ଧୀର, ନମ୍ର କୃଷକର ବେଶେ
ଉଦ୍‌ଭ୍ରାନ୍ତ ମାନବେ ସତ୍ୟ, ପ୍ରେମବାର୍ତ୍ତା କହେ
ସେ ଲାଗି ତାଚ୍ଛଲ୍ୟ, ଦୁଃଖ, ନିର୍ଯାତନା ସହେ ।
ତାହାର ନିର୍ଦ୍ଦେଶେ ଏବେ ନିରସ୍ତ୍ର ସମର
ଭାରତ ଚଳାଏ ବିରୁଦ୍ଧରେ ଇଂରେଜର,
କମଳ ତହିଁରେ ଏକ ସୈନିକ ସାମାନ୍ୟ,
କାଲ-ଦଳେ କରିବ ସେ ଆଇନଅମାନ୍ୟ
ଲୁଣ ମାରି ସିନ୍ଧୁ ଜଳେ । ପାଇ ଅବସର
ଆସି ବନ୍ଦେ ବସି, ହୁଏ ଭାବନା-ତତ୍ପର ।

ଅଦୂରେ ଇଁଚୁଡ଼ୀ ଗ୍ରାମ, ଉପକଣ୍ଠେ ତାର
କଂଗ୍ରେସ ଶିବର ଠିଆ,—ଧାନ କୁଟୀ ମାଳ ।
ପୂତ ଶଂଖ ନିନାଦରେ, ପୁରବାଳାଗଣ
କପାଳରେ ଦେଇ ସ୍ନେହେ ସିନ୍ଦୂର ଚନ୍ଦନ,
ପଠାନ୍ତି ନଗରୁଁ, ଗ୍ରାମୁଁ ସତ୍ୟାଗ୍ରହୀ ଦଳ,
ନିର୍ଜନ ବାଲୁକା ତେଣୁ ଉଲ୍ଲାସ ଚଞ୍ଚଳ ।
ଅନ୍ୟାୟ ଆଇନ ନାହିଁ ମାନି ଇଂରେଜର
ମାରି ଲୁଣ ପ୍ରତିଷ୍ଠିବେ ଜନତା ଦେଶର,
ନିଜ ସ୍ୱତ୍ତ୍ୱ ନିଜ ଭୂମେ, କି କରିବ କରୁ
ସମ୍ମୁଖିବେ ଯେତେ ଅତ୍ୟାଚାର ରାଜା-କରୁ ।
ଦଳିତର ଦୁଃଖ-ପଙ୍କେ ଅନ୍ୟାୟ, ଅନ୍ୟାୟୀ
ଦୁହେଁ ନେବେ ରୂପାନ୍ତର, ହୋଇ ଏ ଆଶାୟୀ
ନିରସ୍ତ୍ର ଅହିଂସ ସେନା ନବରଣୋଦ୍ୟତ,
ଦେଖିବାକୁ ପରିଣତି ଉଦ୍‌ଗ୍ରୀବ ଜଗତ ।
ଦେଶେ ଦେଶେ ଯେତେ ସବୁ ପତିତ ଦଳିତ,
ଆଧ୍ୟାତ୍ମ୍ୟ ଏ ଯୁଦ୍ଧ ତାଙ୍କ ନେତ୍ର ଉନ୍ମୀଳିତ
କରୁଛି; ଯେତେକ ଅସହାୟ ନିଃସମ୍ବଳ
ଲଢ଼ିବାକୁ ନ୍ୟାୟ ପାଇଁ ତାଙ୍କ ହୃଦେ ବଳ
ଦିଏ ଏ ନୂତନ ରଣ । ପାଖକେ ଇଂରେଜ
ବିରାଟ ସାମ୍ରାଜ୍ୟ ତା'ର, ଅମିତ ତା' ତେଜ
କେଉଁ ମାରଣାସ୍ତ୍ର ନାହିଁ ତା'ର ଅସ୍ତ୍ରାଗାରେ ?
ସଜ୍ଜିତ ବାହିନୀ ତା'ର ଦୁର୍ଦ୍ଧର୍ଷ ଧରାରେ ।

ଆଉ ପାଖେ, କ୍ଷୀଣ ନଗ୍ନ ଗାନ୍ଧି ଏକେ ଠିଆ
ଶସ୍ତ୍ରହୀନ, ନଗ୍ନ-ପଦ, ଅନାବୃତ ହିୟା
ଭାରତର ଦୈନ୍ୟ-କ୍ଲିଷ୍ଟ ଲକ୍ଷ ନରନାରୀ,
ମରିବାକୁ ପ୍ରସ୍ତୁତ ଯେ, ନାହିଁ କାରେ ମାରି ।
ଅଦ୍ଭୁତ ଏ ରଣୋଦ୍ୟମ !—ହିଂସା ଜର୍ଜରିତ,
ବିଜ୍ଞାନ-ପ୍ରମତ୍ତ, ପ୍ରବଞ୍ଚନା-କଣ୍ଟକିତ
ବିଶ୍ୱ ଜାତିସଂଘ ଆଗେ ଏ ନବ ସମର
ଖୋଲେ ସୃଷ୍ଟି ସଭ୍ୟତାର ନବ ଅଧ୍ୟାୟର ।

ଭାବୁଁ ଭାବୁଁ ହୁଏ କ୍ରମେ ସନ୍ଧ୍ୟା ସମାଗତ,
କମଳ ଟିକିରେ ଫେରେ । କରିଛି ସମସ୍ତ
ସମାପ୍ତ କର୍ତ୍ତବ୍ୟ ତାର । ଅରବିନ୍ଦ, ରମା
ବିବାହିତ ହୋଇ ଚାଲି ଯାଇଛନ୍ତି ବର୍ମା
ଜୀବିକାର ସୁବ୍ୟବସ୍ଥା ପାଇ ସେହିଠାରେ ।
ଯାନ ଭାଇ ପଡ଼ିଲାନ, ଅଛି ହରିଦ୍ୱାରେ
ସାଧନ ଭଜନ କରେ । ମୁକ୍ତ ଦାୟିତ୍ୱରୁ,
କମଳ ସମ୍ପ୍ରତି,—
ଯେସନ୍ତେ ବେଡ଼ାହୀନ ତରୁ,
କ୍ଷମ, ସହିବାକୁ ଅଙ୍ଗେ ଦାଉ ପ୍ରକୃତିର,
ଇଚ୍ଛୁକ, ଶୁଝିବ ଋଣ ଧାତ୍ରୀ ପୃଥିବୀର ।
ନିକଟ କର୍ତ୍ତବ୍ୟ ସାରି, ଦୂର କର୍ତ୍ତବ୍ୟରେ
ଆଖି ଦେଉଁ, ଦେଖାଗଲା ଭାରତବର୍ଷରେ

ଗାନ୍ଧି-ପ୍ରଣୋଦିତ ନବ ରଣ ଉନ୍ମାଦନା,
ରାଷ୍ଟ୍ର କର୍ମେ ଆଧ୍ୟାତ୍ମିକ ତପସ୍ୟା-ସାଧନା;
ମହାନ୍ ଆଦର୍ଶଲାଗି କଷଣ-ବରଣ,
ପରର୍ଥେ ହବନ-ଭୂମି କରିବା, ଜୀବନ ।
ବନା ବସ୍ତ୍ରରେ ଫିଙ୍ଗି ପଦ, ଅନୁଷ୍ଠାନ
ନ ଶୁଣି ପିଲାଙ୍କ ଅଶ୍ରୁ, କମିଛି ଜଣାଣ,
ଫିଙ୍ଗି ଅର୍ଥ-ସ୍ୱଚ୍ଛଳତା, ସୌଖ୍ୟର ଜୀବନେ
କମଳ ଦେଇଛୁ ଯୋଗ,—ନବ ଆନ୍ଦୋଳନେ ।

ଫେରୁ ଫେରୁ କ୍ୟାମ୍ପେ କନୁ ତଳେ ଛୁଇଁ ଛୁଇଁ
କମଳର ଆତ୍ମା କହେ 'ସେ ଯେ ନାହିଁ ! ନାହିଁ !
କରୁଣାର ଖଳସିର ଦିନାଗତ ପ୍ରାୟ,
ହେଲେ ବି, ମିଳନ କାହୁଁ ସମ୍ଭବିବ, ହାୟ !'
ମାମୁ-ଘରୁ ଦେଇଥିଲେ ଯେତିକ ଖବର
ତାପରେ ଶୁଣିନ କିଛି ପୁଣି ପର ପର
ଗଲାଣି ପାଞ୍ଚଟି ବର୍ଷ, ଘର୍ଣ୍ଣ ଏବ୍ଧ କାଳେ
ଦେହେ, ମନେ କିବା ରୂପାନ୍ତର ନୋହିପାରେ ?
ଥିଲେ ମଧ୍ୟ ସେହି ସ୍ନେହ; ଖୋଜୁଁ ମତେ ଆସି
ଥିବ ମୁହିଁ କାରାଗାରେ, ବିରୁଦ୍ଧ, ପ୍ରବାସୀ ।
ମିଳନର ଯୋଗ ନାହିଁ ହତଭାଗ୍ୟ ପ୍ରାଣେ,
କେବେ କାହିଁ ସମ୍ଭବ ତା' ନାହିଁ ମୁହିଁ ଜାଣେ ।'

× × × ×

ଚାଲିଲାଣି ଏକମାସ ନିରସ୍ତ୍ର ସଂଗ୍ରାମ
ଜନାକୀର୍ଣ୍ଣ ଅହୋରାତ୍ର ବେଳାଭୂମି ଗ୍ରାମ
ସେ ଇଁଚୁଡ଼ୀ । ଦଳ ଦଳ ଆସନ୍ତି ପୋଲିସ
ଆତଯାତ ବହୁ ସଂଖ୍ୟେ ଦେଖାଳ ମଣିଷ ।
ଉତ୍କଳର ଚଉଦିଗୁ ସତ୍ୟାଗ୍ରହୀ ଦଳ
ଆସନ୍ତି ପ୍ରତ୍ୟହ, କ୍ରୂର କଟୁଆଳଙ୍କର
ଭୋଗିବାକୁ ଆନନ୍ଦରେ ସର୍ବ ଅତ୍ୟାଚାର,
କରି 'ଗାନ୍ଧିଜୀ କି ଜୟ' ବଦନେ ଉଚ୍ଚାର ।
'ଗାନ୍ଧିଜୀକି ଜୟ' କହି ପୁରବାଳା ଗଣ
ଏକତ୍ରେ ସମୁଦ୍ର ବାରି କରନ୍ତି ରନ୍ଧନ,
ବାଳକେ ଲବଣ ତୋଳି 'ଗାନ୍ଧିଜୀ କି ଜୟ'
କହି କରୁଛନ୍ତି ଭୂମି ଉନ୍ମାଦନାମୟ ।
'ଗାନ୍ଧିଜୀ କି ଜୟ' କହି ବୃଦ୍ଧ, ବୃଦ୍ଧାଗଣ
ଚାଲୁଛନ୍ତି ବୀର ଦର୍ପେ ଅନ୍ୟାୟ ଲବଣ
ବିକିବେ ନଗରେ ଯାଇ । ରୋଧେ କଟୁଆଳ,
ଲବଣ ଫିଙ୍ଗଇ କ୍ରୋଧେ, କରଇ ଗ୍ରେପ୍ତାର ।
ପେଷି ରାଜା ଦଳ ଦଳ ଆଦ୍ୟେ କାରାଗାରେ,
ପରେ ସ୍ଥିର କଲା ଖାଲି ଲଗୁଡ଼ ପ୍ରହାରେ
ନିଷ୍ପତ୍ତି କରିବ ଯୁଦ୍ଧ । ବୁଜି ଦେଇ ଆଖି
ମାରନ୍ତି ଲଗୁଡ଼େ ସତ୍ୟାଗ୍ରହୀ ନରମାଖୀ ।
ଗଡ଼ି ଯାନ୍ତି ବାଲିପରେ, ଲାଲ, ରକ୍ତ ବହେ
'ଗାନ୍ଧିଜୀ କି ଜୟ' କହୁ ସତ୍ୟାଗ୍ରହୀ କହେ ।

ସ୍ୱର୍ଗୀୟ ଏ ଦୃଶ୍ୟେ ଉନ୍ମାଦିତ ଗୋଡ଼ ବାଲ
ଦେଖନ୍ତି ଦେଖଣାହାରି ନେନ୍ତି ଅଶ୍ରୁ ଢାଳ ।
ଅଦୂରେ ରହିଛି ଠିଆ ଶକଟ୍ଠା କୁଟୀର
କଂଗ୍ରେସ ଶକଟ୍ଠା କରେ ନିଜ ଜଖମୀର ।
ଖଞ୍ଜ, ଆଘାତିତ ନିଜେ ବହୁ ସତ୍ୟାଗ୍ରହୀ
ଅନ୍ୟ ଜଖମୀରେ ଆଣୁଅଛନ୍ତି ସେ ବହି ।
ଅଧିକାଂଶ ସଙ୍ଗେ ସଙ୍ଗେ ହୁଅନ୍ତି ବିଦାୟ
ଆସ୍ତେ ହୋନ୍ତି ଶକପ୍ରିତ ବିକଳିତ-କାୟ ।
କରିଅଛି ବନ୍ଦୋବସ୍ତ ସେବିକା, ସେବକ,
ତାଙ୍କ ଯତ୍ନ, ସେବା ଶ୍ରେଷ୍ଠ ଔଷଧ ରୋଚକ ।
ନବତମ ରୋଗୀ ଏବେ ଶକଟ୍ଠା ମଧ୍ୟରେ
କମଳ ଲୋଚନ, ପଟି ବନ୍ଧା ତାର ଶିରେ;
ପଟି ବନ୍ଧା ହସ୍ତେ, ବକ୍ଷେ; ଶାନ୍ତ ଅଚେତନ
ଦୁଇ ଦିନ ପଡ଼ି ଖାଲି କରଇ ଗର୍ଜନ ।
ନେତାଏ ଗଲେଣି ଜେଲେ, କିନ୍ତୁ ପରେ ପରେ
ଡିକ୍ଟେଟର ବଛା ହୋଇ ଚଳନ୍ତି ସମରେ ।
ପୋଲିସ ମାଡ଼ରେ ଷଷ୍ଠ ଡିକ୍ଟେଟର ରୂପେ ହୋଇ ନିର୍ବାଚିତ
ଜଖମୀ କମଳ   କମଳ ଚଳାଏ ଯୁଦ୍ଧନିପୁଣ ଯାହେଁବିତ ।
ସପ୍ତାହେକ ପରେ ବାଛି ଅନ୍ୟ ଡିକ୍ଟେଟର
ସ୍ୱୟଂ ସେ ଆଗେଇ ଗଲେ ସତ୍ୟାଗ୍ରହୀ ଦଳ ।
ସାରଣୀରୁ କହୁଥିଲେ ଏ ଅନାକାଙ୍କ୍ଷିତ
କର୍ମ କରି ହୋଇଲେଣି ଅନ୍ତରେ ବ୍ୟଥିତ,
ଜନତା ନ କରୁଁ ତାଙ୍କ ସଙ୍ଗେ ସହଯୋଗ
ଖାଦ୍ୟ ବାସେ ବଢ଼ିଲଣି ତାଙ୍କର ଦୁର୍ଯୋଗ,

ଉର୍ଦ୍ଧ୍ୱ ତେଣେ ଗୁପ୍ତ ଦିଏ ସ୍ୱଦେଶୀ ସର୍କାର
ଆନ୍ଦୋଳନ ବଢ଼େ, କହୁଥାଳେ କି ବେକାର ?
ତେଣୁ କର୍ତ୍ତାଙ୍କର ଏବେ ଗୁପ୍ତ ନିର୍ଦ୍ଦେଶ
ଜୋର କର ଲାଠିମାଡ଼, ବୟସ-ନିର୍ବିଶେଷ ।
ପିଟ ସମସ୍ତଂକୁ, ସତ୍ୟାଗ୍ରହୀ ବା ଦେଖାଳି
ତୁରନ୍ତ ଭାଗିବେ ସର୍ବେ ଯେଝେ ସ୍ଥାନ ଛାଡ଼ି ।
କମଳର ଦଳ ହେଲେ ପ୍ରଥମ କବଳ
ଏହି ଗୁପ୍ତ ନିର୍ଦ୍ଦେଶର । ଧରି ତାର ଦଳ
କମଳ ଚଳଇ 'ବନ୍ଦେ ମାତରମ୍' ଗାଇ
ଦୂର ଦୂର ଗ୍ରାମ ଜନେ ରହିଛନ୍ତି ଚାହିଁ ।
ଅର୍ଦ୍ଧପଥେ କରେ ତାଙ୍କୁ ପୋଲିସ ଚଢ଼ାଉ
ନ ଦେଇ ସୁଯୋଗ ଲୁଣ-ମରା ପାଇଁ ଆଉ ।
ଚେଷ୍ଟା କରୁ ସତ୍ୟାଗ୍ରହୀ ଆଗେ ଯିବା ଲାଗି
ପଡ଼େ ତାଙ୍କ ମୁଣ୍ଡେ କହୁଥାଳ ଲାଠି ଭାଙ୍ଗି ।
ମୁଣ୍ଡେ, କାନ୍ଧେ, ବକ୍ଷେ ପାଇ ଲଗୁଡ଼ ପ୍ରହାର
ଟଳିପଡ଼େ କମଳର ଦେହ ସୁକୁମାର,
'ଗାନ୍ଧିଜୀ କି ଜୟ' କହି ବିକଳ ବଚନେ
ପଡ଼ି ରହେ ଭୂତଳରେ ପରେ ଅଚେତନେ ।
ଟେକିନେଲେ ସତ୍ୟାଗ୍ରହୀ ଚିକିତ୍ସା ମଣ୍ଡଳରେ
ଚିକିତ୍ସା କରନ୍ତି ତାଙ୍କୁ ସେବକେ ସଧୀରେ ।

କ୍ରମେ ଟିକେ ସୁସ୍ଥ ହେଉଁ ସପ୍ତାହକ ପରେ
କମଳ ଦେଖଇ ଏକ ଚିଠି, ଶଯ୍ୟା ତଳେ;

ଦେହମଧ୍ୟ ତା'ର ବନ୍ଧୁ ସ୍ଥାନର ମୋହର
ଠିକଣା ସୂଚଇ କରୁଣାର ହସ୍ତାକ୍ଷର ।
ଖୋଲେ ପତ୍ର,—ଲେଖିଅଛି କରୁଣା ସତ୍ୟରେ
'ଫେରୁଛି ମୁଁ ପ୍ରିୟ ପୁଣି ମୁକ୍ତ ଜଗତରେ ।
କାହିଁଅଛ ନାହିଁ ଜାଣେ ଲେଖେ ଅନୁମାନେ
ଅଳ୍ପ ଦିନେ ଭେଟିବି ମୁଁ ଥିବ ଯଦି ଧ୍ୟାନେ,
ତଳ ଠିକଣାରେ ଦିଅ ତୁରନ୍ତ ଉତ୍ତର
ଉଦ୍‌ଗ୍ରୀବ ମୁଁ ଜାଣିବାକୁ ତୁମ୍ଭର ଖବର ।'
ଠିକଣାରୁ ବୁଝେ ଇତିମଧ୍ୟେ ପକ୍ଷେ ଗତ
ଅନୁମାନେ, କରୁଣା କି ହେଉଥିବ ବ୍ୟସ୍ତ
ନ ପାଇ ଉତ୍ତର ତାଠୁଁ । ସେବକେ ହକାରି
କାଗଜ, ଲଫାଫା ପାଇଁ କହେ ସେ ଚିତ୍କାରି ।
ଲଫାଫା·ଆସିବ କାହୁଁ ? ଦୂର ଡାକଘର,
ଆଣିବାକୁ ଦିନକରୁ ନ ହେବ ସଅଳ ।
କମଳ ଅସ୍ଥିର ହୁଏ, ଏକାଳେ କେ କହେ
'ଦୂରାଗତ ମହିଳାକେ ଦ୍ୱାର ପାଶେ ରହେ,
ଚାହାନ୍ତି ସେ ଆପଣଙ୍କ ତୁରନ୍ତ ଦର୍ଶନ,'
ହୁଏ କମଳର ଦକ୍ଷ ନୟନେ କଂପନ ।
ଆଡ଼ ହୋଇଯାନ୍ତି ଆନେ, ପଶନ୍ତି ସେ ନାରୀ
**କରୁଣାର ଆବିର୍ଭାବ** କମଳ ତା' ଶୟନରୁ ଉଠଇ ଚିତ୍କାରି,
"'କରୁଣା' 'କରୁଣା' ! ତମେ ଏଠାରେ କିପରି ।"
ସହାସ୍ୟବଦନା ଶାନ୍ତ-ଚେତା ଦେବୀ ପରି,
କରୁଣା, ସଧୀରେ ବସି ଶଯ୍ୟାରେ ତାହାର
କହେ, "ଶୁଣ ସ୍ଥିର ହୋଇ, କହିବାର କାଳ

ଅଛୁ ପରେ ।" ଡାକେ ଧୀରେ ତସତ୍ୟ ସେବକେ;
ବୁଝି ନିଏ ସବୁ କଥା ତା'ଠୁ ନିମିଷକେ ।
ତା ପରେ ସେ କହେ "ସବୁ ରୋଗୀଙ୍କ ଜଞ୍ଜାଳ
ନେଲି ମୁଁ, ନିଅ ହେ ଅନ୍ୟ କରମର ଭାର
ତମେ ସବୁ"
କ୍ଷଣକରେ ହୁଏ ପ୍ରଚାରିତ
ଆସିଛି କରୁଣା ସନ୍ନ୍ୟାସିକା ସୁବନ୍ଦିତ,
ଆସି ନେଇଅଛି ଆପେ ରୋଗୀ-ସେବା ଭାର
କମଳ ସଂଗତେ ଆଗୁଁ ଚିହ୍ନା ପୁଣି ତାର !
ତାକୁ ଖୋଜି ଖୋଜି ଆସିଅଛି ଏହି ସ୍ଥାନେ
ଉଭୟେ ପ୍ରଣୟୀ ପରି ଲୋକେ ଅନୁମାନେ ।

ପ୍ରଣୟୀ ନିଷ୍ଠୁର, ଆଉ କହିବା କାହାରେ ?
ଦ୍ୟାବା ଓ ପୃଥିବୀ ପରି ଯେହ୍ନେ ଏକ ଆରେ
ରହିଁ ରହିଁ ଖାଲି କଟାଇଲେ ଯଉବନ,
ମିଶୁ ମିଶୁ ଭାଙ୍ଗିଗଲା ସେ ମଧୁମିଳନ ।
କରୁଣା ବିମୁକ୍ତ; ତା'ର ତପସ୍ୟା, ସମ୍ପଦ
କମଳ, କେଜାଣି କାଲି ହେବ କାରାବନ୍ଧ !
କେତେଦିନ ଥିବ ରହି ଏହି ଲୁଚକାଳି
ପ୍ରଣୟ କି ଖାଲି ଝରଝର ଅଶ୍ରୁ-ଧାର ?
ପ୍ରଣୟ କି ହେବ ଖାଲି ଜନସେବା ବ୍ରତ ?
ନାହିଁ ତାର ଜନାନ୍ତିକ, ନିଜର ନିଭୃତ ?

କରୁଣାର ନାସ୍ତିମନ ଗୃହେ ନିଜ ନୀଡ଼,
ପ୍ରାଣର ଅନନ୍ୟଠାରୁ ପରଶ ନିବିଡ଼,
ବିସ୍ତୃତ ଆକାଶ ତାର କିବା ଦରକାର ?
ସେ ଗୃହେ ସାମାନ୍ୟ, ଯାହା ହେବ ଆପଣାର ।
ସୁସ୍ଥ ହୋଇ ପୁଣି ଯୋଗ ଦେବ ସତ୍ୟାଗ୍ରହେ
କମଳଠୁ ଶୁଣି, ଚିତ୍ତ ନାହିଁ ସ୍ଥିର ରହେ
ବିରହିତା କରୁଣାର । କିଛି କହେ ନାହିଁ,
ମନେ ମନେ ଖାଲି ନାନା କଥା ଭାବୁଥାଇ ।

କଂଗ୍ରେସ ଶିବିରରେ ଥିଲେ ପ୍ରବୀଣ କର୍ମିଣୀ
କେଉଁ ନେତାଙ୍କର ପତ୍ନୀ; ଶୁଦ୍ଧା, ମନସ୍ୱିନୀ ।
ମାତା ରୂପେ ଥାନ୍ତି କ୍ୟାମ୍ପେ, ସ୍ନେହ ସର୍ବମନ
କରି ପ୍ରାତ୍ୟହିକ ଯେତେ ଦୁଃଖ ପ୍ରଶମନ ।
କରୁଣା ତାଙ୍କର ପାଖେ କନ୍ୟା ପରି ଥାଏ
ଚିକିତ୍ସା ମଧ୍ୟରେ ଦିବସରେ ଆସେ ଯାଏ ।
ନିଭୃତେ ତାହାଠୁ ବୁଝି ଗତ ଇତିହାସ
ବୁଝିଲେ ପ୍ରବୀଣା, କରୁଣାର ଗୁପ୍ତ ପ୍ରାସ ।
ଦିନେ ଯାଇ ଅସଙ୍କୋଚେ କହିଲେ କମଳେ
"ଆଗେ ତମେ କରୁଣାରେ ବିଭା ନାହିଁ କଲେ,
ଯୋଗ ଆଉ ନାହିଁ ଦେଇ ପାର ଆନ୍ଦୋଳନେ
ଜାଣ ନାହିଁ ତମେ ନାସ୍ତିକ ଗୃହେ ଜୀବନେ ।"
ଉତ୍ତରେ କମଳ "ମୁଁ ଯେ, ଉଦାସୀ ଜଗତେ
ମୁଣ୍ଡ ଗୁଞ୍ଜିବାକୁ ଥାନ ନାହିଁ ଏ ମରତେ,

କାହିଁ ତାକୁ ରଖିବ ମୁଁ, ମାଆ, ମତେ କହ,
କରୁଣା ହୁଅନ୍ତା କାରେ ଅସୁଖ ବିଷୟ ?”
କହନ୍ତ୍ର ପ୍ରବୀଣା ହସି, “ତା’ର ସମାଧାନ
କରୁଣା ସାରନ୍ତି କରି, କର ଅବଧାନ
ଏଇ ପଦେ ।’
ସମ୍ମୁଖେ ତା’ ଦେଖଇ କମଳ

ତ୍ୟାଗପୀଠରେ ବିବାହ । ଅବିନାଶଙ୍କ ଉଇଲ୍

ଉଇଲ କରୁଣା ପିତା ଅବିନାଶଙ୍କର ।
ସ୍ପଷ୍ଟ ଲେଖାଅଛି ତହିଁ ତାଙ୍କ ସଂପତ୍ତିର
ତୃତୀୟାଂଶ ନେବେ ତାଙ୍କ କନ୍ୟା; ତାର ବର ।
ଅନୁମାନେ ମୂଲ୍ୟ ହେବ ଦୁଇ ଲକ୍ଷ ପର
ଅଛି ଘର, ଜମିଦାରୀ, ବ୍ୟାଙ୍କେ ଜମା କରି
ଯାଇଛନ୍ତି ପୁଣି ଟଙ୍କା—ସମସ୍ତ ଏ ଧନ,
କମଳର ପଦେ କରି ନିଃଶେଷେ ଅର୍ପଣ
କରୁଣା ଗୃହୁଛି ତା’ର ହୃଦୟ-ଆଶ୍ରୟ
ତାହା ବିନା ଆବର୍ଜନା ମାତ୍ର ଏ ସଂଚୟ ।

ତ୍ୟାଗରେ ବିବାଦ ଶେଷ । କରୁଣାର ଭାଇ
ବାରିଷ୍ଟର,—ଆସିଗଲେ ଦ୍ରୁତେ ତାର ପାଇ,
ଦେଶର ପବିତ୍ର ମୁକ୍ତି-ଯଜ୍ଞ-ବେଦୀ ପରେ
ଆଶୀର୍ବାଦ ବାନ୍ଧିଲେ ଦୁହେଁ ମଙ୍ଗଳ ସୂତ୍ରରେ ।
ଦୁଇ ପକ୍ଷୀ କାହୁଁ ଆସି ଦୂର ଦୂରାନ୍ତରୁ
ବସୁଁ ଡାଳେ ମିଳାଇଲା ତାଙ୍କୁ କେଉଁ ତରୁ ।

ବିବାହ ନିଶୀଥେ ପାଇ ଏକାନ୍ତେ ପ୍ରିୟରେ
କରୁଣା ଆଶ୍ଳେଷେ ଭିଡ଼ି କମଳେ ଦେହରେ
ନିଜ ନେତ୍ରଜଳୁଁ ହେ ପ୍ରିୟ-ଗଣ୍ଡ କରେ ସ୍ନାତ
କାନ୍ଦି କାନ୍ଦି ଦିଏ ପ୍ରିୟେ ଚୁମ୍ବନ-ଉତ୍ପାତ ।
"ତୁମକୁ ପାଇବି ସତେ ନ ଥିଲା ଏ ଆଶା,
ଦେଖିବି ଏ ଚନ୍ଦ୍ରମୁଖ, ଶୁଣିବି ଏ ଭାଷା,
ମୋ ଲାଗି ସହିଲ ଦୁଃଖ, ମରିପାଏଁ କନା;
ସୁଖେ କଟିଥାନ୍ତା ଦିନ ନାହିଁ ଥିଲେ ଚନ୍ଦ୍ରା
ଏ ଅଧମା ସାଥେ ।" —ଚୁମ୍ବି କରୁଣା ଅଧର
କମଳ ଦିଅଇ ଅଭିଯୋଗର ଉତ୍ତର ।
କହେ ପୁଣି—"ତମେ କ'ଣ ସତେ ନାହିଁ ଜାଣ
ମୁଁ ଏକ ସାମାନ୍ୟ ଜୀବ ! ତୁମରି ଆଘ୍ରାଣ
ଯା'କରୁ ସୌରଭ ଦେଇଛୁ ମୋ ପ୍ରାଣ-ଫୁଲେ,
ଚନ୍ଦ୍ରିକା ତୁଳନା କାହିଁ ହୁଏ ଦାରା ତୁଲେ ?
କି କଷ୍ଟ ଭୋଗିଛ ନିଜେ ଭୁଲି ଯାଅ ପରା,
ସ୍ୱର୍ଣ୍ଣପାତ୍ର ହୋଇଅଛୁ ମୃତ୍ତିକାର ସରା;
ନାଶ୍ୱ ସିନା ମୁଁ ତୁଷରେ ଖୋଜଇ ଆଶ୍ରୟ;
କଇବା ତୁମରେ ଦେଲି ? ଦେହ ଓ ହୃଦୟ
ନିଜେ ଥୋଇ ମୋର କରେ କରିଛ ମହାନ
ଏ ଧାନରେ । ଲଜ୍ଜା ଦିଏ ମତେ ଏ ସମ୍ମାନ ।
ଥାଉ ଅପ୍ରାସଙ୍ଗିକ ଚାହା । କହ ମତେ ଧନ
ମୂଳରୁ ଏ ଦୀର୍ଘ ଦଶ ବର୍ଷ ବିବରଣ

କହ କଥା ଶୁଣିବ ମୁଁ ଗୋଟି ଗୋଟି କରି,"—
"ନାହିଁ ନାହିଁ, ତମ କଥା"—କହଇ ସୁନ୍ଦରୀ
"ତମେ ମତେ ଆଗେ କହ । ମୋ କଥା ତ ଜାଣ
କିଛି ନୁହେଁ ବିଶେଷ ତା' । କାହା ଅବସ୍ଥାନ
ବାହାରକୁ ଯେତେ କଷ୍ଟ ଭିତରେ ତା ନୁହେଁ"—
"ଯାହା ହେଉ ଶୁଣିବ ମୁଁ"—ବନ୍ଦ କରି ମୁହେଁ
କରୁଣାର, ନିଜ କରେ, କହଇ କମଳ;
କରୁଣା ଏ ସ୍ନେହ-ଖେଳେ ହସି କର କର
କହେ ପୁଣି—"ନାହିଁ, ନାହିଁ, ତୁମକୁ ମୋ ରାଣ,
କର ଆଗେ ଆପଣାର କଥାଟି ବଖାଣ ।
ମାନିବ କି ନାହିଁ ରାଣ ?"
                    କୋଳେ ନେଇ ଟାଣି
ସ୍ନେହମୟୀ ସେ ନାରୀରେ, କହି ପ୍ରେମବାଣୀ,
ନିଜ ଅଙ୍ଗେ ଏକୀଭୂତ କରି ଆଲିଙ୍ଗନେ,
ପିଇ ତାର ଓଷ୍ଠ-ମଧୁ ନିବିଡ଼ ଚୁମ୍ବନେ,
କମଳ ଉତ୍ତରେ ତା'ର ଶ୍ରେଷ୍ଠ ପ୍ରଶ୍ନ ଜାଳ
ଗଳ୍ପରେ ହିଁ ମଧୁ ରସି ହୁଅଇ ସକାଳ ।
ଶଯ୍ୟା ତେଜି ନବବଧୂ, ପୂର୍ବ ସନ୍ଧାସିକା,
ସ୍ନାନ ସାରି ହୁଏ ସ୍ୱାମୀ ବିନୀତ ସେବିକା ।
ଘର ଲିପେ, ଚୁଲି ଧରେ, ଅନ୍ନ ଓ ବ୍ୟଞ୍ଜନ
କରାଇ, ସ୍ୱାମୀରେ ଡାକି କରାଏ ଭୋଜନ;
ସ୍ୱାମୀ ପରେ ସ୍ୱାମୀଥାଳେ ଖାଇ ଆନନ୍ଦରେ,
ଧ୍ୟାନ କରେ—ମିଳୁ ଏହା ଜନ୍ମ ଜନ୍ମାନ୍ତରେ ।

କମଳର ମନ କନ୍ତୁ ନ ମାନେ ବନ୍ଧନ
ଦେଖିବାକୁ ଗୃହେଁ ସେ ଯେ ଅନନ୍ତ ଗଗନ,
କମଳର ସହ୍ୟ ହେବ ତାକୁ କାହୁଁ ଘରର କ୍ଷୁଦ୍ରତା ?
କାର୍ଯ୍ୟବରଣ ଗୃହେ ସାରା ବସୁଧାକୁ ଦେବ ସେ ମମତା ।
ଦେଖିବ ବିଚିତ୍ର ବିଶ୍ୱ, ଅରଜିବ ପ୍ରାଣେ
ନାନା ଅଭିଜ୍ଞତା ନାନା ଜନ୍ତୁଁ, ନାନା ସ୍ଥାନେ ।
କରୁଣାକୁ ଦେଇ କାମେ ରୋଗୀ-ସେବା ଭାର
ବୁହାଇ ନିଭୃତେ ତାର ଗଣ୍ଡେ ଅଶ୍ରୁଧାର,
କମଳ ଉତ୍ସାହେ ପୁଣି ପଶେ ଆନ୍ଦୋଳନେ
ପାଏ ଏକବର୍ଷ କାରା ରାଜ-ବିପ୍ଳବରଣେ ।

---

# ଅଷ୍ଟମ ସର୍ଗ

## ଦଳତ୍ୟାଗ

---

'ମହାତ୍ମା ଗାନ୍ଧିକ ଜୟ' କରି ଉଚ୍ଚାରଣ
ସହସ୍ର ସହସ୍ର ଯାହା କଷଣ ବରଣ
କଲେ ଆନନ୍ଦରେ, ମୁକ୍ତି ଲାଗି ଘରଚର
କ୍ରମେ ତା ଦଂଶିଲା ବିବେକରେ ଇଂରେଜର ।
କମାଣ, ବନ୍ଧୁକ ନାହିଁ, ନାହିଁ ବକାବକି
ନାହିଁ ନର ରକ୍ତପାତ, ନାହିଁ ଛକାଛକି,
କିଛିହିଁ ଗୋପନ ନାହିଁ, ସତ୍ୟାଗ୍ରହୀ କହେ
ଆଗୁଁ କେଉଁସ୍ଥାନେ ତାର ଯୁଦ୍ଧ ଭୂମି ରହେ,
ଅସ୍ତ୍ର ଶସ୍ତ୍ର ନାହିଁ ତାର, କରିଲେ ଆଘାତ
ଆଶୀଷ ଢାଳଇ ମୁଖୁ ହୋଇ ଭୂମିସାତ ।
ଇଂରେଜ ଶାସନ, ହିଂସା—ଶସ୍ତ୍ର ପ୍ରତିଷ୍ଠିତ
ନିରସ୍ତ୍ର ଅହିଂସ ରଣେ ହୁଏ ବିଚଳିତ ।
ମହାତ୍ମାଙ୍କ ଉଦ୍‌ଭାବିତ ଏ ନବ ସମର
ଫଉଜେ, ପୋଲିସେ କାବୁ କରେ, ଇଂରେଜର ।
କାରାରୁ କଂଗ୍ରେସେ ତେଣୁ କରି ଉନ୍ମୋଚନ
ସନ୍ଧିର ସରତ କରେ କଥୋପକଥନ ।

କଂଗ୍ରେସ ଓ ଇଂରେଜ ସନ୍ଧି

ଦେଶଲାଗି ଏକ ବର୍ଷ କାରାବାସ ପରେ
କମଳ ବାହାରେ କିନ୍ତୁ ଖଣ୍ଡିତ ଚିତ୍ତରେ ।

ଆନ୍ଦୋଳନେ ନାହିଁ ତାର ଉତ୍ସାହ ପୂର୍ବର;
ଦେଖିଛି ସେ ଟେକ ପଦ୍ଧା ସ୍ୱଦେଶ ପ୍ରେମର ।
ନେତାଙ୍କର ଅହମିକା, ସ୍ୱାର୍ଥର ସଙ୍ଘର୍ଷ
ତ୍ୟାଗ ତାର ମରମକୁ କରିନାହିଁ ସ୍ପର୍ଶ;
ଖଦଡ଼ଟା ଭେକ ମାତ୍ର, ଅହିଂସା ଉପାୟ—
ଅନେକଙ୍କୁ କାରାବାସ ବ୍ୟବସାୟ, ଦାୟ ।
ଲୁଚିଏ ସାଗର-ଗର୍ଭ ହିଂସ୍ର ଜଳଚରେ
କଂଗ୍ରେସର ଛଦ୍ମତା ଯେପରି ରମ୍ୟ ମାଳଊର୍ମି ଚଳାଇ ଉପରେ,
ଗାନ୍ଧିଜୀଙ୍କ ବିଶ୍ୱବ୍ୟାପୀ ସାତ୍ତ୍ୱିକ ପ୍ରଭାବ,
ଘୋଡ଼ାଇଛି କଂଗ୍ରେସର ସକଳ ଦୁର୍ଭାବ ।
ନାନା ଦଳ, ନାନା ସ୍ୱାର୍ଥ, ତଚ୍ଛା ଚୁଗୁଲିର
ଦେଖି ଶୁଣି କମଳର ବିବେକ ଅସ୍ଥିର ।
ଦୂରୁ ଯାଙ୍କୁ ଭାବିଥିଲା ଦେବ-ସଙ୍ଘ ବୋଲି
ନିକଟେ ଦେଖଇ ତାଙ୍କୁ କ୍ଲେଦ ବୋଲାବୋଲି ।
ପୁଷ୍ପାଭାବେ ପୂଜା ପାଇଥାଏ ଦୁର୍ବାଦଳ,
ଦୁର୍ଭିକ୍ଷରେ ସାରୁ ପତ୍ର ଭୋଜନ ପୁଷ୍କଳ,
ଅତି ସାଧାରଣ ଲୋକେ, ଘଟଣା ଚକ୍ରରେ
ମିଶିଯାଇ ଆନ୍ଦୋଳନେ, ଜନତା ନେତ୍ରରେ
ଅନ୍ୟ ଲୋକ ଅଭାବରେ ସାଜିଛନ୍ତି ନେତା,
ଜ୍ଞାନ ବା ଚରିତ୍ର, ତ୍ୟାଗ,—କିଏ ପଚ୍ଛରେ ତା ?
ଜନତାକୁ ଆନ୍ଦୋଳନେ ମତାଇବାପାଇଁ
ମିଥ୍ୟା କହିବାରେ ତାଙ୍କୁ କିଛି ବାଧା ନାହିଁ,
ବ୍ରହ୍ମାସ୍ତ୍ର, – ଇଂରେଜେ ଦେବା ଗାଳି ସର୍ବ ସ୍ଥଳେ
ନିଜ ଦୋଷ ଦେଖିବାକୁ ଆତ୍ମା ଭୟ କରେ ।

ଚରଖା-ଅହିଂସା—ଗାନ୍ଧି—ଆଚ୍ଛାଦନ ତଳେ
ବ୍ୟାପ୍ତ ସର୍ବେ ହିଂସା, ସ୍ୱାର୍ଥ, ମିଥ୍ୟାର ସମରେ ।

କିଛି କାଳ ପରେ ହୁଏ ଦେଶେ ନିର୍ବାଚନ
ଘୋରତର ହୁଏ କଂଗ୍ରେସରେ ସ୍ୱାର୍ଥ-ରଣ ।
କେ ହେବ ଆସେମ୍ବ୍ଲି-ସଭ୍ୟ ଲାଗେ ଟଣାଟଣି
ତ୍ୟାଗର ତାଲିକା ଏକେ ଏକେ ଯାନ୍ତି ଗଣି ।
ମନ୍ତ୍ରୀ-ବନ୍ଧୁବନ୍ଧୁ ହୁଏ ତା'ର ପରେ ପରେ
ନାମ ଶୁଣି ଚିତ୍ତ ଭରେ ଘୃଣା, ବିସ୍ମୟରେ ।

କଣିବାକୁ ସମ୍ପତ୍ତିର ଉତ୍ତମ ବ୍ୟବସ୍ଥା
କରୁଣା ଯାଇଛି କିଛି କାଳ କଲିକତା,
ଶାନ୍ତି ପାଇଁ, କର୍ତ୍ତବ୍ୟର ନିର୍ଦ୍ଧାରଣ ପାଇଁ
ବିରକ୍ତେ କରୁଣା ପାଶେ ତୁରନ୍ତ ପଳାଇ
କହେ ତାକୁ ସବୁ କଥା—
"ଦଳ—ଅନୁଷ୍ଠାନେ
ନିଜକୁ ଗୁଳିବା ମାତ୍ର ଉପାଦାନ—ଜ୍ଞାନେ,
ଦେଶ, ଜାତି ନାମେ ପାପ, ଅସତ୍ୟ ସହିବା
ଏହାକୁ କି ହିଁ ତମେ ଦେଶସେବା ବୋଲି କହିବା ?
ମିଥ୍ୟାରୁ ମିଥ୍ୟାର ଜନ୍ମ, ଅନ୍ୟାୟୁ ଅନ୍ୟାୟ,
ସ୍ୱାର୍ଥ କାହିଁ ହେବ ଲୋକ-କଲ୍ୟାଣ ସହାୟ ?

ଦେଶ ବା ସମାଜ ଅବା ଦଳ, ଆନ୍ଦୋଳନ,
ବ୍ୟକ୍ତିର ଚରଣେ ଠିଆ ସମଷ୍ଟି-ଜୀବନ ।
ବ୍ୟକ୍ତି ପ୍ରଥମ ଓ ଶେଷ, ବ୍ୟକ୍ତି ହିଁ ପ୍ରଧାନ
ବ୍ୟକ୍ତି ଶୁଦ୍ଧତା ହିଁ ଦେବ ଗୋଷ୍ଠୀକୁ ସମ୍ମାନ ।
ଦଳର ମର୍ଯ୍ୟାଦା ପାଇଁ ବ୍ୟକ୍ତିର ଗଳନ୍ତି
ଘୋଡ଼ାଇଲେ, ଆତ୍ମହତ୍ୟା ମାତ୍ର ପରିଣତି ।
ତେଣୁ ମୁଁ ଛାଡ଼ୁଛି ଦଳ, ଛାଡ଼ୁଛି ତ ତମେ ।
ଦଳ ଓ ବ୍ୟକ୍ତି କରିବା ମାନବ ସେବା ଆପଣା ଧରମେ ।
ଯେମନ୍ତ ଜୀବିକା ପୁଣି ଅନ୍ୟ ଜନ ପରି
ତମର ପ୍ରଦତ୍ତ ବିତ୍ତେ ଅପେକ୍ଷା ନ କରି ।
ଅନ୍ୟର ଅର୍ଜିତ ଟାଙ୍କା; ବିନା ପରିଶ୍ରମେ
ଭୋଗିବା ଅନ୍ୟାୟ ବୋଲି କହେ କେ ମରମେ;
ରଖି ତାହା ଲଗାଇବା ଜନତା କଲ୍ୟାଣେ,
ଶାନ୍ତି ଦେବା ସ୍ୱର୍ଗସ୍ଥିତ ପିତୃ-ମାତୃ ପ୍ରାଣେ ।
ମତେ ତ ବରିଛ ତମେ ଦରିଦ୍ର ବେଳରୁ,
ମୁଁ କପାଁ ହେବାକୁ ଯିବ ଧନ- କଳୁଚରୁ ?"

କରୁଣାର ନାହିଁ ଆଉ ପୂର୍ବ ଚପଳତା
କମଳର କଥା ଏବେ ଶୁଣେ ପୋତି ମଥା ।
କମଳକୁ ସଖା ବୋଲି ମନେ ନାହିଁ କରେ
ସେ ଆଜ ନମସ୍ୟ, ମାନ୍ୟ ସ୍ୱାମୀ ତା' ଉତ୍ତରେ ।
ଚତୁରା ସେ; ଭବେ ଦେଖାଇଲେ ସ୍ୱତନ୍ତ୍ରତା
ଦରିଦ୍ର କମଳ କାଳେ ଭାବିବ ଅନ୍ୟଥା,

ଏ ଲାଗି ସମ୍ପତ୍ତି ସାଥେ ସମଗ୍ର ନିଜରେ
ସମର୍ପିଛି କମଳର ପଦେ ନିଃଶେଷରେ !
ନିଜ ଗୃହେ କମଳର ଅନୁଜ୍ଞା-କାରିଣୀ
ପରି ଚଳେ, ସର୍ବଗୁଣବତୀ ମନସ୍ୱିନୀ ।
ପୁରସ୍କାର ଲଭେ କିନ୍ତୁ ସେନ୍ହ ସେ ବିନୟେ
ସାମ୍ରାଜ୍ଞୀର ସିଂହାସନ କମଳ-ହୃଦୟେ ।
ସସ୍ମିତେ କହଇ କଥା ଶୁଣି କମଳର
"ଉଚିତ ଭାବୁଛ ଯାହା ନିଶ୍ଚିନ୍ତରେ କର ।"

କିଛି ଚେଷ୍ଟା ଫଳେ ଏକ ଇଂରାଜି କାଗଜେ
କମଳକୁ ମିଳେ ଏକ ଚାକିରି ସହଜେ ।
ହୁଏ ସିଟି-ରିପୋର୍ଟର୍—କଠିନ କରମ,
ସବୁବେଳେ ଦରକାର ଥିବା ସଚେତନ ।
ବିଶେ, ଦିନେ ଯେତେବେଳେ ଯାଏ ସେ ବାହାରେ
କରୁଣା ଅପେକ୍ଷେ ନିଦ୍ରାହୀନେ, ଅନାହାରେ ।

**କମଳର ଖବର- କାଗଜରେ ନୌକରି**

ଭୋଗିଲେ ହେଁ ଏଥିଲାଗି ସ୍ୱାମୀ ତିରସ୍କାର
ନାହିଁ ଛାଡ଼େ ଏଇ ଏକ ଅବାଧ୍ୟତା ତାର ।
କମଳକୁ ନୂଆ କାମ ଲାଗୁଅଛି ଭଲ
ଦର୍ଶନ ମିଳଇ ନିତ୍ୟ ବଡ଼ଲୋକଙ୍କର,
କଲାଣି ସେ ମଧ୍ୟେ ମଧ୍ୟେ ଏପରି ସାକ୍ଷାତ
ସାହିତ୍ୟେ, ବିଜ୍ଞାନେ ଯେହୁ ପୃଥିବୀ-ବିଖ୍ୟାତ ।
ନିଜେ ଖୁସୀ, ଖୁସୀ ମଧ୍ୟ ପ୍ରଭୁଦଳ ତାର
ବର୍ଷ ପରେ ତେଣୁ ଖୋଲେ ପ୍ରଗତିର ଦ୍ୱାର ।

କାଗଜର ଜଣେ ଲୋକ କଣ୍ଟ୍ର କାଳ ପାଇଁ
ଯିବ ଦୂର ନଡ଼ଯୁର୍କେ; କାଗଜ ହିଁ ଦାୟୀ
ସବୁ ତାର ଖର୍ଚ୍ଚ ଲାଗି, ଥିଲେ ସ୍ୱା ସାଥିରେ
ଆଜ ଅଧେ ଖର୍ଚ୍ଚ ଦେବ କମ୍ପାନୀ ଖୁସିରେ ।
କମଳ ହିଁ ହେଲା ବସ୍ସ । ଠଙ୍କାପଇସାଦ
ଘାଇକ ଉକାଇ ସବୁ ସଯତ୍ନେ ସଂପାଦ,
ପ୍ରସ୍ତୁତ ହୋଇଲେ ଦୁହେଁ ଯିବେ ଆମେରିକା,
ଶ୍ରୀକମଳ ସାବାଦକ, କରୁଣା ରକ୍ଷିକା ।

ଦୁହିଁଙ୍କର ଆମେରିକା ଯାତ୍ରା

ବାବାର ପବନ-ସ୍ମୃତି-ମଧୁ-ଅହଂକାରେ
କରୁଣା କହଇ ଖାଲି 'ଦେଖୁଛ ନା ବାରେ,
ବାବା ଅଙ୍ଗୀକାର ପୂର୍ଣ୍ଣ ହୁଏ ଆକସ୍ମିକେ
କପଟ ଏଥିରେ !—ସତେ ବାବାଙ୍କ ପରି କେ !'

---

# ନବମ ସର୍ଗ

## ଆମେରିକା ଓ ବିଶ୍ୱଜନୀନତା

---

ସୁଏଜ୍ ଖାଲର ମୁଣ୍ଡେ ସଏଦ୍ ବନ୍ଦରେ
ଲେସେପ୍‌ସର ଦୀର୍ଘ ମୂର୍ତ୍ତି, ଟେକି ଦକ୍ଷ କରେ
ଅଙ୍ଗୁଳି ସଙ୍କେତେ ଦିଏ ଇଉରୋପରେ ବାଟ
ଯିବାକୁ ଏସିଆଖଣ୍ଡେ । କଂକ୍ରିଟର ଘାଟ,
ଭୂମଧ୍ୟ-ସାଗର ଧକ୍କା ଖାଉଛି ଶାଶ୍ୱତେ
ତିନି ମହାଦେଶ ତାର ଛୁଡ଼ା ତିନି ପଟେ ।
କମଳ-କରୁଣା ଧୂର ମୂର୍ତ୍ତି ପାଦତଳେ
ଭାବୁଛନ୍ତି ନାନା କଥା । ଉଠଇ ମନରେ
ଏଇ ପ୍ରଶ୍ନ—ଇଉରୋପର ଏସିଆ-ଗମନ
ସୁଗକର ହେବ ବୋଲି ଏ କୁଲ୍ୟା ଖନନ
ହେଲା ସିନା, ତେଣୁ ଏହି ଫରାସୀ ସ୍ଥପତି
ନିର୍ଦ୍ଦେଶନ୍ତି ଏସିଆକୁ ଇଉରୋପର ଗତି ?
ଶତାବ୍ଦୀ ଶତାବ୍ଦୀ ଧରି ଏସିଆ ମଣ୍ଡଳ
**ସୁଏଜ କେନାଲ,** ମାନବିକ ସଭ୍ୟତାର ମହା ଉତ୍ସସ୍ଥଳ;
**ଏସିଆ ଓ ୟୁରୋପ** ସମ୍ପଦେ, ବିଳାସେ, ଧର୍ମେ, ସାମ୍ରାଜ୍ୟ ଶାସନେ
ଦର୍ଶନ-ବିଜ୍ଞାନ-ମୂଳ-ତତ୍ତ୍ୱ ନିର୍ଦ୍ଧାରଣେ
ଏସିଆ ଅଗ୍ରଣୀ ବିଶ୍ୱେ; ସ୍ୱାର୍ଥ ମାନବର,—
ଭକ୍ତିରେ କି ତେଣୁ ତହିଁ ଯାବା ଇଉରୋପର ?

ଏସିଆ ଓ ଆଫ୍ରିକାର ସମୁଦାର ବକ୍ଷେ
କ୍ଷୁଦ୍ର ଇଉରୋପ ବସି ଶୋଷଇ ନିଃଶଙ୍କେ
ପୁଷ୍ଟ, ପୁରାତନ ରକ୍ତ । ସଭ୍ୟ ଜାତି-ସଙ୍ଘ,
ଶିଖାଇଲେ ସ୍ୱର୍ଣ୍ଣେ ଯେତ୍କୁ ସଭ୍ୟତା ପ୍ରସଙ୍ଗ,
ଇଉରୋପ-ଦାସତ୍ୱେ ଆଜ ବଞ୍ଚନ୍ତି ସେମାନେ,
ଶ୍ୱେତାଙ୍ଗ ପୂଜଇ ସ୍ୱାଧିକା ତାଙ୍କ ପ୍ରାଣେ ।
ଇଉରୋପ ଚଳେ ପୂର୍ବେ ଏସିଆ ଲୁଣ୍ଠନେ,
ଏସିଆ ପଶ୍ଚିମେ ଆସେ ଆଶ୍ଚର୍ଯ୍ୟ-ନୟନେ
ଦେଖିବାକୁ ଇଉରୋପର ଦୁର୍ଦ୍ଦାନ୍ତ ବିଭବ,
ବୁଝେନା ସେ କାହା ଧନେ ସେ ସବୁ ସମ୍ଭବ ।
ଇଉରୋପର 'ବଣ୍ଣ' ଜନେ, ଦୁର୍ଗମ ଜଙ୍ଗଲେ
ସ୍ଥଳେ, ବେଳାଭୂମେ, ମରୁସ୍ଥାନେ, ଶୈଳ ଖୋଲେ,
କଷ୍ଟେ ଖୋଜ ଏସିଆର ପ୍ରାଚୀନ ସଭ୍ୟତା
ସ୍ୱମୁଗ୍ଧ-ସ୍ୱପ୍ନେ ନୋଇଁଥାନ୍ତି ନିଜ ମଥା ।
ସ୍ୱଚଳିତମନା ଏବ ଏସିଆ-ଯୁବକେ
ନ ପରୁଶ ନିଜ ରତ୍ନେ, ଧାଆନ୍ତି ପୁଲକେ
ଦେଖିବାକୁ ଇସ୍ପାତଗସ୍ଥ କୁତ୍ସିତ ସଭ୍ୟତା
ଇଉରୋପର, ଦେଶେ ଫେରି ବର୍ଣ୍ଣି ସେହି କଥା,
—ନକ୍ଷି-ପୋଲ, ଯନ୍ତ୍ର-ଧୂମ, ରେଲଓ୍ୱେ, ଷ୍ଟେସନ
ରଙ୍ଗମଞ୍ଚେ ଶ୍ୱେତ-ନଟୀ ଅଶ୍ଳୀଳ-ନର୍ତ୍ତନ—
କି ଆତ୍ମ—ପ୍ରସାଦ ପୁଣି, କି କୃତକାର୍ଯ୍ୟତା !
ଇଉରୋପର ଧୂଳୀ-ସ୍ପର୍ଶେ ଗର୍ବୋନ୍ନତ ମଥା !
କମଳ ଭାବଇ ମନେ, ହୁଏତ ଅଚିରେ
ସଭ୍ୟତାର ରଥ-ଚକ୍ର ଯିବ ଘୂରି ଧୀରେ,

ଇଉରୋପ ତଳକୁ ଯିବ, ଏସିଆ ଉପରେ,
ଘଟିନକ ଇତିହାସେ ଏହା ସ୍ତରେ ସ୍ତରେ ?
 କରୁଣାର ଚତ୍ରେ ନାହିଁ କିଛୁ ପ୍ରଶ୍ନୋତ୍ତର
ଚିତ୍ତ ତାର ଉଲ୍ଲସିତ ସ୍ୱାଦେ ନୂତନର ।
ଯୌବନରେ କାରାବନ୍ଧ ରହୁଁ ସେ ବର୍ଷୃଷ୍ଟ
ଆତ୍ମା ତା'ର ଖୋଜୁଥିଲା ଯିବ ଡେଣା ଘୁଞ୍ଚ
ମୁକ୍ତ ନଭ ଚତୁର୍ଦ୍ଦିଗେ । କମଳର ପାଇଁ
ଖୋଲି ହୋଇଥିଲା ସିନା ଦନେ ମାତ୍ରାଶାୟୀ
ଦୀର୍ଘ ବଚ୍ଛେଦର ପରେ । କମଳ ତା ପାଖେ,—
ନୂତନ ଦେଖାଏ ତେଣୁ ମାୟା ତା'ର ଆଖେ ।
ଲୋହିତ ସାଗରେ ଚଳୁଁ ବାଷ୍ପୀୟ ବୋଇତ
ଦୁଇ ତୀର ଦଶେ ପାଖେ, ସଲିଳ ବମୀତ ।
ପାଖକେ ଆଫ୍ରିକା ରହେ, ପାଖକେ ଏସିଆ
ଭୌଗୋଳିକ ଆନନ୍ଦରେ ନାଚେ ତାର ହିୟା ।
ସୁଏଜ ନାଳର ବକ୍ଷେ, ଦଗନ୍ତ ବସ୍ତାର
ଆରବର ମରୁଭୂମି—ଧୂ ଧୂ କରେ ବାଲି ।
କାଏରୋରେ ପିରାମୀଡ଼; ଭୂମଧ୍ୟ-ସାଗରେ
ନୀଳ ଜଳ,—ନୀଳ ଯେହ୍ନେ ମିଶିଛି ଜଳରେ,
ନେପଲ୍‌ସ୍‌ରେ ବସୁଭିଷ ଆଗ୍ନେୟ ପର୍ବତ
ତା' ତଳେ ପମ୍ପାଇ—ତା'ର ଶରୀର ବଧ୍ୱସ୍ତ
ବସୁଭିଷ ଅଗ୍ନି-ଶ୍ୱାସେ; ବଳାସିନୀ ପାରୀ
ରମ୍ୟ ବୁଲୁଭର୍ଦେ ଯାନ୍ତି ରମଣୀୟା ନାରୀ;
କୁତ୍ସିତ କୁବେର-ଭୂମି ବରାଟ ଲଣ୍ଡନ
ଅନ୍ତରେ ସେ ବଶ୍ୱାଶ୍ରୟ, ମୁଖେ ଅପ୍ରସନ୍ନ ।

ଦେଖି ଦେଖି ଏ ସମସ୍ତ କଲେ ଯାତ୍ରା ଶେଷେ
ସମୁଦ୍ରର ଶେଷ ତଟେ, ସୂର୍ଯ୍ୟାସ୍ତର ଦେଶେ,
ସୂର୍ଯ୍ୟାସ୍ତର ବର୍ଣ୍ଣ ଯେନ ସର୍ବାଙ୍ଗି ଆଦିବାସୀ
ଥିଲେ ରକ୍ତ-ବର୍ଣ୍ଣ, ବନ୍ୟ, ଶୋଣିତ-ବିଳାସୀ ।
ଦିନେ ପଡ଼େ ସେହି ରାଜ୍ୟ ଶ୍ୱେତାଙ୍କ ନଜରେ
କୁମାରୀ ମୃତ୍ତିକା ଦେଖି ମୁଖୁ ଲାଳ ଝରେ ।
ସେ ଦିନର ଅଶିକ୍ଷିତା ଅସ୍ପୃଷ୍ଟା କୁମାରୀ
ଶ୍ୱେତାଙ୍କର ବୀର୍ଯ୍ୟ ଗୁଣେ ମହାବଳଶାଳୀ
ବହୁ-ବାହୁ ସଭ୍ୟତାରେ କରନ୍ତି ପ୍ରସବ
ପୃଥିବୀକୁ ଭିକ୍ଷା ଦିଏ, ଆଜି ତା' ବିଭବ ।
ଶ୍ୱେତ, କୃଷ୍ଣ, ପୀତ, ରକ୍ତ—ସବୁ ଚମଡ଼ାର
ମନୁଷ୍ୟଙ୍କ ହୋଇଅଛି ସେ ମୁକ୍ତ-ଦ୍ୱାର ।
କମଳ କରୁଣା ଦୁହେଁ ଉଦବେଗ ଅନ୍ତ
କୂଳ ଛୁଇଁ ପ୍ରତ୍ୟକ୍ଷରେ ଦେଖିବେ ସମ୍ପ୍ରତ
ମାନବିକ ସଭ୍ୟତାର ନବ ରାଜସୂତ,
ହୋଇଅଛି ଗୁଣ, ଦୋଷ ଯା'ର ବହୁଶ୍ରୁତ ।

ଜାହାଜ ପଶଇ ଧୀରେ ନ୍ୟୁୟର୍କ ବନ୍ଦରେ
ସ୍ୱାଧୀନତା—ମହାମୂର୍ତ୍ତି ଦିଶେ କେତେ ପରେ;
ହସ୍ତେ ତା'ର ଅଗ୍ନିଶିଖା, ଆକାଶେ ନୟନ
ଅଟଳ ସଂକଳ୍ପ, ଧୈର୍ଯ୍ୟ, ନର୍ଦ୍ଦେଶେ ବଦନ;
ଆମେରିକ ସଭ୍ୟତାର ପ୍ରତୀକ ମହାନ,
ଯା ଲାଗି ସେ କରଅଛି ନିଜ ରକ୍ତ ଦାନ

ନ୍ୟୁୟର୍କ ବନ୍ଦରରେ ଶିଳର ମାଟିରେ; ଭାଇ ଭାଇ ଗଡ଼ାଗଡ଼ି
ସ୍ୱାଧୀନତାର ହୋଇଛନ୍ତି ଦ୍ୱନ୍ଦ୍ୱ ଯୁଦ୍ଧେ; ହୋଇ ଛଡ଼ାଛଡ଼ି
ମୂର୍ତ୍ତି ଆଜୀବନ କ୍ଷତ ବନ୍ଧୁ, ଗୁଳି ପରସ୍ପରେ
ମାରିଛନ୍ତି, ରଖିବାକୁ ଜୀବନ୍ତ ଦେଶରେ
ମାନବକ ମହତ୍ତ୍ୱର ପୂତ ହୋମ ଶିଖା,—
ଏଇ ସେ ମହାନ୍ ଜାତି, ବୀର ଆମେରିକା ।
କମଳ, କରୁଣା ହସ୍ତ ଧରି ଭକ୍ତିଭରେ
ନମଇ ସେ ମୂର୍ତ୍ତି ଲକ୍ଷ୍ୟେ; ପ୍ରାର୍ଥଇ ଅନ୍ତରେ
'ହେ ଦେବୀ, ସେ ଶୁଭଦିନ ଅଛି କେତେଦୂରେ
ଯେ ଦିନ ତୋ ମୂର୍ତ୍ତି-ପୂଜା ହେବ ପଲ୍ଲୀ-ପୁରେ
ଭାରତର, ଛାଡ଼ି କାଷ୍ଠ, ଶିଳା ଉପାସନା
ଛାଡ଼ି ଧର୍ମ-ଜାତି-ଭେଦ, ବର୍ବର ଅର୍ଚ୍ଚନା
ବାନର, ପିଶାଚ, ସର୍ପ, ଚତୁଷ୍ପଦଙ୍କର,
ଛାଡ଼ି ଆଶ୍ରିବାର ପୁରୋହିତ ପଦତଳ
ଜୀବନର ନିମ୍ନ-ସ୍ତର ସୁଖ ଆଶା କରି,—
ମୋ ଜାତି ଖୋଜିବ ଖାଲି ଆଶିଷ ତୋହରି ?
ହେ ଦେବି, ଚଳ ମୋ ଦେଶେ, ଜାଳି କାଳାନଳ
ହୃଦେ ହୃଦେ କୋଟି କୋଟି ମୋ ଦେଶ ଜନର
ପୋଡ଼ି ଧର୍ମ-ସଙ୍କୀର୍ଣ୍ଣତା, ପୋଡ଼ି କ୍ଷୁଦ୍ର ଲୋଭ,
ସେ ଅଗ୍ନିରେ ପ୍ରସରୁ ମା' ତୋହରି ପ୍ରଭାବ ।

ନ୍ୟୁୟର୍କ ବିଳାସ ଭୂମି—ବ୍ରଡ଼ୱେ ଅଞ୍ଚଳ
ସେହି ସ୍ଥାନେ ବନ୍ଧୁବନ୍ଧୁ ନେଲେ ବସାଘର ।

ଅଭ୍ରଂଲିହ ଷଷ୍ଟିତଳ ପ୍ରାସାଦ ଉପରେ
ବାତାୟନ ଦେଇ ଯହିଁ ମେଘ କ୍ରୀଡ଼ା କରେ ।
ତହିଁ ଏକ କକ୍ଷେ ବସି କରୁଣା ଭାଷଇ
ଏହାକୁ ହିଁ ସତ୍ୟେ ସତ୍ୟେ 'ବସା' ବୋଲି କହି ।
ତଳେ ଦେଖ ପଥ-ଯାତ୍ରୀ ମୂଷା-ଦଳ ପରି;
ଦଶନ୍ତ ବିରାଟ ପୋତେ ଯେହ୍ନେ ବା ଶଫରୀ
ଗ୍ରାମର ପଲ୍ୱଳେ, ଏଣେ ଦେଖ ସମୁଦ୍ରରେ,
ରୌପ୍ୟ ରଶ୍ମି ପ୍ରାପ୍ତ ଦିଶେ ଦୂର ଦିଗନ୍ତରେ
ଉଦାର ହଡ୍‌ସନ ନଦ । ଆକାଶରେ ଆମେ,
କିନ୍ତୁ ନାହୁଁ ଶୂନ୍ୟେ—ଅଛୁଁ ସ୍ଥଳର ଆଶ୍ରମେ ।
ନ୍ୟୁୟର୍କ-ନିବାସ । କିବା ସିଦ୍ଧି ବିଜ୍ଞାନର ! ଧୂଳି, ଧୂମ ନାହିଁ
ବିଦ୍ୟୁତ୍ କୁମାରୀର ଅନିର୍ମଳ କିଛି ନାହିଁ—ଏକ ସ୍ଥାନ-ସ୍ଥାୟୀ
ମାନବସେବା ଯହିଁବା ଜନତା ରହି ସହସ୍ର ନିୟୁତ,
ବହୁ ଦେଶୁ ସମାଗତ, ଭିନ୍ନ, ଅସଂପୃକ୍ତ ।
ଏ ବିରାଟ ଜନସଂଘେ ଯୋଗାଉଛି ପାଣି
ରନ୍ଧେ ଖାଦ୍ୟ, ନିଏ, ଆଣେ, ସେବେ ମନ ଜାଣି
ଜଣେ ମାତ୍ର ଗୃକରଣୀ—ବିଦ୍ୟୁତ୍ କୁମାରୀ,
ସନ୍ଧ୍ୟାଗମେ ସେହି ଦିଏ କୋଟି ବତି ଜାଳି ।
ସେହି ରଖେ ଗୃହଆଡ଼ ଶୁଦ୍ଧ, ପରିଷ୍କାର
ନୈଷ୍ଠିକ ତପସ୍ୱୀଙ୍କର ଯେହ୍ନେ 'ଯଜ୍ଞଶାଳ';
ପ୍ରକୃତିକି ବଶ କରି ବିଜ୍ଞାନର ମନ୍ତ୍ରେ
ମାୟାବୀ ଶ୍ୱେତାଙ୍ଗ ସୁଖ ସୃଜୁଛି କେମନ୍ତେ !
ମନେପଡ଼େ ପୁରାଣର ଆସୁର ସଭ୍ୟତା,
ସେବିବା ଦୈତ୍ୟଙ୍କ ପାଦେ ସକଳ ଦେବତା !"

କମଳ କହଇ—"ମାତ୍ର କେତେ ବର୍ଷ ତଳେ
ଏଇସ୍ଥାନ ପୂର୍ଣ୍ଣ ଥିଲା ଘୋର ଜଙ୍ଗଲରେ,
ଲୀଳାସ୍ଥଳ ବନ୍ୟ ଅଶ୍ୱ, ବାଇସନଙ୍କର
ଅବା ରେଡ଼ ଇଣ୍ଡିଆନ ମୁଣ୍ଡେ ଗୁଞ୍ଜି ପର।
ସେହି ସ୍ଥାନେ ଆଜ ନଭସ୍ପର୍ଶୀ ଅଟ୍ଟାଳିକା
ଦେଖାଉଛି ମାନବର ଶକ୍ତିର ପରୀକ୍ଷା।
ପ୍ରକୃତିର ଭଙ୍ଗି, ଢଙ୍ଗ, ଦେଇ ରୂପାନ୍ତର
ଯାହା ଥିଲା ବନ୍ୟ, ଘୃଣ୍ୟ, ପଂକିଳ ପ୍ରାନ୍ତର
ହେଇ ଆଜ ଋଦ୍ଧିମନ୍ତ, ବିଳାସର ସ୍ଥଳୀ
ମାନୁଷ ସମୃଦ୍ଧି ଯହୁଁ ନାହିଁପାରେ ବଳି।
ଇତିହାସ-ଜରଦ୍‌ଗବ ପ୍ରାଚ୍ୟ ପୁରାତନ
ଯୁବା-ପ୍ରତୀଚୀର ଦେଖି ଏ ଯାଦୁ-କରଣ
ବିମୁଗ୍ଧ୍ ବିସ୍ମିତ ହେବା ସ୍ୱାଭାବିକ ଅତି
ବୃଦ୍ଧ ବାର ଯେଉଁ ନେହେ ଗୃହେଁ ଶିଶୁପ୍ରତି।
ଜାତିର ବି ହୁଏ ପ୍ରିୟେ, ଜନ୍ମ ଜନ୍ମାନ୍ତର

ସଭ୍ୟତାର ଉତ୍ଥାନ ପତନ

ଶାସକ ପିନ୍ଧଇ ହିନେ ବେଡ଼ି ଦାସତ୍ୱର।
ଥିଲା ହିନେ ଯାହା ଋଦ୍ଧିମନ୍ତ ଏହିପର
ସାମ୍ରାଜ୍ୟର ଉତ୍ତମାଙ୍ଗ, ବିଶାଳ ନଗରୀ,
ସେ ଆଜ ହୋଇଛି ବସା ସାପ, ଶୃଗାଳର
କାହାଣୀ ତା' ଖୋଜାହୁଏ, ଉଖାରି ପଥର।
ନିରଜନ ବେଳାଭୂମେ, ବାଲୁକା ପ୍ରାନ୍ତରେ
କୋଣାର୍କ ଉଠିଲା ଯେବେ ଓଡ଼ିଆ ହସ୍ତରେ
ଟୂନା କରି ଦୂର ଶୈଳ, ପୋତି ନଦୀ ଜଳ
ସେତେବେଳେ ଆମେରିକା ଥିଲା ବନ୍ୟସ୍ଥଳ

ଓଡ଼ିଆ ସ୍ୱାଧୀନ ଥିଲେ, ସାମ୍ରାଜ୍ୟ ତାଙ୍କର
ଗଙ୍ଗାଠାରୁ ଛୁଇଁଥିଲା ଦୂର ରାମେଶ୍ୱର ।
ବନ୍ୟ ଆମେରିକା ଆଜି ସଭ୍ୟ, ଧନବନ୍ତ
କୋଣାର୍କର ସ୍ରଷ୍ଟା ଆଜି ବିକଳ, ବିନଷ୍ଟ ।
ପତନ ଉତ୍‌ଥାନମୟ ଇତିହାସ ପନ୍ଥା
ମନୁଷ୍ୟ ଉପରେ ଆଉ ଅଛି କେ ନିୟନ୍ତା ।
ବାଣ୍ଟଇ ସମୃଦ୍ଧି ଯେହୁ ଜାତିରେ ଜାତିରେ,
ଚଞ୍ଚଳା ଚଳନ୍ତି ଅବା ମାଟିରୁ ମାଟିରେ ।
ଯେ ବିଜ୍ଞାନ ଶ୍ୱେତାଙ୍ଗଙ୍କୁ କରିଅଛି ବଳୀ
ସେହି କ୍ରମେ ତାକୁ କରିପାରେ ନିଜ ବଳି ।
ମେଘରୂପେ ସୃଜି ପୁଣି ବାଷ୍ପରୂପେ ଖାଏ
ଯେସନ୍ତେ ରବି, ସେହିପରି ସଂସାର ଖେଳାଏ
ସେ ଅଦୃଷ୍ଟ, ମହାଶକ୍ତି, ରଚଇ, ନାଶଇ
ଏ ସଭ୍ୟତା–ଭବିଷ୍ୟତ କିଏ ପାରେ କହି ?"

ନିଉୟର୍କେ ଏକ ବର୍ଷ ବସବାସ ପରେ
କରୁଣାର ବାନ୍ତି ହୁଏ ଦିନେ ପ୍ରଭାତରେ ।

କରୁଣାର ମାତୃତ୍ୱ

କମଳ ବିବ୍ରତ ହୁଏ, କରୁଣା ହସଇ
ଲାଜେ ଲାଜେ 'କିଛି ନାହିଁ' 'କିଛି ନାହିଁ' କହି ।
କମଳ ଜାଣଇ କ୍ରମେ ଦୋସର ତାହାର
ପାଇଅଛି ମାତୃତ୍ୱର ପୁଣ୍ୟ ଅଧିକାର ।
ମାସେ ମାସେ ଅଙ୍ଗେ ଫୁଟେ ଗରଭ ଲକ୍ଷଣ,
ସ୍ତନାଗ୍ର ପିଙ୍ଗଳ ହୁଏ, ପାଣ୍ଡୁର ବଦନ ।

ସହାଗମେ ଦୁହେଁ ବସୁଁ ଅଗ୍ନିକୁଣ୍ଡ ପାଶେ
କରୁଣାକୁ ଧରି କୋଳେ, ମୃଦୁ, ପ୍ରିୟଭାଷେ
କମଳ ତୋଷଇ ଆତ୍ମା ପ୍ରାଣ-ଦୋସରର,
କୌତୂହଳେ ଦେଖେ କେତେ ଗର୍ଭ-ପରିସର
ନବୀନ-ଜୀବନ-ଯାତ୍ରୀ ଏ ପ୍ରେମୀ ଯୁଗଳେ
ଏ ଚିତ୍ରଚରିତ ଭରୁଥାଏ ସ୍ୱପ୍ନପୁରେ ।

ଯଥାକାଳେ କନ୍ୟା ଏକ ହୁଅଇ ପ୍ରସୂତ
ତା' କ୍ରନ୍ଦନ ଢାଳେ ତାଙ୍କ ଶ୍ରବଣେ ଅମୃତ ।
ବକ୍ଷ ଖୋଲି ଦିଏ ସ୍ତନ୍ୟ ନୂତନ ଜନନୀ,
ପ୍ରିୟ ଥିଲେ ପାଶେ, ଲଜେ ସସ୍ମିତ-ବଦନୀ;
ନ ଥିଲେ ପାଖରେ ଡାକୁଥାଇ ବାରମ୍ବାର
କହ୍ଧ "ଆସ, ଦେଖକନା ଝିଅ କାରବାର ।"
ତିନ ମାସେ ଶିଶୁ ମୁଖେ ଫୁଟେ ଦରହାସ
ଜନକ ଜନନୀ ଚିତ୍ତ ବିଶେଷ ଉଲ୍ଲାସ,
କୋଳୁଁ କୋଳେ ହୋଇ ହୋଇ ଆଦାନ ପ୍ରଦାନ
ସ୍ନେହ-ଅଭିଷିକ୍ତ ଶିଶୁ ହୁଏ ବର୍ଦ୍ଧମାନ ।
କରୁଣା କରଇ ଖେଦ କନ୍ତୁ ଥରେ ଥରେ
'ପୁଅ ଏ ହେଲାନ କିଆଁ ? ତା କ୍ଷୁଦ୍ର ମୁଖରେ
ତୁମକୁ ହିଁ ଦେଉଥାନ୍ତି ଅଚ୍ଛିନ୍ନ ଆଦର
ତମ ବଂଶ; ଧରାରେ କେ ରଖିବ ଆବର ?'

ହେବାକୁ ଏନୁଡ୍‌ଉଦ୍ଧରେ ସାହାଯ୍ୟକାରଣୀ
ରହେ ସଙ୍ଗେ ସ୍ବାର୍କି ନର୍ସ୍; ସୁମିଷ୍ଟଭାଷିଣୀ,
ନିରଳସେ କର୍ମ କରେ, ଦିବସ ଶର୍ବରୀ,
ଦରକାର ଯେତେବେ ଯାହା, ଅପେକ୍ଷା ନ କରି ।
କ୍ରମେ ତାର କାମ କମେ; ଶେଷୁ ଉଠି ଗଲେ
କରୁଣା, ନିଜର କଥା ନିଜେଇ ସମ୍ଭାଳେ ।
ସେବିକାଟି ପାଖେ ଅବା ନିକଟ କକ୍ଷରେ
ବସି ଗପସପ କରେ, ଅବା ବହି ପଢ଼େ ।
କରୁଣା ଦେଖିଲା ଦିନେ ହାତରେ ତାହାର
ଏକ ବହି—'ରେଡ୍‌କ୍ରସ, ଭାରତେ ପ୍ରଚୁର ।'
ବହିନାମେ ବଢ଼େ ତା'ର ମୁଗ୍‌ଧ କୌତୂହଳ
ପଚ୍ଛରେ କେଯାଏଁ ଜାଣେ କଥା ଭାରତର,
କେବହୁଁ ଜାଗ୍ରତ ତାର ଇଣ୍ଡିଆ ଚେତନା,
ଭାରତେ ଯିବାକୁ ତା'ର ଇଚ୍ଛା ଅବା ମନା ।
ନର୍ସ ମିସ୍ ଓ୍ୱାଟସନ ଉତ୍ତରରେ ଯା' ଶୁଣେ ତାହା ସ୍ତବ୍‌ଧ ତାକୁ କରେ
କରୁଣା-ନିହତ ନ କହି ବିଶେଷ ଆଉ, ଅନ୍ୟ କାମ ଧରେ ।
ପାଦ୍ରୀର କନ୍ୟା ଶୁଣେ ସେ——ନିସର ଜନ୍ମ ଇଣ୍ଡିଆ ମାଟିରେ
ଦକ୍ଷିଣ ଭାରତେ ପୁଣ୍ୟ କାବେରୀର ତୀରେ,
ପିତା ମିଷ୍ଟର ଓ୍ୱାଟସନ୍ ପାଦ୍ରୀ-ଅଧ୍ୟାପକ
ମାନ୍ଦ୍ରାଜରୁ ବଙ୍ଗଳାକୁ ବିଜ୍ଞାନ ଶିକ୍ଷକ
ହୋଇ ଆସିଥିଲେ—ନର୍ସ୍, ପାଞ୍ଚବର୍ଷ ବେଳେ,
ଯାଉଁ ନିମନ୍ତ୍ରଣ ଲଭି ଅନ୍ୟ ବନ୍ଧୁ ମେଳେ
କଲିକତା ବିଦ୍ୟାପୀଠ କନଭୋକେଶନେ,
ପିତା ମଲେ ସନ୍ନ୍ୟାସକ ଗୁଳି ନିକ୍ଷେପଣେ ।

ଆମେରିକ ବନ୍ଧୁ ଏକ ଢେନ ପରିଣୟେ
ମାଆଙ୍କୁ ବାଁଧିବ ହେଲେ ଶପଥ ସମୟେ ।
ଆସିଲା ସେ ଆମେରିକା; ବଢ଼ିଛି ସେଠାରେ
ଇଣ୍ଡିଆ-ସମ୍ପର୍କ ତାର କରୁଣ-ପ୍ରକାରେ ।
ବିଶ୍ୱବ୍ୟାପୀ ରେଭ୍‌ହସ୍ ପୁଣ୍ୟ ଆନ୍ଦୋଳନେ
ଦେଇଛି ସେ ଯୋଗ । ଅଛି କଳ୍ପ ତାର ମନେ
ନିଜେ ଯିବ ଇଣ୍ଡିଆକୁ । ଖ୍ରୀଷ୍ଟ ନାମ ସ୍ମରି
ଯେଉଁ ମାଟି ତା'ର ପିତୃ-ଅସ୍ଥି ଅଛି ଧରି
ସେ ମାଟିରେ ପିତାଙ୍କର କାମ ଆରମ୍ଭିବ
ତା ହିଁ କରି ପିତାଙ୍କର ଆତ୍ମାକୁ ତୋଷିବ ।'
କହୁ କହୁ ନସ—ନେତ୍ର ହୁଅଇ ସଜଳ,
କରୁଣାର ନେତ୍ର ମଧ ହୁଏ ଛଳ ଛଳ;
ଚିତ୍ତ ଫେରେ ଅତୀତକୁ ବିଂଶବର୍ଷ ତଳେ
ଯାହା ଯାହା ଘଟିଥିଲା କଞ୍ଚା ବୟସରେ,
ମନେପଡ଼େ ଭୟାବହ କନଭୋକେସନ,
ମନେପଡ଼େ ପାଦ୍ରୀ-ଦସ୍ୟୁ ଚିତ୍କାର ଗର୍ଜନ,
ତା'ପରେ ଆରେଷ୍ଟ, ଦୀର୍ଘ କାରାବାସ କାଳ
ଦୁଃଖେ ହେବା ପିତାମାତା ଇହଧାମୁଁ ପାର ।
ଓ୍ୱାଟସନ୍ ହି ଏକ ପିତା;—କନ୍ୟା ଠିଆ ଆଗେ,
ନେତ୍ରୁ ତାର ନୀର ଝରେ ପିତୃ-ଅନୁରାଗେ,
ନିର୍ଦ୍ଦୋଷ, ଧାର୍ମିକ, ଭକ୍ତ, ନର-ସେବାକାଙ୍କ୍ଷୀ,
କି ମିଳିଛି ଏହି ଖ୍ରୀଷ୍ଟ ପୁରୋହିତେ ମାରି ?
କେ ଇଂରେଜ ଦେଲା ତା ର ବାପେ ଅପମାନ
କାହାର ବାପାକୁ ମାରି ଲା ସେ ମାନ ?

ଦୁଇ ବାପ  ସ୍ୱର୍ଗ-ପୁରେ, ନିଶ୍ଚିନ୍ତ ଉଭୟେ,
ସ୍ନେହ-ଉତ୍ସ ନାହିଁ କେଉଁ ପିତାର ହୃଦୟେ ?
କନ୍ୟା ହୋଇ ମଗ୍ନଇଛି ଆରେକ ପିତାରେ
କରୁଣାର ଚିତ୍ତ ପୂରେ ଲଜ୍ଜା ଓ ବ୍ୟଥାରେ ।
ମିସ୍ ଓ୍ୱାଟସନ୍ ପ୍ରତି ଭଗିନୀର ସ୍ନେହ
ଆସି ଅବ୍ୟକ୍ତରେ ଥରେ କରୁଣାର ଦେହ ।
ବାହାରେ ପ୍ରକାଶେ ଖାଲି – 'ମିସ୍ ଓ୍ୱାଟସନ୍
ମୋ ଉପରେ ରହୁ ତବ ଇଣ୍ଡିଆ ଗମନ ।
ରେଡ଼୍‌କ୍ରସ ସୋସାଇଟି ସଭ୍ୟ ମତେ କର
ଆଜିଠାରୁ ହେଲ ତମେ ଭଗିନୀ ମୋହର ।'

କମଳ କରୁଣା ଦୁହେଁ ଦୁଇ ଏକ କ୍ଲବେ
ସଭ୍ୟ ହେଉଁ କ୍ରମେ ସଖ୍ୟ, ପୀରତି ସମ୍ଭବେ
ବହୁ ନର ନାରୀ ସାଥେ ବହୁତ ଦେଶର;
ସବୁଠାରୁ ସାର୍ବଭୌମ ନ୍ୟୁୟର୍କ ନଗର ।
ଆଫ୍ରିଦୀ, ଆଫ୍ରିକ, ଫ୍ରେଞ୍ଚ, ଚୀନ, ଜରମାନ
ନିଗ୍ରୋ, ସ୍ପାନଆର୍ଡ଼, ଗ୍ରୀକ୍, ରେଡ଼୍ ଇଣ୍ଡିଆନ
ଭିନ୍ନ ଭିନ୍ନ ଉପବନୁଁ ପୁଷ୍ପ ସଂଗୃହୀତ
ହୋଇ ଯେହ୍ନେ ହୁଏ ରମ୍ୟମାଳା ବିରଚିତ,
ତେସନେ ଏ ଭିନ୍ନ ଦେଶୀ, ଭିନ୍ନଧର୍ମା ନରେ
ନୂତନ ସୂତ୍ରରେ ଗୁଁଥା ନ୍ୟୁୟର୍କ ନଗରେ ।
ମାନବିକ ସାମ୍ୟ, ମୈତ୍ରୀ, ସେ ଦୃଢ଼ ସୂତ୍ରର
ଦୁଇ ଖିଅ, — ତଳେ ନର, ଉପରେ ଈଶ୍ୱର ।

ସମଗ୍ରେ ମାନବ ମୁକ୍ତ, ମୁକ୍ତତର ନାରୀ
ଶାସ୍ତ୍ର ସମାଜର ଭୟ ଯାଇଛି ବାହାରି ।

ନ୍ୟୁୟର୍କରେ ଯାବ-ଜମାନ ଜୀବନ । ନିଗ୍ରୋ ଆର୍ଟିଷ୍ଟ ଓ ସ୍ଥାନୀୟ କବି

କରୁଣାରେ ପୁଛେ ଦିନେ କମଳ ଗପରେ
ଦେଖ କି ପ୍ରଭେଦ ନିଜ ଦେଶ, ଏ ଦେଶରେ ?
କହଇ କରୁଣା, "ଭିନ୍ନ, ମୂଲ୍ୟ ମଥାଯାଏ,
ମାନବଙ୍କ ଭିନ୍ନତା ହିଁ ପ୍ରଧାନ ଦେଖାଏ ।
ଭାରତରେ ଛନ୍ତି ହିନ୍ଦୁ, ଜୈନ, ମୁସଲ୍‌ମାନ
ବଙ୍ଗାଳୀ, ଓଡ଼ିଆ, ଶୁଦ୍ର, ବ୍ରାହ୍ମଣ ଖ୍ରୀଷ୍ଟାନ;
ମନୁଷ୍ୟ ହିଁ ଛନ୍ତି ଆମେରିକା, ଇଂଲଣ୍ଡରେ
ନରତ୍ୱ ହିଁ ଆଗ କଥା, ଭିନ୍ନତା ପଛରେ ।"

ଦୁହିଙ୍କର ସେଠେ ଥିଲେ ବାନ୍ଧବ ବାନ୍ଧବୀ—
ଦୁଇଟି ପ୍ରଧାନ ତହିଁ—ଜଣେ ଆଙ୍କେ ଛବି—
କୃଷ୍ଣଚର୍ମ ଆଫ୍ରିକୀୟ । କବି ଅନ୍ୟ ଜଣେ
ଜନ୍ମ ତାର ଇକ୍ୱେଟରେ ଆମାଜନ-ବଣେ ।
ନିଗ୍ରୋ ବନ୍ଧୁ ଗୀତପ୍ରିୟ, କବି ନୃତ୍ୟ-ପଟୁ,
ଉଭୟଙ୍କୁ ଉଖାରିଛି ଆର୍ଥିକ ସଙ୍କଟୁ
କମଳ ତା' କ୍ଷୁଦ୍ରଦାନେ । କରୁଣାର ଛବି
ଆଙ୍କିଛି ଆର୍ଟିଷ୍ଟ ବସି, ସ୍ପାନିୟାର୍ଡ଼ କବି
ଦମ୍ପତିଙ୍କ ଲକ୍ଷ୍ୟ କରି ଲେଖିଛି ସନେଟ୍
କ୍ଲବେ, ଘରେ ତିନିଙ୍କର ପ୍ରାୟ ହୁଏ ଭେଟ ।
କବି ଦିନେ ଦିନେ ଆସି ସ୍ପାନିସ ରନ୍ଧନ
କରୁଣାରେ ଦିଏ କହି,—ଭୋଗ୍ୟ-ଆସ୍ୱାଦନ ।

କନ୍ୟା ପାଏ ବନ୍ଧୁବର୍ଗ ମିଳିତ ଆଦର
ନିଶ୍ଚିନ୍ତ ସେ ପାଇ ସ୍ନେହ ବିଭିନ୍ନ ଦେଶର;
ସମଗ୍ର ପୃଥିବୀ ସହ ଯୋଗ-ସୂତ୍ର ପାଇଁ
ଦେଇଛନ୍ତି 'ବିଶ୍ୱ-ମିତ୍ରା' ତା' ନାମ ରଖାଇ ।

ନଉପୂର୍ବେ ତିନ ବର୍ଷ କଟାଇଲା ପରେ
ଭାବୁଛନ୍ତି ଦୁହେଁଯାକ ଫେରିବାକୁ ଘରେ,
ହିଷ୍ଟାସ୍ନୁ ପୃଥିବୀ ଯୁଦ୍ଧ-ବାରୁଦର ମେଘ
ଉଠି ନଭେ ସୃଜେ ବିଶ୍ୱେ ମହା ଉଦ୍‌ବେଗ ।
ଏଥିଅପି, ଚୀନ୍ ଆଉ ଚେକୋସ୍ଲୋଭାକିଆ
ଆକ୍ରମିତ ହେଲେ ଢେନ ସାମାନ୍ୟ କଜଆ,
ଫାସିଷ୍ଟ ଆକ୍ରମଣ ଦୁର୍ବଳ, ନିରପେଧ ଏନ୍ସ ଦେଶଜନେ
ଫଳରେ ମହାଯୁଦ୍ଧର ଦୁର୍ଦ୍ଧାନ୍ତ ଫାସିଷ୍ଟ ଶକ୍ତିବର୍ଗ ଆକ୍ରମଣେ
ଆରମ୍ଭ ଯାଆନ୍ତି ଉଚ୍ଛନ୍ନ, ହେଗି ଅଶେଷ କଷଣ
ସଭ୍ୟତାକୁ ଧ୍ୱଂସ କରେ ବୋମା-ବରଷଣ ।
କୁଟାପରି ପୋଡ଼ିଯାଏ ନଗର ଓ ପଲ୍ଲୀ
ଦୁର୍ମଦ ଫାସିଷ୍ଟ ତାହା ବର୍ଣ୍ଣେ କାବ୍ୟ ପରି ।
ଆକ୍ରମିତ ଜାତିପାଇଁ ଯେତେ ଚେଷ୍ଟା ଯହିଁ
କମଳ କରୁଣା ଦୁହେଁ ନିଶ୍ଚେ ଥିବେ ରହି ।
ଲେଖା ଲେଖି, ବୋଲା ବୋଲି, ଅର୍ଥର ସଂଗ୍ରହ
ସବୁଥିରେ ଦୁହିଁଙ୍କର ସମ୍ପର୍କ, ଆଗ୍ରହ ।
ଦେଖୁ ଦେଖୁ ଯୁଦ୍ଧ ବ୍ୟାପେ ସମଗ୍ର ବିଶ୍ୱରେ
ଜାପାନର ବଞ୍ଚକତା ପୂର୍ବଏ ସମରେ

ଯୁକ୍ତରାଷ୍ଟ୍ର, ତେତେଣେ ମିଶେଣେ ମହା ସୋଭିଏଟ୍
ରଣାଙ୍ଗନେ ହୁଏ ଯେହ୍ନେ ଦେବାସୁର ଭେଟ ।
ଜଳେ, ଜଳତଳେ, ଭୂମେ, ପୁଣି ବହାପୁସେ
ସର୍ବ ସଂଗ୍ରାମ,—ସବୁଠାରେ ଧ୍ୱଂସ ହସେ
ସ୍ମୃତିରେ ଚାଞ୍ଚଲ୍ୟକର ବିଭୀଷିକାମୟ,
ମାନବ ସଭ୍ୟତା ହୁଏ ଚଞ୍ଚଳ, ଅଥୟ ।
ଦେଶେ ଦେଶେ ଗୁଳୁଅଛି ତରୁଣ ସଗ୍ରହ
ହେବେ ବଳି; ମୃତ୍ୟୁ, ଜିହ୍ୱା କରେ ଲହ ଲହ ।
ଲକ୍ଷମାଏ ଲଗିଛନ୍ତି କରିବେ ବାହାର
ଅଧିକୁ ଅଧିକେ ଯାହା ମନୁଷ୍ୟ ସଂହାର
କରିବ ସେ ଅନୁମାନ । ଦେଶ ଦେଶ ଯାକ
ଭୋଗୁଛନ୍ତି ଜନୁପରି ଦୁର୍ଭିକ୍ଷ-ବିପାକ ।

ଭାରତ କଂଗ୍ରେସ ଦାବୀକରୁଁ ସ୍ୱାଧୀନତା
ଚର୍ଚ୍ଚିଲ ସାମ୍ରାଜ୍ୟଲପ୍‌ସୁ, ଦିଏ ଉତ୍ତର ତା'
—ନେହରୁ ଗାନ୍ଧିଜୀ ଆଦି ନେତାଙ୍କୁ ପଗଡ଼ି,
**ଭାରତୀୟ କଂଗ୍ରେସର** ଏମାନେ ଫାସିଷ୍ଟ ବନ୍ଧୁ ବୋଲି ପାଟିକରି ।
**ଯୁଦ୍ଧରେ ଅସହଯୋଗ** ସମଗ୍ର ଭାରତ ଉଠେ ଇଂରେଜ ବିଦ୍ରୋହେ,
କମଳର ଶତ୍ରୁ ମଧ୍ୟ ପୁରି ଉଠେ କୋହେ ।
କରୁଣା ଅନ୍ତରେ ପୁଣି ହୁଏ ଉଜ୍ଜୀବିତ
ପୂର୍ବ ସନ୍ନ୍ୟାସକ ଭାବ, ଇଂରେଜର ପିତ୍ତ

ନିଷ୍କାସିବ ଗୁଳି କରି,—ଇଂରେଜ ତା' ଅରି,
ସେ ଗୃହେ ଇଣ୍ଡିଆ ଥିବ କ୍ରୀତଦାସ ପରି ।
ଯୁଦ୍ଧରେ ସାହାଯ୍ୟ ଅର୍ଥ ଇଂରେଜେ ସାହାଯ୍ୟ,
ସାହାଯ୍ୟ ମାଗନ୍ତି ତେଣେ ଆକ୍ରମିତ ରାଜ୍ୟ ।
ଦ୍ୱିଧା-ବିଚଳିତ-ଚିତ୍ତ କଙ୍ଗ୍ରେସ ଯାଏଁ
ଠିକ୍ ନ ପାରନ୍ତି କରି । କମଳ ଶୁଣାଏ
ଜନେ ବନ୍ଧୁ ଚନ୍ଦ୍ରାକରି—'କେବଳ ଦର୍ଶନ
କରିବା ମଉନେ ମାନବର ନିର୍ଯ୍ୟାତନ
ନିଜ ଲାଭ-କ୍ଷତି ସ୍ମରି, ଅମାନୁଷିକତା,
ତର୍କେ କି ଜାଣିବ କେବେ ମାନବର ବ୍ୟଥା ?
କାଣ୍ଟନର ପଥପ୍ରାନ୍ତେ ବାଳିକା ଅନାଥ
କାନ୍ଦେ-ବସି, ବିକ୍ଷତ ତା ପଦ, ମୁଖ, ହାତ
ଜାପାନି ବୋମାର ଅଂଶେ; କେହି ନାହିଁ ତାର—
ବୋମାରେ ଯାଇଛି ତାର କୁଟୁମ୍ବ, ସଂସାର ।
ତା କାରୁଣ୍ୟ ବୁଝିବ କି ରାଜନୀତି-ଫର୍ଦ୍ଦ
ଇତିହାସ ଭୂଗୋଳର ସୀମା, ସରହଦ ?
ଦେଶ, ଜାତି, ଧର୍ମ ଡେଇଁ ମାନବ ହୃଦୟ
ମାନବିକ ସେବାପାଇଁ ଉଚିତ ନୁହେଁ କି ହେବା ତାହାରେ ସଦୟ ?
କରୁଣା-କମଳର ଦେଶରୁ ମାନବ ବଡ଼; ମାନବର ଦୁଃଖ
ଯୁଦ୍ଧରେ ଯୋଗଦାନ ଡାକୁଛି ଆଶ୍ରୟ ପାଇଁ ହୋଇ ଲକ୍ଷ-ମୁଖ ।
ସଂଗ୍ରାମର ଦୁଇ ପକ୍ଷେ ମାନବ-ବେଦନା
ଅଧିକୁ ଅଧିକ ହେଉଥିବା ସତ୍ତେ ଜଣା ।
ଦୁହେଁ ଚାଲ ସେବାକାର୍ଯ୍ୟେ ଦେବା ଯୋଗଦାନ
ଭୁଲିଯାଇ ଏ ମୁହୂର୍ତ୍ତେ ଦେଶର ସମ୍ମାନ ।'

ଦୁହେଁ ଦେଲେ ଯୋଗ ଯୁଝେ; ତିଆଗେ କମଳ
ପ୍ରତିଭୂଦ୍ୱ ଭାରତସ୍ଥ ସଂବାଦପତ୍ରର ।
ସେବାକର୍ମେ ଦୁହେଁ ପଠା ହୁଅନ୍ତ ସ୍ଥଇନେ
'ମିସା'କୁ କୋଳାନ୍ତ ଯେତେ ଇଆଙ୍କି ସଇନେ ।

# ଦଶମ ସର୍ଗ

## ଜନ୍ମ ମାଟି

ଛଅ ବର୍ଷ ବ୍ୟାପୀ ଘୋର ପୃଥିବୀ-ସମରେ
ଶେଷେ ଏକ ଅଣୁ ଘେନ ପୂର୍ଣ୍ଣଚ୍ଛେଦ ପଡ଼େ ।
ବିଶ୍ୱଜୟୀ ସିକନ୍ଦର ଗଣ୍ଠି- କବଳତ
ହେଲାପରି ଏ ବ୍ୟାପାର ଅଦ୍ଭୁତ ପ୍ରଶମିତ ।
ଶିବାଶିଷୁଁ ଜାତ ହୋଇ ଯେମନ୍ତେ ଭସ୍ମାସୁର
ଧାଏଁ ପୁରେ ପୁରେ ଛୁଇଁବାକୁ ଶିବ-ଚୂଳ,
ତେସନେ ବିଜ୍ଞାନ ଏହି ମନୁଷ୍ୟ-ସୃଜିତ
ଭୂତ ପରି ମନୁଷ୍ୟଙ୍କୁ କରେ ଆତଙ୍କିତ ।
ଅନ୍ତରେ ରହିଛନ୍ତି ନର, ଶିଶୁ ଅସଞ୍ଜାତ,
ସଭ୍ୟତାଟା ଥିଏଟରେ ରାଜ-ବେଶବତ
ଘନ ଅଭିନେତୃ ଅଙ୍ଗେ; ବାସ୍ତବ କ୍ଷେତ୍ରରେ
ତେଣୁ ସଭ୍ୟତାର ମୁଖା ଫିଙ୍ଗି ଦେଇ ନରେ
ଶିଶୁ ପରି ଲଢ଼ୁଛନ୍ତି ଗୋଡ଼ ମାଟି ପାଇଁ,
ବିଜ୍ଞାନ ଦେଉଛି ତାଙ୍କୁ ଫୋପଡ଼ ଯୋଗାଇ ।
କେ ଜାଣେ ଧରାର·ଏହି କ୍ଷୁବ୍ଧ ଶଇଶବ
ଯୁଦ୍ଧାବସାନ କଟି ହେବ ସଭ୍ୟତାର ଯୌବନ ଆରମ୍ଭ,
ଯେବେ ନର ନାଶି ଖାଲି ଭୁଂଜିବେ ଏ ଧରା
ବିଜ୍ଞାନ ଥୋଇବ ଖାଲି ଉପସ୍କର ପରି !
ବିଜ୍ଞାନ କରଇ କିନ୍ତୁ ମନୁଷ୍ୟେ ଅଜ୍ଞାନ
ନିଜ ଶକ୍ତି ଅହଙ୍କାରେ ଭୁଲେ ସେ ମହାନ

ଯେ ଶକ୍ତି ରହିଛି ପୃଥ୍ୱୀ ରେଣୁ ରଜ ଯାଏ
କାଠୁଁ ବିଶ୍ୱ ବ୍ରହ୍ମାଣ୍ଡକୁ ଯେ ଶକ୍ତି ବାଁଧୁଏ ।
ନଦେଲେ ତାହାକୁ କୃତଜ୍ଞର ନମସ୍କାର
ଭୁଷୁଡ଼ିବ ମୂଳ-ସ୍ଥାନ ନର ଅହଂକାର ।

ବହୁ ବର୍ଷ ଦୁଇ ବନ୍ଧୁ ରହି ପ୍ରବାସରେ
କମଳ କରୁଣା ଏବେ ଫେରନ୍ତି ସ୍ୱଘରେ ।
କମଳର ବେଶଭୂଷା, ଚିନ୍ତା, ଦେହ, ମନ
ଅନେକ ହୋଇଛି ବୈଦେଶିକ ଭାବାପନ୍ନ ।
ନାହିଁ ପୂର୍ବ ମୁହଁ-ଚୋରା ନିସାହ କମଳ
ଯୁଦ୍ଧ କରିଅଛି ବହୁ ଅଦଳ ବଦଳ ।
ସେ ଏବେ ପ୍ରଚୁର କ୍ଷିପ୍ର, ଇଉରୋପ ବେଶୀ
ସୁନ୍ଦର ଇଂରାଜି କହେ, ତୈଳଶୂନ୍ୟକେଶୀ ।
ଅନ୍ତରରେ ଦୁହିଁଙ୍କର ଆଦର୍ଶ ବଦଳ
ଦେଶର ନୁହନ୍ତି ଆଜ; ସମଗ୍ର ବିଶ୍ୱର ।
ସବୁ ଜାତି ସବୁ ଦେଶେ ଅଛନ୍ତି ବାନ୍ଧବେ
ସମଗ୍ର ଧରାର ବ୍ୟଥା ହୃଦ ଅନୁଭବେ ।
କମଳ କରୁଣାର — ଗୁଇନାରେ ଶତ ଶତ ଯୁଦ୍ଧ ଶିଶୁଙ୍କର
ବିଶ୍ୱ-ମାନବିକତା — ମାତା ହୋଇ କରୁଣାର କୋମଳ ଅନ୍ତର
ଭାରତ ଗୁଡ଼ି — ଲଭିଛି ପ୍ରସାର, କ୍ଷୁଦ୍ର ଦେଶ, ଗୋଷ୍ଠୀ ଭାଙ୍ଗି
ଯିବାର ପ୍ରସ୍ତାବ — ଦେଶ-ଅନୁରାଗୀ ନୋହି, ଜନ-ଅନୁରାଗୀ ।
ଭାବୁଛନ୍ତି କିଛି କାଳ ରହି ସ୍ୱଦେଶରେ
ପୁଣି ଯିବେ କନ୍ୟା ସାଥେ ଦୂର ଦୂରାନ୍ତରେ

ଚର୍ମ-ନିର୍ବିଶେଷେ ଦୁଃଖ ନେବେ ମାନବର
କନ୍ୟାକୁ କରିବେ ଯେଉଁ ଯୋଗ୍ୟା ତା' ନାମର ।
ଘରଚରେ ପୂର୍ବ ପର ଲଗିଛୁ ତାମସା;
କ୍ଷୀଣ ଗାନ୍ଧି ଓଷ୍ଠୁ ଫୁଟେ * ପ୍ରଫେଟର ଭାଷା
ସତ୍ୟ, ପ୍ରେମ, ବିଶୁଦ୍ଧତା ଅହିଂସା ପ୍ରଭୃତି,,
କଂଗ୍ରେସ ଗ୍ରହଣ କରେ ମସ୍ତକ ଟେକାରି,
ଗାନ୍ଧିନେତ୍ର ପଡ଼େ, କଳୁ, ଖଦି ବସ୍ତ୍ର ଚଳେ
ସମସ୍ତ ଭଣ୍ଡାମି, ମିଥ୍ୟା, ଅତ୍ୟାଚାର ଟଳେ ।
କମଳ ଭାବଇ, ଖାଲି ଖଟିଲେ ଜହଲ
ଆଶା ହୁଏ ଯଦି ଶଠ ହୋଇବାର ଭଲ,
ସବୁଠୁଁ ନମସ୍ୟ ହେବେ ସର୍କସର ପ୍ରାଣୀ
କାରବାସ ତାଙ୍କ ସାର ଜୀବନଟା ଜାଣି ।
ଦେବତ୍ଵ ଫୁଟଇ ଯେବେ ଲଙ୍ଠିର ପ୍ରହାରେ
ଦେବତା ଅଛନ୍ତି ବନ୍ଧା ଗୁହାଳେ ଗୁହାଳେ ।
ଯା'କଛି ଭାରତେ ହୋଇଅଛି ଜାଗରଣ
ତା କେବଳ ଜଣକର ଅଦ୍ଭୁତ ସାଧନ,
ଅଟେ ସେ ଈଶ୍ଵର-ପୁତ୍ର ମାନବ-ଶିକ୍ଷକ,
ସଭ୍ୟତାର ଅନ୍ଧକାରେ ପ୍ରଦୀପ-ରକ୍ଷକ,
ସେଣୁ ସେ ମହାତ୍ମା ଗାନ୍ଧି ପତିତ ପାବନ
ପତିତ ଭାରତେ ଦେଇଅଛି ଜାଗରଣ ।
ମାତ୍ର ନବ ବର୍ଷା ଧାରା, ନବ ଶସ୍ୟ ସାଥେ
କୋଟି କୋଟି ଘୃଣ୍ୟ କୀଟ ବଢ଼ଲେ, ଗଛେ, ବାଟେ

---

* ପ୍ରଫେଟ୍—ଇଂରାଜି ଶବ୍ଦ । ଅର୍ଥ—ଋଷୀ, ଭବିଷ୍ୟଦ୍ରଷ୍ଟା ।

ଦେଶ ଓ ବିଶ୍ୱ; ଜାତି କଲି ପଣ, ଦେଶେ ଗାନ୍ଧି-ଆନ୍ଦୋଳନ
ହିଂସା ଓ ଅହିଂସା, ଜାତି-ଜାଗରଣ ସଙ୍ଗେ କରିଛି ସୃଜନ
ଜେନେରାଲ ମର୍ଫି ଛଦ୍ମ-ମୁଖ, ଖଦଡ଼ିତ କର୍ମୀଙ୍କର ଥାଟ
ରାଜମାତି ହେଲା ଯାଙ୍କ ଜୀବିକା ଏକାନ୍ତ ।
ତ୍ୟାଗର ପତାକା ଉଡ଼ୁଅଛି ସମ୍ମୁଖରେ
ଧନ, ଅଧିକାର ନିଆଁ ଜଳଇ ଅନ୍ତରେ ।
କମଳ ଭାବଇ ପୁଣି—ଏସ୍ନାଇ ତ ଘଟେ,
ଶିଷ୍ୟଙ୍କର ଅପକର୍ମେ ମରନ୍ତି ପ୍ରଫେଟେ ।
ମନେପଡ଼େ ଜେନେରାଲ୍ ମର୍ଫିଂ ରୂଇନାରେ,
ନିଉଜିଲାଣ୍ଡର ଲୋକ,—ସତ୍ୟ, ସାଧୁତାରେ;
ହିରାଟ କଂଗ୍ରେସେ ତାଙ୍କ ନାହିଁ ପଟାନ୍ତର
ପଦ୍ମ ବା ହାତରେ ତାଙ୍କ ସଦା ଶଭଲ୍‌ଭର ।
ଏକାନ୍ତ ନିରାମିଷାଷୀ, ଧର୍ମପରାୟଣ
ଦିନର ପ୍ରଥମ କର୍ମ ଈଶ୍ୱର ଭଜନ;
ଶ୍ରମେ ତାଙ୍କ କ୍ଳାନ୍ତି ନାହିଁ, କର୍ତ୍ତବ୍ୟ ହିଁ ଧର୍ମ
ସୁକଠୋର ଡିସିପ୍ଲିନ୍, ସୁକୋମଳ ମର୍ମ ।
ଗୀତା ସୁପଠିତ, ବାଇବେଲ ପକେଟରେ
ଥାଏ ତାଙ୍କ ସଖା ରୂପେ ଘରେ ବା ସମରେ ।
ହିବାହ ନାହାନ୍ତି କରି—ବୃଦ୍ଧା ମାତା କାଳେ
ଅନାଦୃତା ହେବ ବୋଲି ବଧୂର ସଂସାରେ ।
ଶୁକ୍ଳକେଶ ହେଲେ ଆସି ମାତା ସୌଖ୍ୟ ପାଇଁ,
କେତେଜଣ କରିବେ ଏ ତ୍ୟାଗର ବଡ଼ାଇ ?
ବହୁ ଦିନ, ବହୁ ରାତି କଟାଇ କମଳ
ତାଙ୍କ ସଙ୍ଗେ, ଭାଗୀ ହୋଇ ତାଙ୍କ ବନ୍ଧୁତ୍ୱର,

ଭୁଲଅଛି ହଂସା ଅହଂସାର ବ୍ୟବଧାନ,
ଘୃଣ୍ୟ ତାହା, ପ୍ରତାରଣା ଯହିଁ ପାଏ ସ୍ଥାନ ।
ହଂସାରେ ତା ସ୍ଥାନ ନାହିଁ, ଅଛୁ ଅହଂସାରେ,
ପ୍ରତାରଣା ଉପରେ କ ରାଷ୍ଟ୍ର ଚଳପାରେ ?
ଏହିପରି ନାନା କଥା ଭାବି ମନେ ମନେ
ବସୁରନ୍ତି ପୁଣି ବାହାରବେ ବା ଭ୍ରମଣେ,
ପ୍ରବାସେ କରବେ ଘର, ବଦେଶୀ କ ଭାଇ,
ପ୍ରାଣ ଦେବେ ବସୁଧାକୁ ଜନ୍ମମାଟି ଧାଯ୍ଁ ।
ଏ ସମୟେ ପତ୍ର ଏକ ହୁଏ ହସ୍ତଗତ
ଓଲଟାଇ ଦଏ ତାଙ୍କ ପ୍ରସ୍ତାବ ସମସ୍ତ ।

ଗାଆଁର ମାଲତୀ ନାନାର ପତ୍ର । ବର୍ତ୍ତମାନବୀକତାରୁ ଜନ୍ମମାଟିକୁ ପ୍ରତ୍ୟାବର୍ତ୍ତନ

ବହୁ ସ୍ଥାନ ଦୂର ଦୂର ଆସିଅଛୁନ୍ତି ପତ୍ର
ଲଫାପାରେ ଡାକ-ଚହ୍ନ ମସି ଯତ୍ର ତତ୍ର ।
ନାରୀ ହସ୍ତାଙ୍କିତ ପତ୍ର—"କମଳ ଭାଇନା,
ଜାଣେ ନାହିଁ ତମର ମୁଁ ମନେ ଅଛୁ କନା ।
ମୁଁଇ ସେ ମାଲତୀ ନାନୀ, ପିଲାବେଳ ସାଥୀ
ଖେଳୁଥିଲେ ଗ୍ରାମ ଦାଣ୍ଡେ ଧୂଳଘର ପାତି ।
ଯାଉଥାଉ ସାଙ୍ଗ ହୋଇ ଗ୍ରାମ ଚଟଶାଳେ
ଛୁଟୀ ହେଲେ ବୁଲୁଥିଲୁ ଗାଆଁ ତୋଟା ମାଳେ ।
ଛୁଞ୍ଚିପତ୍ର-ଦୁଧ ବୋଉ ବାଢ଼ି ନଜ କରେ
ଦୁହିଁଙ୍କୁ ଖୁଆଇଥାଏ ଏକ ବାସନରେ ।
ଏକ୍ଷଣି ଚଇତ୍ର ମାସ, କଂଚ୍ଚ ଆମ୍ବ, ଗଛେ—
ଲୁଚ ଖଇବେଳେ ସେବେ—କେ ଦେଖିବ ପଛେ—
ତୋଟାରୁ ତୋଟାରେ ପଶୁଁ, ଡେଇଁ କଣ୍ଟା ବାଡ଼;
ମତେ ଦେଇଥାଅ ଘରୁ ଲୁଣ ନେବା ଭାର ।

ଲୁଣ ଯେନ ଖଟା ଆମ୍ବ, ଖାଉଁ ମହାନନ୍ଦେ,
ବତ୍ସର ବୁଲଇ ପୁଣି ଚଉର୍ଯ୍ୟ ସମ୍ବନ୍ଧେ
ଆଗାମୀ ମଧ୍ୟାହ୍ନକାଳେ । କମଳ ଭାଇନା
କାଲି ପରି ଲାଗେ ସବୁ, ମନେ ଅଛି କି ନା
ତମର ସେ ସବୁ କଥା—ବଡ଼ ଲୋକ ଘରେ
ବାହା ହେଲ; ବୁଲିଗଲ ଦେଶ ଦେଶାନ୍ତରେ,
ବଡ଼ଲୋକ ତମେ ଏବେ, ଗାହିଁଲି ମନଷ
ଆମ ପରି ତମ ଆଗେ ହେବେ କି ଦରଶ ?
ହେଉଁ ଅଛ ରୋଗଗ୍ରସ୍ତ, ଅତି ନିସ୍ବାଶ୍ରିକ
ନାହିଁ ଜାଣି କା' ଆଗରେ ମାଗିବି ମୁଁ ଭିଖ,
କହିବାରୁ ତମ ନାମ ଗ୍ରାମେ କେତେଜଣ
ସରମରେ କରୁଛନ୍ତି ମୋ ଚରିତ୍ର ବର୍ଣ୍ଣନ
ତମ ଆଗେ ଏ ପସରେ । ସେଦିନ ମାଳତୀ
ନାହିଁଛି ଭାଇନା ଆଉ; ବାପର ସମ୍ପତ୍ତି
ତମକୁ ଅଜଣା ନାହିଁ; ଧନ ଦେଖି ନନା
ଦେଇଥିଲେ ବାହା ମତେ—ଭାଗ୍ୟ ତ ମୋ କଣା,
ଏକପାଖେ ସୁଖ ଆସି ଅନ୍ୟେ ବନ୍ଧୁଯାଏ;
କେତେ ଦିନ ଅଭାଗିନୀ ସ୍ବାମୀ ସୁଖ ପାଏ ?
ଝିଅ ମୋର ଗର୍ଭେ ଅଛି ସ୍ବାମୀ ଗଲେ ଛାଡ଼ି
ବରଷକେ ଭାଇମାନେ ହେଲେ ବାଡ଼ା ବାଡ଼ି ।
ମତେ କେ ରଖିବ ଆଉ ? ବିଳପି ବିଳପି
ଆସିଲି ମୁଁ ବାପଘରେ ଦୁର୍ଗା ନାମ ଜପି ।
ନନା ବଂଚ ଥିଲା ପାଏଁ ଯାଉଥିଲା ଚଳି,
ନନା ତ ମଲେଣି, ଘର୍ଘ ପାଁଚ ବର୍ଷ ଧରି,

ଭଇ ଭଉଜର ଢର,—ଜାଣରେ ମୋ ବନ୍ଧା
ଝିଅ ପୁଣି; କରୁଥିଲି ଯାହା କାମ ଧନ୍ଦା,
ଫିଙ୍ଗାଉ ନ ଥିଲେ କେହ୍ବ ମୁଖ ଜୋର କରି,
ବର୍ଷେ ହେଲା ବାତ ରୋଗ ଗ୍ରାସେ ଜାକଚରି,
କାମ ନାହିଁ ତାରେ କରି—ରୋଗରେ ଯନ୍ତ୍ରଣା:
ବସାଇ କରିବ କିଏ ଦୁହିଁଙ୍କ ଅର୍ଚ୍ଚନା ?
ସେଦିନର ସୁକୁମାରୀ ମାଳତୀ ଭଉଣୀ
ଆଜ ଅନ୍ୟ ପିଣ୍ଡାତଳେ କାନ୍ଦେ ଦୁଃଖ ଗୁଣି,
ଆଜ ସେ ଅବସ୍ଥା ହେଉ ଅତି ଅଲକ୍ଷଣୀ,
ଦଣ୍ଡରୁ ନ ଉଠେ ଯଦି ପ୍ରଚୁର ଲବଣୀ,
ଘରେ କାର ହେଲେ ଜର, ହଜଲେ ବାଛୁରି
ଡାକନୀ ମାଳତୀ ଯୋଗୁଁ ବୋଲି ଚଢ଼େ ହୁରି ।
ଝିଅଟା ମୋ ଖଟି ମରେ, ବଂଚେ ଅଇଁଠାରେ
ବିନା ଦୋଷେ ମାଡ଼ଖାଏ ମୋ'ରି ସାମନାରେ ।
ମୁଁ ତ ଉଠି ନାହିଁ ପାରେ, ମରିବ ଏଥର
ଝିଅପାଇଁ ଖାଲି ମୋର ଲେଖୁଛି ଉତର ।
ତା ପାଇଁ ବ୍ୟବସ୍ଥା ଯଦି କରୁ ପାର କରି
ଆନନ୍ଦେ ମରନ୍ତି ମୁହିଁ ତବ ନାମ ଧରି ।
କେ ଚଣ୍ଡାଳେ ପୋଡ଼ାଇଲେ ତବ ବାସ୍ତୁଭିଟା
ସେଇ ବୋଧେ ଥିଲା ଜଗନ୍ନାଥଙ୍କର ଇଚ୍ଛା,
ତମେ ଗଲେ ବିଦେଶକୁ, ରମା ସୁଖେ ରହେ
ଚଣ୍ଡାଳଙ୍କୁ ସେହିପରି ଦୁଃଖ ଦୈନ୍ୟ ଦହେ ।
ସେତେବେଳେ ଶାଶୁଘରେ—କେତେ ମୁଁ କାନ୍ଦିଲି,
କେମନ୍ତେ ଜାଣିବ ତମେ, ଦୂରେ ତ ମୁଁ ଥିଲି ।

ଗାଆଁକୁ କି ଆସିବନି ? ଦେଖିବୁ ନି ଆମେ
ବୋହୂଙ୍କୁ ତମର, ପୂର୍ବେ ସାଥୀ ସବୁ ଗ୍ରାମେ ?
କିଏ ସିନା କଲା ଦୋଷ, କି ଦୋଷ ଗାଆଁର ?
ଶୁଣୁଛି ମୁଁ କରୁଅଛ ବହୁ ଉପକାର
ବହୁ ଲୋକଙ୍କର, ନିଜ ଗାଆଁ କିବା ଛାଇ
ନ ପାଇବେ ତମଠାରୁ କିଛିହେଁ କପାଇଁ ?
ପଢ଼ୁଛି ମୁଁ ପିଣ୍ଡାତଳେ,—ସତେ ସରସ୍ୱତୀ
କଣ୍ଠେ ତବ ବସେ କରି ବଳାଇବେ ମତି,
ମାଳଣୀ ତମୁକୁ ଥରେ କରିବ ଦର୍ଶନ
ଶେଷ ହେବ ମୋ ଗ୍ରୀଧାର ଅଇଁଠା ଭକ୍ଷଣ ।"

କମଳ ନିବାକ ରହେ ଦୁଇ ଦଣ୍ଡ କାଳ
ପତ୍ର ପଢ଼ି । ବ୍ୟସ୍ତ ପ୍ରଶ୍ନ ସେତେ କରୁଣାର
ମସ୍ତକ ଝୁଂଗାଇ ଖାଲି ମଜନେ ଉତ୍ତରେ
ଶେଷେ ଦିଏ ପତ୍ର ଖଣ୍ଡି କରୁଣାର କରେ ।
ପତ୍ର ପଢ଼ି ମୃଦୁ ହସି କରୁଣା ଭାଷଇ,
'ଏତେ ବ୍ୟସ୍ତ ହେବାର ବା ଏଥି କି ଅଛଇ ?'
କମଳ କହଇ 'ଯିବ ଗ୍ରାମେ, ମୁଁ ବସ୍ତିରେ
କଥା ଅଛୁ ଖାଲି ତମ ମାଆ, ଝିଅଠାରେ ।
ତମେ ବହେଁ ସେଠି ଯାଇ ତଳିବ କପଟ
ସେଇ କଥା ଯତେ ବସି । ବଳୁଆ ପୋଖରୀ—
ସେଇଠାରେ ମାଆ ଝିଅ କରିବ ସ୍ନାହାନ
ଗ୍ରାମ୍ୟ ନାରୀଙ୍କର ଦଳେ । ହେବ ଖାଦ୍ୟ, ପାନ

ଗାଜ୍ଜିଲ ସ୍ୱଭରେ ଯାହା । ମାଟି ଗୃହ ଘରେ
ଶୋଇବ ମସିଣା ପାରି । ସନ୍ଧ୍ୟା ପରେ ପରେ
ଆସିବେ ହୁଙ୍କାର ଆନୋଫିଲସର ଦଳ
ବିଷାକ୍ତ ଦଂଶନେ କରୁଥିବେ କଲବଲ ।
ଜାଣି ଜାଣି ତମ୍ଭୁକୁ ମୁଁ ନେବି ସେଇ ସ୍ଥାନେ ?
ମର୍ମ ତାର,—ନେଇଯିବା ଦୁହିଁଙ୍କୁ ଶ୍ମଶାନେ ।
ତୁମେ ଦୁହେଁ ରହ ଏଥି । ମୁଁ ଯିବି ପଲ୍ଲୀରେ,—
ସେଇ ଶେଷ କର୍ମ-ସ୍ଥାନ । ମୋ ଜନ୍ମ ମାଟିରେ
ବୁଣିବି ମୋ ବିଶ୍ୱ-ପ୍ରଦକ୍ଷିଣ ଅଭିଜ୍ଞତା,
ସହରେ ରହିଲେ ହେବ ଅକୃତଜ୍ଞ କଥା ।
ନିଜ ଦେଶ ଛାଡ଼ି ଯଦି ଯାଉଁ ଦେଶାନ୍ତରେ
ସ୍ୱାଧୀନତା ଦେବା ହେବ ଅପର ହସ୍ତରେ ।
ପଲ୍ଲୀରେ ରହେ ମୋ ଜାତି—ପ୍ରକୃତ ମାଲିକ,
ନାହିଁ ବାସ, ନାହିଁ ଧନ, ଶିକ୍ଷା ବା ପଥି;
ସଭ୍ୟତା ଶୋଷଇ ତାର ଶୋଣିତ ନିରତେ
ସହସ୍ର ଦୁଆର ଦେଇ । ତେଣୁ ଗାନ୍ଧି ମତେ
ଭାରତ-ସ୍ୱରାଜ୍ୟ ଅର୍ଥ ପଲ୍ଲୀ-ସଞ୍ଜୀବନ,
ଅର୍ଥହୀନ ବାକି ଯେତେ ବାକ୍ୟ ଉଚ୍ଚାରଣ ।"

ସେଦିନ ନିଶୀଥେ ଯାଇ କମଳ-ଶୟନେ
କରୁଣା କହଇ କଥା ବିମର୍ଷ ବଦନେ
"ଜୀବନର ଶେଷ ପାଦେ ଏଇ ଅପମାନ,—
ତମର ମୋହର ହେବ ଭିନ୍ନ ଭିନ୍ନ ସ୍ଥାନ !

ଭୁଲିଗଲ ଏକ ସ୍ୱପ୍ନେ ବିଂଶ ବର୍ଷ ତଳେ
କଟକରେ ବାବାଙ୍କର ଗୃହ ସ୍ଥିତ ପରେ,
ଠିକ୍ ଏଇ କଥା କିମ୍ବା ଦେଉଥିଲ ବାଧା;
ପାରିଲ କି ? ସେଦିନର କୋମଳାଙ୍ଗୀ ସୁଧା
ହୋଇଅଛି ବର୍ଷିୟସୀ । ତେଣୁ ଏ କଳ୍ପନା,
ନୁହେଁ କି ଗୋ ?"
ଉଠି ପଡ଼ି, ହୋଇ ବ୍ୟସ୍ତମନା ।
କମଳ ଆଶ୍ଳେଷେ ଯେବେ ପ୍ରିୟ କରୁଣାରେ
ବୋଧି, ନିଜ କରେ ପୋଛେ ତା'ର ଅଶ୍ରୁ ଧାରେ ।

ପ୍ରାୟ ସପ୍ତାହକ ପରେ ହୁଏ ବିଘୋଷିତ,
ଦୁଇ ଲକ୍ଷ ମୁଦ୍ରା କରିଛନ୍ତି ସମର୍ପିତ
ଦୁସ୍ଥର ସେବାପାଇଁ ରକ୍ତ-ଋଣ ପାଶେ
କମଳ-କରୁଣା । ରଖି ଆପଣା ସକାଶେ
କିଛି ସ୍ୱଅର୍ଜିତ—ଗ୍ରାମେ ଚଳିଯିବା ପାଇଁ,
ରେଡ଼କ୍ରସକୁ ଏବଂ ସମ୍ପତ୍ତି ଦାନ
ପୈତୃକ ଧନର କିଛି ଅବଶେଷ ନାହିଁ ।
ଟେଲିଗ୍ରାମେ ଡକାହେଲେ ମିସି ବାଟ୍‌ସନ୍
'ମିନା'ର ସେ କରାଇବେ ପାଠନ, ରକ୍ଷଣ,
ମିସନର କାର୍ଯ୍ୟ ସାଥେ । ମୁମୂର୍ଷୁ ମାଳତୀ
ଦେଖେ ଦିନେ, ଦେବୀ କେମ୍ବ ଦେହ ଆଉଁଷନ୍ତି ।

# ଏକାଦଶ ସର୍ଗ

## ଶେଷ ଦୃଶ୍ୟ

ଗ୍ରାମପ୍ରାନ୍ତେ ନଦୀକୂଳେ 'କରୁଣା-ଆଶ୍ରମ'
କମଳ କରିଛନ୍ତି ଠିଆ; ଯହିଁ ସୁଖା-ଶ୍ରମ,
ଯହିଁ ମୂଢ଼ ଯନ୍ତ୍ର, ଆଉ ହସ୍ତ ମାନବର,
ଯହିଁ ପ୍ରକୃତି ଓ ନର, ପଲ୍ଲୀ ଓ ନଗର,
ଘୁଡ଼ି ପରିଚିତ ପାରସ୍ପରିକ ବିରୋଧ,
ପରସ୍ପର ସହଯୋଗେ କରିଛନ୍ତି ରୋଧ
ପଲ୍ଲୀର ଦୁର୍ଗତି ପଥ, ଦୈନ୍ୟ ଜନତାର;
ପଲ୍ଲୀପଥେ ଲକ୍ଷ୍ମୀ ପୁଣି କରନ୍ତି ବିହାର ।
ଭ୍ରମନ୍ତି ପଦବୀ-ରଣେ ବରେଣ୍ୟ ନେତାଏ,
ନାନା 'ଦଳେ' ଜାତି-ଜନ ଛିନ୍ନ ହୋଇଯାଏ,
ଦେଶରେ କ୍ଷୁଦ୍ର ସ୍ୱାର୍ଥର କଳା ଶିଳ୍ପ ସାମ୍ବତ୍ୟେ ବିପଣେ ଆସି ଦଳ,
ତାଣ୍ଡବ ଲୀଳା । ନାହିଁ କାହିଁ, ଘୋଷେ ହେଲେ ସକଳ ନିର୍ମଳ ।
ରାଜତ୍ୱ କରଇ ଦେଶେ ମିଥ୍ୟା, ମିଥ୍ୟାସୁର
ପ୍ରତିଭା, ମୂର୍ଖକୁ କରେ ଶତ ନମସ୍କାର;
ଦେଶେ ଯେବେ ଚାଲିଅଛି ଏହି ଅଭିନୟ
କମଳ ତପସ୍ୟା କରେ ଅକ୍ଷୁବ୍ଧ-ହୃଦୟ,
ଦୂର ତା'ର ପଲ୍ଲୀକୋଳେ,—ରୋଗ ପ୍ରପୀଡ଼ିତ,
ଖବର କାଗଜୁଁ ଦୂର, ସଭ୍ୟତା-ବର୍ଜିତ,
ଈଶ୍ୱର-ବର୍ଜିତ ସ୍ଥାନେ । ଦୀର୍ଘ ପାଞ୍ଚ ବର୍ଷ
କଟାଇଛି ନୀରବରେ, ନିଜ ଶୋକ, ହର୍ଷ

କମଳର ନୀରବ ସାଧନା ପୀଠ— କରୁଣା କଲୋନୀ ।

ମିଶାଇ ଦୁର୍ଗତ ପଲ୍ଲୀଜନ ସୁଖ-ଶୋକେ
ଆଶ୍ରୟ ସ୍ୱରୂପ ହୋଇ ତାଂକ ରୋଗେ, ଭୋଗେ ।
କରିଅଛୁ ଆସ୍ତେ ଆସ୍ତେ ବିବିଧ ସଂସ୍କାର
ଗୃହେ କରିଅଛୁ ସହଯୋଗର ପ୍ରଚାର,
କୁଟୀରେ ଫେରିଛୁ ଶିଳ୍ପ, ଯାଇଛୁ ଆଳସ୍ୟ
ନିଶା, ନୋହୁ ପ୍ରଭୁ ଗ୍ରାମେ, ହୋଇଅଛୁ ବଶ୍ୟ ।
ହୋଇଅଛୁ ଖୋଲା ଗ୍ରାମେ ଶିଳ୍ପ ବିଦ୍ୟାଳୟ,
ବାଳକ ବାଳିକାଙ୍କର ଅଙ୍କୁର-ନିଚୟ
ଶୈଶବରୁ ଜ୍ଞାନ ସାଥେ କରେ ଧନାର୍ଜନ
ହାତ-ପାଇଟିକ ଘୃଣା ହୋଇଛୁ ବର୍ଜନ ।
ସାରା ଗ୍ରାମ ପରିଷ୍କୃତ, ଆବର୍ଜନା ଯେତେ
ଦୂରେ ଖତ ହୋଇ, ଶସ୍ୟ ବଢ଼ାଉଛୁ ଖେତେ ।
ଶ୍ରାଦ୍ଧେ ବା ବିବାହେ ନାହିଁ ବୃଥା ଅପଚୟ
ପାଖକେ ଆଖଡ଼ା, ପାଖେ ସଂଗୀତ-ମାଳୟ
ସେଇ ଅର୍ଥେ ଠିଆ ଗ୍ରାମେ; ଗ୍ରାମ ଟୋକାଦଳ
କରନ୍ତି ସଙ୍ଗୀତେ, ଖେଳେ ସବନ୍ତ ମୁଖର ।
କୃଷି ସାଥେ ଗ୍ରାମେ ଅନ୍ୟ ଯାହା କାରବାର
ସବୁ ହୁଏ ଯୌଥ ଗୁଣେ; ସୌଖ୍ୟର ପ୍ରସାର
ହୁଏ, ଫଳେ ଘରେ ଘରେ । ଗ୍ରାମ ନାରୀଗଣେ
କଳର-ସମୟ ଏବେ ଦିଅନ୍ତି ମୀ[illegible]ନେ,
ଥିବା ଲାଗି ହସ୍ତଶିଳ୍ପେ କରନ୍ତି [illegible]ର୍ଜନ,
ସଞ୍ଚିତ ଯା ହୁଏ ବ୍ୟାଙ୍କେ । ଆନ[illegible] ବର୍ଦ୍ଧନ
କରୁଛନ୍ତି ଘରେ ଦାଣ୍ଡେ ସ୍ୱପ[illegible]ଦଳ
ମୁଖ ତାଙ୍କ ହସ ହସ ନିର୍ମଳ[illegible]ଜ୍ଜ୍ୱଳ ।

ମନୁଷ୍ୟର ହସ୍ତ ଯାହା ନାହିଁ କରିପାରେ
ଉପୁଜୁଛି ତାହା କ୍ଷୁଦ୍ର କ୍ଷୁଦ୍ର ଯନ୍ତ୍ରଶାଳେ,
ନର-ଦାସ ହୋଇ ଯନ୍ତ୍ର ଯୋଗାଏ ମାଧୁର୍ଯ୍ୟ
ନାହିଁ କେ ବେକାର, ନାହିଁ ଦ୍ରବ୍ୟ ଅପ୍ରାଚୁର୍ଯ୍ୟ ।
କରୁଣା, ଏ ରଙ୍ଗମଞ୍ଚେ ଅଧିଷ୍ଠାତ୍ରୀ ଦେବୀ
ଅନ୍ତରାଳେ ଥାଏ ଶତ ରୋଗୀ ଶ୍ରେଣୀ ସେବି,
କମଳର ଦୁଇ କରେ ସେହି କଲୁ ବଳ,
ତା'ର ଗୁଣେ ବଶ ଏଥି ନରନାରୀ ଦଳ,
ଗ୍ରାମଟିକୁ କହନ୍ତି କେ 'କରୁଣା-କଲୋନି'
ନାମସ୍ପର୍ଶେ ଅପରୂପ ଆଜ ଶୁଭଯୋନି ।

ଦୀର୍ଘ ସାଧନାର ପରେ କଲା ସିଦ୍ଧି ଲାଭ
ବୁହାଇ ପ୍ରାଚୁର୍ଯ୍ୟ ଗ୍ରାମେ, ଧଁ ସଇ ଅଭାବ
ରୋଗ, ଆବର୍ଜନା ସ୍ଥାନେ ସୌନ୍ଦର୍ଯ୍ୟ ଫୁଟାଇ
ସହଯୋଗ-ଧର୍ମେ ଲୋକ-ନୟନ ଫିଟାଇ,
'କରୁଣା-କଲୋନୀ' ନାମେ ଇଂରାଜ ଭାଷାରେ
କମଳ ପ୍ରକାଶେ ଗ୍ରନ୍ଥ, ଦୃଢ଼ର ଆଶାରେ
ପଲ୍ଲୀର ସମୃଦ୍ଧି ଫେର ଆସିବ କେସନେ
ଯନ୍ତ୍ରହେବ ପରିଣତ କମଳ-ଆସନେ ।
ପୃଷ୍ଠଭୂମି ରୂପେ ତହିଁ ଦେଲା ସେ ସୂଚନା
ରାଜନୀତି କେତେ ମାରାତ୍ମକ ପ୍ରବଞ୍ଚନା,
ଦଳ ହୋଇ ଶେଷେ ଏକ ବ୍ୟକ୍ତି-ହାତଆର
କମଳର ଆତ୍ମଚରିତ ହୁଅଇ ଅଲଙ୍ଘନୀୟ ସ୍ୱାର୍ଥର ପ୍ରାକାର ।

ଏଇ ଇତିହାସ ସବୁ ଦଳ, ସମାଜର;
ବ୍ୟକ୍ତି ହୁଏ ନିଷ୍ପେଷିତ ଦଳ-ପଦ-ତଳ ।
ସମାଜର ଶୁଭ କିନ୍ତୁ ଠିଆ ବ୍ୟକ୍ତି ପରେ
ଅନ୍ୟାୟ ତା',—ବ୍ୟକ୍ତିଠାରେ ଅଶୁଭ ଯା'କରେ ।
ଜାଣ ତାହା ସମାଜର ବିଷାକ୍ତ ଶୃଙ୍ଖଳ
ସମାଜ-ସର୍ବାଙ୍ଗେ ବାହାରିବ ତା' ଗରଳ ।
ଦଳ, ଗୋଷ୍ଠୀ ନାମେ ଯଦି ଦଳପତି ଗଣ
କରୁଥାନ୍ତି ଅନାଚାର, ପର-ପ୍ରବଞ୍ଚନ,
ବ୍ୟକ୍ତି ଭାବେ ଦିନେ ହେବ ତାହାଙ୍କ ବିଚାର
କେ ନେବ'ଈଶ୍ୱର ଆଗେ ପ୍ରପାଗଣ୍ଡା-ଭାର ?
ଯଦି କେ କରଇ ଇଚ୍ଛା ଜନତା ମଂଗଳ,
ବ୍ୟକ୍ତିଭାବେ ହେଉ ଆଗେ ବିଶୁଦ୍ଧ ଅନ୍ତର,
ନିଜ ସ୍ୱେଦ ଢାଳି ଯଦି କରେ ସେ କଂଚିତ,
ସେହି ହେବ ତା' ଜୀବନେ ମହାନ ସଞ୍ଚିତ ।
ଏ କ୍ରମେ ନିଜେ ସେ ଛୁଡ଼ି ସବୁ ଗୋଷ୍ଠି, ଦଳ
ନିଜର ବ୍ୟକ୍ତିତ୍ୱେ କରି ଏକାନ୍ତ ନିର୍ଭର,
କରିଛି ଉର୍ବର କେତେହ୍ନେ ନିଜ ଜନ୍ମ-ମାଟି
'କଲୋନି' ଉଠିଲା କେତେହ୍ନେ ଆବର୍ଜନା କାଟି,
ଦେଇଛି ପୁସ୍ତକେ ତାର କ୍ରମିକ ବର୍ଣ୍ଣନା
ଜରଦ୍‌ଗବେ ଯଉବନ ଦେବାର ସାଧନା ।

ରକ୍ତବୁନ୍ଦେ ଦାନ ସଂଗେ, ଏ ଗ୍ରନ୍ଥ ପ୍ରସାର
କମଳର ନାମ କରେ ଚୌଦିଗେ ପ୍ରଚାର ।

ଆସୁଛନ୍ତି ଦଳେ ଦଳେ ଖ୍ରୀଷ୍ଟ ମିସନାରି
ଆସୁଛନ୍ତି ଜଣେ ଜଣେ ପର୍ଯ୍ୟଟନକାରୀ ।
ଆମେରିକା ବନ୍ଧୁଗଣ ଲେଖୁଛନ୍ତି ପତ୍ର
ଆଉ ଥରେ ଏ ଦମ୍ପତି ନ ଯିବେ କି ତତ୍ର ?
ଜେନେଭାର ରକ୍ତ-କ୍ରୂଶ-କେନ୍ଦ୍ର ଅଫିସରୁ,
ଦେଶ ଦେଶାନ୍ତରେ ଡାକ ଆସେ ବହୁ ଅନୁଷ୍ଠାନ ତରଫରୁ ।
ଖ୍ୟାତ ଓ ସ୍ୱଦେଶରୁ କମଳ କରୁଣା ଦୁହେଁ ସବୁ ପ୍ରତ୍ୟାଖ୍ୟାନ
ନିମନ୍ତ୍ରଣ ଓ କରି, ରଖି ମନୁ ଦୂରେ ଡମ୍ବର, ସମ୍ମାନ
ସେସବୁର ପଲ୍ଲୀର ସେବାରେ କରୁଛନ୍ତି ନିୟୋଜିତ
ପ୍ରତ୍ୟାଖ୍ୟାନ ଆପଣାକୁ । ଭାବନ୍ତି ସେ ହେବେ ତିରୋହିତ
'କଲ୍ୟାଣୀ'ରୁ ଯଦି ମାତ୍ର କିଛି ଧନ ଲାଗି
କେଜାଣେ କି ବିପତ୍ତିପାତେ ପଡ଼େ ସବୁ ଭାଙ୍ଗି ।

ଏଣେ ଦୁହେଁ ଜାଣିଲେଣି ପରଶ ଜରାର
ବୟସ ଦୁହିଁଙ୍କ ଭାଲେ କାଟୁଛି ଶିଆର,
ଦୁହିଁଙ୍କର କୃଷ୍ଣ କେଶ ହୁଏ ଶୁକ୍ଳୀକୃତ
କ୍ଷୀଣ ଏବେ କରୁଣାର ପୂର୍ବ କେଶ ଗୁଚ୍ଛ ।
ନବୀନ କଦଳୀ ପତ୍ର ପରି ଯା ଚିକ୍‌କଣ,
କରୁଣାର ଗଣ୍ଡ, ହରାଇଛି ପୂର୍ବ ବର୍ଣ୍ଣ,
ଦୁଇ ପ୍ରଣୟୀଯୁଗଳର ହୋଇଛି ସେ ଟିକେ ସ୍ଥୂଳ,—ପୂର୍ବ ସୁହାସିକା
ବାର୍ଦ୍ଧକ୍ୟ ହୃଦବେଗ ଯେନି ଉଦ୍‌ବେଗେ ଚଳଇ ଅଧିକା ।
ବରାବର ହେଉଅଛି ମଧ୍ୟେ ମଧ୍ୟେ ଜର
ତା'ର ସ୍ୱାସ୍ଥ୍ୟ ବଡ଼ ଚିନ୍ତା ଏବେ କମଳର ।

ତା'ର ଯୋଗୁଁ ଧର୍ମ-କନ୍ୟା ବିଳାସ-ଲଳିତା
ହୋଇଛୁ କୁଟୀରବାସୀ ଗ୍ରାମର ବନିତା ।
ସହରେ ଶିକକ୍ଷା କଥା ଶୁଣାଇଲେ କାନେ
କରୁଣା କହଇ "ପଡ଼ିଛନ୍ତି ରୋଗୀମାନେ
ଏତେ ଏଠି । ମୋ ପ୍ରାଣରୁ ଏଠୁଁ ମୂଲ୍ୟବାନ୍,
ଯାଙ୍କୁ ଛାଡ଼ି କରିବ ମୁଁ ସହରେ ପ୍ରୟାଣ,
ନିଜ ସ୍ୱାସ୍ଥ୍ୟ ଲାଗି ? ଯାହା ନ ପାରିବ ଦେଇ
ଏମାନଙ୍କୁ, ସୁଖି ହେବ ନିଜ-ଭୋଗେ ନେଇ ?"

'ବିଶ୍ୱମିତ୍ରା' ସଙ୍ଗେ ଧରି ମିସ୍ ବାଟ୍‌ସନ୍
ବରାବର ଆସେ ଗ୍ରାମେ-ଗ୍ରାମ୍ୟଜନମନ
କରଇ ଚଂଚଳ ତାର ସ୍ୱାଧୀନ ବିହାରେ,
'ମିତ୍ରା' ସଙ୍ଗେ ହୋଇ କଥା ଇଂରାଜୀ ଭାଷାରେ ।
ବିଶ୍ୱମିତ୍ରା 'ମିତ୍ରା'ର ନ୍ୟୁୟର୍କେ ଜନ୍ମ, ଶୈଶବରୁ ତାର
ପାଇଛି ସେ ବିଶ୍ୱ-ଦେଶବାସୀ ଅଧିକାର ।
ବିହାଲୁନ ଅନୁଭବୀ ଜନକ ଜନନୀ
ତା'ର ସାର୍ବଭୌମତାରେ କାଟିବେ ବନ୍ଧନୀ,
ତାଙ୍କ ଇଚ୍ଛା ନିଜ ଗୁଣେ ଲଭୁ ସେ ପୂର୍ଣ୍ଣତା
ତାର ବାଟ ହେବ କାହିଁ ପିତୃ-ଅଭିଜ୍ଞତା ?

ଯୋଗ ଦେଇଥିଲା ଅରବିନ୍ଦ, ବର୍ମା-ରଣେ,
ରମା ଆସିଥିଲା ଦେଶେ ଶ୍ୱଶୁର ଗହଣେ ।

ବନ୍ଦୀ ହୁଏ ଅରବିନ୍ଦ ଜାପାନୀଙ୍କ କରେ,
ବଜ୍ରପାତ ହୁଏ ଯେହ୍ନେ ରମା ମସ୍ତକରେ ।
ଏକମାତ୍ର ପୁତ୍ରେ ଧରି କାନ୍ଦେ ଅବିରଳେ
ଅରବିନ୍ଦର କରୁଣ ମୃତ୍ୟୁ — କମଳ ସେକାଳେ ଥାଏ ଚୁଂକିଙ୍ଗ ସହରେ,
ଏକଥା ନ ଥିଲା ଜାଣି । ଯୁଦ୍ଧ ଅବସାନେ,
ଜଣାପଡ଼େ ଇଂରେଜର ଆହତ-ସନ୍ଧାନେ,
ବନ୍ଦୀ-କ୍ୟାମ୍ପେ ଜାପାନୀଙ୍କ କ୍ରୂର ବ୍ୟବହାରେ
କରିବାରୁ ପ୍ରତିବାଦ ବୀରତ୍ୱ ପ୍ରକାରେ,
ଜାପାନୀଏ କରିବାକୁ ବିଦ୍ରୋହ ଜବତ
ଅରବିନ୍ଦେ ଗୁଳିକଲେ ରାସ୍ତା ଶ୍ୱାନବତ'।
ଶୁଣି ଏ କରୁଣ ବାର୍ତ୍ତା, କରୁଣା, କମଳ
ସ୍ମରି ସ୍ମରି ବିସର୍ଜିଲେ ଅଶ୍ରୁ ଅବିରଳ ।

ରମା କଥା କଳ୍ପନାସ୍ତୁ । ମନ ଫେରି ପାଇଁ
ସପୁତ୍ର ରମାରେ ଆଣେ ପାଶେ ନିଜେ ଯାଇ
କମଳ ସେ ବନ୍ଧୁଗ୍ରାମେ । ସୁନ୍ଦର କୁମାର
ମୁଖେ ରେଖା ଅବିକଳ ଚେହେରି ମାଆର,
ନଣନ୍ଦ-ସହଜ — ତେଣୁ ଥିଲା ଜନକର ଆଦରର ଧନ,
ସେଇ ଅଟକାଇ ଅଛି ଜନନୀ-ଜୀବନ ।
କରୁଣା ତ ନାହିଁ ଦେଖିଥିଲା ନଣନ୍ଦରେ,
ଦେଖା ହେଲା ଆଦ୍ୟେ ଏହି ଦୁଃଖ ମୁହୂର୍ତ୍ତରେ;
ତେଣୁ ତାକୁ ସ୍ନେହ କରେ ଆତ୍ମର ଅଧିକେ
ରମା-ମନ ନବ ସଖ୍ୟେ ଫେରେ ଟିକେ ଟିକେ ।

ହେନେ ଉପସ୍ଥିତ ଗ୍ରାମେ ତରୁଣ ସନ୍ନ୍ୟାସୀ
ନାମ ମହାନନ୍ଦ ସ୍ୱାମୀ; ଦୁଗ୍ଧ-ଫଳ-ଗ୍ରାସୀ,
ରାମକୃଷ୍ଣ ମିଶନର, ଗୈରିକ ବସନ
ବ୍ରହ୍ମଚର୍ଯ୍ୟ ତେଜେ ଯୁବା ଆନନ ପ୍ରସନ୍ନ ।
କମଳର ଘର ପାଇଁ ପଚାରନ୍ତି ବାଟ

ମହାନନ୍ଦ ସ୍ୱାମୀ । କୌତୂହଳେ ପଛେ ଚାଲେ ଗ୍ରେଡ଼ ଜନ-ଥାଟ ।

ଦୁଇ ଭାଇଙ୍କର କରୁଣ ମିଳନ

କମଳ ନ ଥିଲା ଘରେ; କଲେ ସେ ଅପେକ୍ଷା
କେତେ କ୍ଷଣେ ଘର ଆଗେ, ପଥେ ହୁଏ ଦେଖା ।
ସାଧାରଣ କ୍ରମେ ହେଉ ପଚରା ପଚରି
ସନ୍ନ୍ୟାସୀର ମୁଖେ ଚାହିଁ ନିରୀକ୍ଷଣ କରି
କମଳ 'ମଦନ ତୁ ରେ' ?, ପଚାରେ ବିସ୍ମୟେ;
'ସେଇ ମୁଁ ଅଧମ', ହସି ଯୁବା-ଯୋଗୀ କହେ ।
କମଳ ନିବିଡ଼ ସ୍ନେହେ ଆଶ୍ଳେଷେ ଭାଇରେ,
ଭାବାବେଗେ ଅଶ୍ରୁ ବିନ୍ଦୁ ଉଠେ ନେତ୍ର ତୀରେ ।
କହନ୍ତି ସନ୍ନ୍ୟାସୀ ଆପେ ଯାଉଁ ଯାଉଁ ଗୃହେ
ଭାଇନା, ପ୍ରଶଂସା ତବ ଶୁଣି ମୁହେଁ ମୁହେଁ
କରୁଣା କଲେଜ କଥା ପଢ଼ି କାଗଜରେ
ଇଚ୍ଛା ହେଲା ସ୍ୱଚକ୍ଷୁରେ ଦେଖି ଆସେ ଥରେ ।
ଆସିଥିଲି ପୁରୀ, ତେଣୁ ଘଟିଲା ସୁଯୋଗ,
ତୀର୍ଥ ଯାତ୍ରା, ଗୃହ ଦେଖା ଅପୂର୍ବ ସଂଯୋଗ ।
କରୁଣା ଓ ରମା ଭେଟେ ଗୃହ ଅଭ୍ୟନ୍ତରେ,
ରମା କାନ୍ଦେ, ଭ୍ରାତୃ-ଜାୟା ସନ୍ନ୍ୟାସୀ-ଦେବରେ
ମୃଦୁ ମୃଦୁ ହସି ଚାହେଁ । ପରେ ପଦ ତଳେ
ନମି ଜ୍ୟେଷ୍ଠା ସମ୍ମାନନ୍ତି ବରେଣ୍ୟ କ୍ଷୁଦ୍ରରେ ।

କିଛି ଦିନ ରହି, କରି ମଧୁର କୀର୍ତ୍ତନ
କମଳାର ହୃଦେ ଦେଇ ଭକ୍ତି-ଜାଗରଣ,
ରମାର ଲୋତକେ ଏଡ଼ି, ସ୍ୱଜନ-ଆଦର
ଯୋଗୀ ପୁଣି ପଥ-ବୃକ୍ଷ ହେଲେ, ଛାଡ଼ି ଘର ।
ମୁକ୍ତ-ସଙ୍ଗ, ନିର୍ବିକାର, ଗଗନବିହାରୀ
କି ଲୋଭେ କେ ଆଗୁଳିବ ଚରଣ ତାହାରି !

କରୁଣାର ହୁଏ ଏବେ ବରାବର ଜ୍ୱର
ଦୁର୍ବଳତା ବଢ଼ିଅଛି ତା' ସଙ୍ଗେ ହୃଦର,
କିଛି କାଳ-ଧରି ବରାବର ଶଯ୍ୟାଗତ,
ବାହାରୁଛି କାଶ, ପୁଣି କାଶେ ପଡ଼େ ରକ୍ତ ।
ଡାକ୍ତର କହିବା ପୂର୍ବୁ ଜାଣିଲେଣି ଦୁହେଁ
**କରୁଣାର କ୍ଷୟ ରୋଗ** କି ରୋଗ ଏ, ନାମ ନାହିଁ ଧରୁଛନ୍ତି ମୁହେଁ ।
ନଗରୁ ଡାକ୍ତର ଆସି କରେ ପରୀକ୍ଷିତ
ଗୋପନେ କହଇ 'ଏ ଯେ ଚିକିତ୍ସା-ଅତୀତ !
ଆପଣ କି ଶୋଇଥିଲେ ଏତେ ଦିନ ଧରି,
ରୋଗୀ ତ ମରୁଛି ଏବେ ଅଳ୍ପ ଅଳ୍ପ କରି ।'
ତୀବ୍ରୁ ତୀବ୍ରତର ହୁଏ କରୁଣା ଯନ୍ତ୍ରଣା
ସହ୍ୟ କରି ସବୁ, ଦିଏ ଓଲଟି ସାନ୍ତ୍ୱନା
କମଳରେ—କିପାଁ ତମେ ହେଉଛ ବ୍ୟାକୁଳ,
ପ୍ରଥମ କି ହେବ ମୁହିଁ କବଳ ମୃତ୍ୟୁର ?
ନିତ୍ୟ ମରୁଛନ୍ତି ବହୁ ସହସ୍ର ଧରାରେ
ତମେ-ମୁ-ବୋଲିକି ସେହି ଚକ୍ରୁ ବର୍ତ୍ତି ପାରେଁ ?

ମରିବା ତ ଦୁଃଖେଁ ନଷ୍ଟେ ଆଗ ପଛ କଥା
ମୁଁ ଆଗେ ଗ୍ଭଲିଲି ବୋଲି, କରିବ କି ବ୍ୟଥା ?
ତମ କୋଳେ ମଥା ରଖି, ଗୃହ୍ମିଁ ଗୃହ୍ମିଁ ମୁଖେ,
ତବ ନାମ ଡାକି ଡାକି ମରିବି ମୁଁ ସୁଖେ ।'
ଦେଖିଲି ମଦନ, ରମା-ଶାଶୁ ବା ଶଶୁରେ
ଦେଖି ନ ପାରିଲି ଦୁଃଖ ରହିଗଲା ଉରେ ।
କାହିଁ ଥିଲି ତମେ ଆଉ ମୁହିଁ ଥିଲି କାହିଁ
ଦୁଇ ଅଜ୍ଞାତରେ ଆଣି କେ ଦେଲା ମିଶାଇ ।
ସୁଧା-ଉତ୍ସ ଏ ଜଗତେ ପ୍ରୀତିର ବନ୍ଧନ
ଗ୍ରନ୍ଥିରେ ଲଗାଏ ଆଣି, ଦୂର, ପର ଜନ ।
ନହେଲେ କାହାନ୍ତି କର୍ପା ଅରବିନ୍ଦ ପାଇଁ,
ଜୀବନରେ ଯାକୁ କେବେ ନେନେ ଦେଖି ନାହିଁ ।
ରମା ତବ ତତ୍ତ୍ୱ ନେବ ମୁହିଁ ଗଲେ ଗ୍ଭଲି
କି ଦୁଃଖୀନୀ ଅଭାଗିନୀ ନଣନ୍ଦା ବିଗ୍ଭରି !
ମିନା, ମିସି ବାଟସନେ ଡକାଅ ଏଥର
ଦେଖାଯାଏ ଶେଷ ଏବେ ମୋ ଯାତ୍ରା-ପଥର ।
ସେପଟେ ବି ଅପେକ୍ଷିବି ଏ ଜୀବନ ପରି
ତବ ଯିବା ପଥେ ଥିବି ଜାଗ୍ରତ ପ୍ରହରୀ ।'

କମଳ ମୀରବେ ବସି ଧ୍ୟାନେ କକ୍ଷାନ୍ତରେ
ଘବୁଁ ଘବୁଁ ଉଠେ ସାରା ତନୁ ତା' ଭିତରେ ।
ତା ସମ୍ବନ୍ଧେ କି କଳ୍ପନା ଥିଲା ନନାଙ୍କର
କି ହେଲା ସେ ! ସେ କାହାଣୀ କି ବିସ୍ମୟକର ।

ଏ ସବୁର ମୂଳେ ଏକ ତନ୍ୱଙ୍ଗୀ କଣୋସ୍ୱା ।
ଆପେ ଆମି ବାନ୍ଧଦେଇ ଗଲା ଦିନେ ଡୋର ।
ସେ ଡୋର ଛିଣ୍ଣିଲା ନାହିଁ—ଘାଟୁ ଘାଟେ ନେଇ
ଜୀବନ ନଉକା, ଦେହେ ବାନ୍ଧନ୍ତୁ ଏଠେଇଁ ।
ଜଣକର ସ୍ନେହପାଇଁ ସବୁ ସେ ଦେଇଛୁ ।
ଜଣକର ସୁଖପାଇଁ ସବୁ ସେ ସହିଛୁ ।
ସର୍ବଂସହା, ସ୍ନେହମୟୀ ଜୀବନ-ସଙ୍ଗିନୀ
ଆଉ ଘରେ ଦୁରାରୋଗ୍ୟ ରୋଗର ରୋଗିଣୀ,
ଛଟପଟ କରେ ତାକୁ ଅସହ୍ୟ ଯନ୍ତ୍ରଣା,
ତଥାପି ସେ ମଧୁଭାଷୀ, ସହାସ୍ୟବଦନା ।
ସେ ତ ଯିବ ଚାଲି ଚୁଡ଼ି, ଆଉ, ବଞ୍ଚିବାର
କି ଲୋଭ ଅଛି ଏ ମର୍ତ୍ତ୍ୟେ ?—ତପ୍ତ ଅଶ୍ରୁଧାର
ଅଲକ୍ଷିତେ କମଳର ଗଣ୍ଡେ ବହିଯାଏ;
ପୋଛି ବେଗେ, କରୁଣାର ଡାକ ଶୁଣି ଧାଏଁ ।

ଦିନେ ସବୁ ହୁଏ ଶେଷ !

ନିର୍ବାକ କମଳ

ନିଜ ସ୍କନ୍ଧେ ବହି ଭାର କରୁଣା ଶବର
ଅନ୍ୟ ବନ୍ଧୁ ଜନ ସାଥେ, ପୈତୃକ ଶ୍ମଶାନେ
ଦାହ କରେ ସତୀ, କୁଳବଧୂର ସମ୍ମାନେ ।
ମନେ ହୁଏ, ଆଶ୍ରମରୁ ଲକ୍ଷ୍ମୀ ଗଲା ଚାଲି
ସତୀର ପ୍ରୟାଣ 'ଧନ୍ୟ ସତୀ', କହୁଛନ୍ତି ଗ୍ରାମ ନରନାରୀ ।
ଦେଖନ୍ତି ଶ୍ମଶାନୁଁ ଫେରି ଗ୍ରାମ ବନ୍ଧୁଜନ ।
କମଳର ଗୃହଦ୍ୱାରେ ନାରୀ ଦୁଇ ଜଣ

ବଳପନ୍ତ କାରୁଣ୍ୟରେ—ରମା, ବାତ୍ସଲ;
କି ଅଦ୍ଭୁତ ଘଟାଇଛି ସ୍ନେହର ବନ୍ଧନ !
କମଳ ନିବାଟକୁ ପଶି ଗୃହ ଅଭ୍ୟନ୍ତରେ
ମିତାକୁ ପ୍ରବୋଧେ ଧରେ ସସ୍ନେହେ କୋଳରେ ।

ଛଅ ମାସ ନଯାଉଁ ବି କମଳର ସ୍ୱାସ୍ଥ୍ୟ
ଭାଙ୍ଗିପଡ଼େ, ଖାଦ୍ୟମାନେ ହୁଅଇ ଦୁଷ୍ପାଚ୍ୟ ।
ଜର ହୁଏ, ଶେଯ ଧରେ, ନାହିଁ ଉଠେ ଆଉ,
ଶଯ୍ୟାଗତ କମଳ ଜାଣିଲା ସେ ହେଲା ଆସିଯିବ ଶେଷ ବାୟୁ ।
ତାରପରେ ଡକାଏ ତାର ସନ୍ନ୍ୟାସୀ ଭାଇରେ
ତା ହାତରେ ଛାଡ଼ିଦିଏ ପ୍ରିୟ କଲୋନୀରେ;
ମିତା, ରମା-ପୁତ୍ର ଭାର ଦିଏ ବାତ୍ସଲେ
ତାହାପରେ ନିର୍ବିକାରେ ଅପେକ୍ଷେ ମରଣେ ।

ଖବର କାଗଜେ ହୁଏ ଦେଶରେ ପ୍ରଚୁର
କଲୋନୀରେ କମଳର ମୁମୂର୍ଷୁ ବିକାର ।
ନଗରର ସବୁ ଧର୍ମ, ସବୁଦଳ ଲୋକେ
ଇଚ୍ଛିଲେ ସମ୍ମାନ ଦେବେ ନୀରବ ସାଧକେ ।
ଦଳ ଦଳ ଯାଇ ଠୁଳ ହୋନ୍ତି କଲୋନୀରେ
ଶୁଣନ୍ତି ସେ କର୍ମଯୋଗୀ ଖସେ ଧୀରେ ଧୀରେ ।

ସବୁ ଶେଷ ହେଲାକ୍ଷଣି, ଲାଗେ ଆୟୋଜନ
ସଜ୍ଜିତ କଫିନ୍ ପଛେ ଧାର୍ଦ୍ଧ ପ୍ରସେସନ ।

ଧୀରେ ଗୁଲେ ଶୋଭାଯାତ୍ରା, ମରଣ-ସଙ୍ଗୀତ
ଇଉରୋପୀୟ ବ୍ୟାଣ୍ଡ୍ ବାଇ, କରୁଣ ଇଙ୍ଗିତ
କରୁଣା ପ୍ରସେସନ୍ ଜାତ କରେ ଶ୍ରୋତାଙ୍କର ହୃଦୟେ ହୃଦୟେ
ସହସ୍ର ନୟନ ଦେଇ ତପ୍ତ ଅଶ୍ରୁ ବହେ ।
ରକ୍ତ-ଫୁଲେ କମଳର ବକ୍ଷ ଆଚ୍ଛାଦିତ,
ଶବ, ଶବ-ପଥ ହୁଏ ପୁଷ୍ପେ ଆସ୍ତରିତ ।
ନଥିଲ ସେ ନେତା, ମନ୍ତ୍ରୀ, ଅଥବା ଧନିକ
ସେ ଥିଲା ସେବାର କ୍ଷେତ୍ରେ ସାମାନ୍ୟ ସୈନିକ ।
ସାଧାରଣ ଥାଇ ହେଉଁ କର୍ମେ ଗରୀୟାନ
ସାଧାରଣ ଦିଏ ତାଙ୍କୁ ପରମ ସମ୍ମାନ ।



# ପ୍ରଥମ ସର୍ଗ

ଶୀତ, ଶାନ୍ତ ହେମନ୍ତର ହେମ ଅପରାହ୍ଣେ
ହୋଇଅଛି ଚିଲିକାର ତରଳ ଚତ୍ୱର,
ପୁଣି ତା'ର କୁଟୁମ୍ବିକ ଶୈଳ, ଟଂକ, ବନ,
ଶ୍ୟାମଳ ଶବଳ ତାର ଦ୍ୱୀପ ଶତ ଶତ,
ନିମ୍ନ, ଊର୍ଦ୍ଧ୍ୱ, ଚଉଦିଗ,—ବର୍ଣ୍ଣ ମହିମାରେ
ପରିବ୍ୟାପ୍ତ ସ୍ୱର୍ଣ୍ଣାଂଶୁକେ, ଅସ୍ତ-ତପନର ।
ରବିର ଅଦୃଷ୍ଟ ହେମ-ରଥ-ଚକ୍ର-ରାଜି
ଛୁଇଁଲେଣି ଆସି ଧୀରେ ଗୁଳ୍ମତ ଶିଖରେ
ପ୍ରଲମ୍ବିତ ଭଲେଶର । ଜଟିଆର ବନେ
ଆସିଲଣି ମାଡ଼ି ତେଣେ ଧୂମ୍ର ସାନ୍ଧ୍ୟ ଛାଇ;
ପ୍ରଥମ-ବିଶ୍ରାମ-ଲିପ୍ସୁ ବିହଙ୍ଗମ ଦଳ
ପକ୍ଷ ଝାଡ଼ି ବସିଲେଣି ଚଢ଼େଇହଗାର
ଶ୍ୱେତ, ଶାନ୍ତ, ସ୍କନ୍ଧପରେ । ପକ୍ଷୀ ଦଳ ଦଳ
ଉଡ଼ୁଛନ୍ତି ମାଳାକାରେ, ଅର୍ଦ୍ଧବୃତ୍ତେ; ଅବା
ତଳେ ଖସି, ସୁମଧୁର କୋଳାହଳେ ପୁଣି
ସ୍ନେହ-ବିକମ୍ପିତ ମାତୃବକ୍ଷେ ଚିଲିକାର
ସନ୍ତରନ୍ତି ପରିପୂର୍ଣ୍ଣ ଜୀବନ ଆନନ୍ଦେ
ତରଳ ସେ ନୀଳ ସ୍ତନେ—'କରେ ଚକଚକ
ରଙ୍ଗ କରେ ନୀର-ଧୌତ ପତତ୍ର ତାଙ୍କର ।
ସ୍ୱର୍ଣ୍ଣପାଲ ଟାଣି ଧୀରେ, ଦୂରେ ଓ ନିକଟେ
ଭାସିଯାନ୍ତି ତରୀ ଦୂର ତୀର ଲକ୍ଷ୍ୟ କରି

ଅଗୋଚର ସ୍ୱପ୍ନ ସମ । ତା'ର ଆଶା ସମ
ତଥାପି ସେ ସ୍ୱର୍ଣ୍ଣପାଳ ମିଳ ମିରପରେ
ଯେତେ ଦୂର ଯାଏ, ତେତେ କରେ ଜକଜକ,
ଅପ୍ରାପ୍ତିରେ ଜଳେ ଯେହ୍ନେ ପ୍ରାପ୍ତି ଆଶା-ଶିଖା ।

ସେ ପ୍ରଦୋଷେ, ଚିଲିକାରେ, ମିଳ ନଭ ତଳେ
ଯନ୍ତ୍ରମିତ ଶୁଭ୍ରନାବ ପୃଷ୍ଠେ ହୋଇ ଠିଆ
ଦେଖୁଛନ୍ତି କମମାସ୍ୱ ତରୁଣ ତରୁଣୀ
ମୁଗ୍ଧ ନେତ୍ରେ ଶୋଭା ଏହି ସୁନ୍ଦର ହ୍ରଦର,—
ମଗ୍ନ-ଚିତ୍ତ, ପ୍ରକୃତିର ରୂପ-ଆୟୋଜନେ ।
ବେଳେ ବେଳେ ଖାଲି ଦୁହେଁ ହୋଇ କୁତୂହଳୀ
ଗୃହୁଁଛନ୍ତି ଦୁରବୀଣେ ବୁଲାଇ ବଦନ
ସିଂହେଶ୍ୱର ମୁଣ୍ଡିଆର * ଉଚ୍ଚତମ ଶିଖେ,
ମନୋହର ସୌଧବାସଅଳନ୍ଦରେ ଯହିଁ
ବସିଛନ୍ତି ଦୁଇ ବୃଦ୍ଧବୃଦ୍ଧା ଗଳ୍ପି ସୁଖେ
ଦେଖିବାକୁ ଏ ଦୁହିଁଙ୍କ ଚିଲିକା ବିହାର
ସ୍ୱହସ୍ତର ଦୂରବୀଣେ । ମଧୁ ସ୍ମିତ ତଳେ
କରି ବଞ୍ଚିତ କୁନ୍ଦ-ପୁଷ୍ପ-ଦନ୍ତ-ଶୋଭା,

---

* ସାଧାରଣତଃ 'ମାମୁଁଭଣଜା' ପାହାଡ଼ ନାମରେ ପରିଚିତ । ରାଧାନାଥଙ୍କ ଚିଲିକାରେ ଏହାହିଁ 'ସିଂହେଶ୍ୱରଙ୍କର ଶ୍ୟାମଳ ଭୂଧର'; କାରଣ ପାହାଡ଼-ଦୁଇର ମଧ୍ୟ ଦେଶରେ ସିଂହେଶ୍ୱର ମହାଦେବଙ୍କ ମନ୍ଦିର । ମାମୁଁ ଓ ଭଣଜା ଏଇ ଯୁଗ୍ମ ପାହାଡ଼ର ମଧ୍ୟ ଦେଇ କଲିକତା-ମାନ୍ଦ୍ରାଜ ଜାତୀୟ ରାଜପଥ ଯାଇଛି ।

ବେଳେ ବେଳେ ତରୁଣୀ ସେ, ଅନାଇ ପଛରେ
ଧର ଦୂରବୀଣ ସାଥୀ-ନୟନ ପୁରରେ,
କହେ ଶାନ୍ତ କଳରବେ—
"ଦେଖ ଶେପିଲକୋ,
କକା ଓ ମାଉସୀ ନିଜେ ଧରି ଦୂରବୀଣ
ଆମ ଗତି ଏବଯାଏଁ କରୁଛନ୍ତି ଲକ୍ଷ୍ୟ ।"
"ହଁଅଁ ତ" ! ସାମାନ୍ୟ କହି ସୁନ୍ଦର ତରୁଣ,
ଉତ୍ତରଇ ଦରହାସେ ରୂପସୀ ସାଥୀରେ ।
ଘନ, କୃଷ୍ଣ, ସୁରଞ୍ଜିତ, ଉର୍ମିଳ ଚିକୁର
ସୁନ୍ଦରୀର ଉଡ଼େ ବାୟୁ କ୍ଷିପ୍ର ମୁକ୍ତତାରେ,
କରି ବିଚ୍ଛୁରିତ ଚତୁର୍ଦ୍ଦିଗେ ପୁଷ୍ପବାସ,
କରି ଚିତ୍ତ ଉଦ୍‌ବେଳିତ ପିଙ୍ଗଳ-କେଶିକ
ଉଦୀଚ୍ୟ (୧) ସେ ଶିତିଚର୍ମା (୨) ସୁନ୍ଦର ଯୁବାର ।
ଦୁହେଁ ଯୁବା, ଦୁହେଁ ଦୁଇ ଉଚ୍ଛଳ ପ୍ରାଣର
ଅଶେଷ ନିସ୍ୟନ୍ଦ ଯେହ୍ନେ । ଦୁହେଁ ହିଁ ସୁନ୍ଦର
ନିଜଦେଶ ପ୍ରକୃତିର ସ୍ୱାଭାବିକ ଦାନେ,
ପୁଣି ଅଙ୍ଗ ଅନୁପାତେ । ବିପରୀତ ଧର୍ମେ
ବିଚିତ୍ର ସୁନ୍ଦର ତେଣୁ ଯୁଗ୍ମ ସମାବେଶ ।
ସୁନ୍ଦର ସେ ପ୍ରକୃତିର ମନୋଜ୍ଞ ବିକାଶେ
ଦୁଇ ଏଇ ମାନବିକ ସ୍ଫୁଟ-ପୁଷ୍ପ ଯୁଗ୍ମ
ପ୍ରକୃତି-ଲକ୍ଷ୍ମୀର ପଦେ ଶ୍ରେଷ୍ଠ ଅର୍ଘ୍ୟ ଯେହ୍ନେ ।

---

୧—ଉଦୀଚ୍ୟ—ଉତ୍ତରଦେଶ ବାସୀ ।
୨—ଶିତିଚର୍ମା—ଶ୍ୱେତାଙ୍ଗ ।

ତରୁଣ ସେ ସେପିଲ୍‌କୋ; ଇଉକ୍ରେନ୍‌ବାସୀ (*)
ରୁଷୀୟ, କରଇ ପ୍ରାଚ୍ୟ ବିଦ୍ୟା ଗବେଷଣା,
ଆସିଛି ଦେଖିବାଲାଗି ନିଜ ନେତ୍ର ଭରି
ଭାରତୀୟ ଜୀବନର ଅଂଶ କିଛି କିଛି
ଗ୍ରାମେ ଓ ନଗରେ ଭ୍ରମି । ସୁନ୍ଦରୀ ତରୁଣୀ,
କମଳ ଓ କରୁଣାର ଏକହିଁ ସନ୍ତାନ,
ବିଶ୍ୱମିତ୍ରା,—ବୁଦ୍ଧିମତୀ, ବିଶ୍ୱଶୁଭଶୀଳା,
କରି ଶିକ୍ଷା ସମାପନ ଦେଶେ ଓ ବିଦେଶେ;
ଫେରିଅଛି ସଦ୍ୟ ଏବେ ଜନକଜନନୀ—
ପ୍ରତିଷ୍ଠିତ ସୁପ୍ରସିଦ୍ଧ ଆଦର୍ଶ ପଲ୍ଲୀରେ,
ଯନ୍ତ୍ର ଯହିଁ ମିଳନର ହୋଇ ସ୍ୱର୍ଣ୍ଣସୂତ୍ର
ନର ଓ ପ୍ରକୃତି ମଧ୍ୟେ, ଅଛି ସମ୍ଭବାଇ
ଶାନ୍ତି, ସୁଖ, ନିରାପତ୍ତା, ସମୃଦ୍ଧି-ସୌଭାଗ୍ୟ,
କୁତ୍ସିତ, ଦରିଦ୍ର, ହୀନ, ହାହାକାରମୟ
ପଲ୍ଲୀ-ଭାରତର ଏକ କ୍ଷୁଦ୍ର ପରିଧିରେ ।

ଚିଲିକାର ସିଂହେଶ୍ୱର ଶୈଳଚୂଳ ପରେ
ପ୍ରତିଷ୍ଠିତ ଦିଶେ ତାଙ୍କ ସୁନ୍ଦର ଆବାସ,
ସଦା ନିସେବିତ ଯାହା ଚିଲିକା ବ୍ୟଜନେ ।
ସ୍ୱାମୀ ମହାନନ୍ଦ, ସେହି କମଳ-ଅନୁଜ,
ମିସ୍ ଓ୍ୱାଟ୍‌ସନ୍, ସେହି କରୁଣା-ବାନ୍ଧବୀ,

---

*—ସୋଭିଏଟ ରୁଷିଆର ମୁଖ୍ୟତମ ରାଜ୍ୟ । ଏହା ରୁଷିଆର ଶସ୍ୟାଗାର । ଇଉକ୍ରେନିଆନମାନେ ଏକ ସ୍ୱତନ୍ତ୍ର ଜାତି ଓ ଭାଷାଭାଷୀ । ଏମାନଙ୍କର ପଲ୍ଲୀଗୀତ ଓ କାହାଣୀ ପ୍ରସିଦ୍ଧ । ଏମାନେ ବାରମ୍ବାର ସ୍ୱାତନ୍ତ୍ର୍ୟ ପାଇଁ ସଂଗ୍ରାମ କରି ଆସିଛନ୍ତି ।

(ନିଉୟର୍କ୍ ବିଶ୍ୱମିତ୍ରା ବିଶ୍ୱସ୍ତା ଜନନୀ)
ଦୁହେଁ ବସି ଜଳ୍ପୁଛନ୍ତି ସେ ବିଶ୍ୱମିତ୍ରାର
ଭବିଷ୍ୟତ, ଯେ ଦାୟିତ୍ୱ ନ୍ୟସ୍ତ ତାଙ୍କଠାରେ ।
ସିଂହେଶ୍ୱର ଆବାସର ଆରାମ-ସ୍ୱଚ୍ଛନ୍ଦେ,
ଦୂରବୀଣ ହସ୍ତେ ଧରି ଦେଖୁଛନ୍ତି ପୁଣି
ଜଳକ୍ରୀଡ଼ା ତା'ର, ବନ୍ଧୁ ସେନ ଅପରାହ୍ନେ ।

ଝୁଲେ ତରୀ କାଟି ଦ୍ରୁତେ ଚିଲିକା ଲହରୀ,
ପଛେ ତାର ନୀଳଗିରି-ଶ୍ରେଣୀ-ଚିତ୍ରପଟ,
ସମ୍ମୁଖରେ ଦିଶେ ଦୂର ଚକ୍ରବାଳ ପରେ
କ୍ଷୀଣ, ଧୂମ୍ର, ଅସଲଗ୍ନ, ବନସ୍ପତି ରେଖା
ପାରିକୁଦ-ମାଲୁଦର ଦୀର୍ଘ ବେଳା ଧରି ।
ପଛେ ଗିରିଶ୍ରେଣୀ, ଅଗ୍ରେ ଦିଗ୍‌ବଳୟ ମଧ୍ୟେ
ପରିବ୍ୟାପ୍ତ ଚିଲିକାର ତରଳ ମରକତ,
ରଞ୍ଜିତ ଏକ୍ଷଣି କୋଟି କନକ-ଚନ୍ଦ୍ରକେ,
କୋଟି କୋଟି ସ୍ୱର୍ଣ୍ଣଦ୍ୱାରେ । ଲହରୀର ଛନ୍ଦେ
ଟଳି ଟଳି ଦେଖାଉଛି ସୁନ୍ଦରୀ ଚିଲିକା
କେଉଁ ସେ ପ୍ରେମିକ ଯେହ୍ନେ ନୀଳଗଣ୍ଡେ ତାର
କୌତୁକେ ଦେଇଛି ବୋଲି ସ୍ନେହାକ୍ତ ଅଧର ।

ତପନ ବୁଡ଼ଇ ଧୀରେ ଭଲେରୀ ଉହାଡ଼େ,
ଶାନ୍ତ, ସନ୍ଧ୍ୟା-ଛାୟା ମାଡ଼ି ଆସେ ଦ୍ରୁତ ପଦେ
ଗିରି-ଶ୍ରେଣୀ ଲଙ୍ଘି ଡେଇଁ ଚିଲିକା ଉପାନ୍ତେ ।

ଶେଷ ସ୍ୱର୍ଣ୍ଣାଲୋକ-ଶିଖା ବଦାସ୍ତି ଦାନର,
ଜଳୁଛି ତଥାପି ଦୂରେ ଖଣ୍ଡାହଣା * ଚୂଳେ,
ଶୋଳଗିର ପ୍ରାଚୀନ ସେ ନ୍ୟଗ୍ରୋଧ ମସ୍ତକେ । †
ଚିର ସେ ଶସ୍ୟନାଶସ୍ତି ଦୁଇଟି ମିତଣୀ,
ଜଟିଆ ⁂ ଓ କାଳଜାଇ, ସାଧ ଗ୍ରସ୍ତାଚଳେ
କଲେଣି ବା ଆସ୍ତେ ଆସ୍ତେ ନଦ୍ରା ଆୟୋଜନ,
କେଶା କୁକ୍‌କୁଟଙ୍କ ପରି, ତାଙ୍କ ଗୁଳ୍ମବନେ ।
ସନ୍ଧ୍ୟା କ୍ରମେ ହୁଏ ଗାଢ଼ । କୃଷ୍ଣପକ୍ଷ ମେଳ
ଆସେ ନିଶା ଜଳସ୍ଥଳ କରି ଏକାକାର ।
ମ୍ଳାୟମାନ ଗିରିଶ୍ରେଣୀ । ବାରୁଣୀ ଦିଗନ୍ତେ
ଲୁଚିଲେଣି ଚିରଶ୍ୟାମ ଦିପରାଜ, ପୁଣି,
ପାରିକୁଦବେଳାଲମ୍ବି ବନସ୍ତନ୍ତ ସାଥି ।
ଭେଦ ଓତପ୍ରୋତ ସେହି ତମ-ଆବରଣ
ଦେଲେ ଦେଖା ଏବେ ଧୀର ଗଗନ ଗମ୍ବୁଜେ

---

* ରାଧାନାଥଙ୍କ ଚିଲିକାର 'କଣ୍ଠ-ମୁଣ୍ଡାକୃତ ଗିରିଖଣ୍ଡାହଣା' । ଚିଲିକାର ପଶ୍ଚିମପଟ୍ଟ ପର୍ବତମାଳାର ଶେଷପଂକ୍ତିରେ ଠିଆହୋଇ ପରି ଦେଖାଯାଏ ।

† ଶୋଳଗି ପର୍ବତର ଶିଖର ଦେଶରେ ଥିବା ଗୋଟିଏ ଝଙ୍କା ବରଗଛ ବହୁ ଦୂରକୁ ଦେଖାଯାଏ ।

⁂ ଚିଲିକାର ପଶ୍ଚିମତୀରରେ ଚିଲିକା ଭିତରକୁ ଲମ୍ବି ହୋଇ ପଶିଯାଇଥିବା ଦୀର୍ଘ, ଅନୁଚ୍ଚ ପାହାଡ଼ । ରାଧାନାଥଙ୍କର 'ଗୁଳ୍ମଜଟାବୃତ ଜଟିଳ ଜଟିଆ' । କାଳଜାଇ ମଧ୍ୟ ଏକ ଦୀର୍ଘ, ଅନୁଚ୍ଚ ପାହାଡ଼—ଜଟିଆରୁ ଅଦୂରରେ ଚିଲିକା ଭିତରେ ଦ୍ୱୀପାକାରରେ ଅବସ୍ଥିତ ।

ସମ୍ମେ, ଊର୍ଦ୍ଧ୍ୱେ କୋଟି ନେତ୍ର ଶାଶ୍ୱତ-ଜ୍ୟୋତିର—
(ଧରାରେ ଦେଖିବାପାଇଁ ରମ୍ୟ ଅଭିନୟ
ପ୍ରକୃତି ଓ ମାନବର, ଯେଉଁ ଦେବ-ଚକ୍ଷୁ
କୁତୂହଳୀ ସଦେ ସଦେ ଅନାଦି କାଳରୁ) ।
ଦିଗ୍‌ବଳୟୁ ଦିଗ୍‌ବଳୟେ ନଭ ଚନ୍ଦ୍ରାତପେ
ଖଚିତ ସେ ବିସ୍ମାପକ ଜ୍ୟୋତିର ରୋଷଣୀ
ମାହେଶ୍ୱରୀ ମହିମାର, 'ଦେଖିଲେ ବିମୁଗ୍ଧ
ତରୁଣ, ତରୁଣୀ ସେହି; (ଅନାଦି କାଳରୁ
ନର ଯାହା ଦେଖି ମଧ୍ୟ ହୁଅଇ ବିସ୍ମିତ
ପ୍ରତି ସନ୍ଧ୍ୟାଗମେ ବିଲୋକି ଊର୍ଦ୍ଧ୍ୱ ଆକାଶେ ) ।
'ନର ଆଉ ଦେବତାର ପରସ୍ପରମୁଖି
ଅନନ୍ତ ରହସ୍ୟମୟ ଏହି କୁତୂହଳ,
ନାହିଁଥିଲେ ଅନୁଭବ ଯେତେକ କେଉଁଠାରେ
ପୂର୍ବେ କେବେ ସେହି ମୁଗ୍ଧ ତରୁଣ ତରୁଣୀ,
ପରମ ବିସ୍ମୟେ ଊର୍ଦ୍ଧ୍ୱେ ଟେକି ନେତ୍ର ଯୁଗ
ଦେଖିଲେ ସେ ପ୍ରସାରିତ ଭୂମାର ମହିମା ।
ନଉକାର ଗୁନ୍ତପରେ, ବିମୁଗ୍ଧ ନୟନେ,
ଦେଖୁଁ ଦେଖୁଁ ନିବଟନେ ଦିଗନ୍ତୁ ଦିଗନ୍ତେ
ନଭୋଦେଶେ ମହାମେଳା ଜ୍ୟୋତିଷ୍କ ରାଜିର,
ତରୁଣୀ ସେ ନ ସମ୍ଭାଳି ପାରି ହୃଦୟର
ବିସ୍ମିତ ଉଚ୍ଛ୍ୱାସ; କହି ଆରମ୍ଭିଲ ବେଗେ—
"କି ଭାବୁଛ ସେପିଲ୍‌କୋ ? ଆମେ କି କେବଳ
ଦ୍ରଷ୍ଟାମାତ୍ର ଏ ଦୃଶ୍ୟର; ସମ୍ପର୍କ-ବିହୀନ
ଆକସ୍ମିକ ଅତିଥି କି ? ଅଥବା ହେ ଆମେ

କେବଳ ବଜୟୀ,—କର ଦୂର ଆଧିପତ୍ୟ,
ଦାସୀଭୂତ କରିବା ହିଁ ନିଜ ପ୍ରୟୋଜନେ
ପ୍ରକୃତିରେ—ନିର୍ଦ୍ଦେଶ ହିଁ ଆମ ନରଭିରେ ?
ନିରୀଶ୍ୱର କମରେଡ଼ * ସେପରି ଭାବନା
ନୁହେଁ କ ଏକାନ୍ତ ଭ୍ରମ ? ଭୁଲିଯାଉଁ ଆମେ
ଆମେ ବି ଆବର୍ତ୍ତିମାନ ଶୂନ୍ୟେ ମହାବ୍ୟୋମେ
କୋଟି କୋଟି ବ୍ରହ୍ମାଣ୍ଡର ହୋଇ ସହଯାତ୍ରୀ
ଧାଉଁଅଛୁ ଅବିରଳ, ଅକଳ୍ପିତ ବେଗେ
କ୍ଷିପ୍ର ପରି, କେ ନ ଜାଣେ କେଉଁ ଉଦ୍ଦେଶ୍ୟରେ ।
ବିନାଶ୍ରୟେ ପ୍ରଲମ୍ବିତ, ମହାଶୂନ୍ୟ ଗର୍ଭେ
ବିଘୂର୍ଣ୍ଣିତ, ପ୍ରଧାବିତ, ବିତାଡ଼ିତ ପୁଣି
କେଉଁ ମହା-ଯାଦୁକର ନିର୍ଦ୍ଦେଶରେ ଏହି
ଅଗଣ୍ୟ ବ୍ରହ୍ମାଣ୍ଡମାଳା ଅନାଦି କାଳରୁ,
ଭ୍ରାମ୍ୟମାଣ ଅବିଶ୍ରାନ୍ତ କେଉଁ ଲକ୍ଷ୍ୟେ ଅବା
ଜାଣନ୍ତି କ କେହି ସତେ ? ସେ ମହା ରହସ୍ୟେ
ସମର୍ପି ନିଜରେ ସୃଷ୍ଟି-ସ୍ଥିତି-ଲୟ-କ୍ରମେ
ଉଦ୍ଭବ ହୁଅନ୍ତି ପୁଣି ବିଲୀନ କାହିଁକି,
କାହାର ଖିଆଲେ ଏହି ମହାଜଗତର
ଗ୍ରହ, ତାରା, ଦେବ, ନର, ନଭ, ଅଗ୍ନି, ବାୟୁ—
ନିଜେ କ ଜାଣନ୍ତି ସତେ ? ଭୁଲିଯାଉଁ ଆମେ
ଊର୍ଦ୍ଧ୍ୱପରି ତଳେ ଆମ ସୀମାହୀନ ବ୍ୟୋମ,
ସୀମାହୀନ ପୁଣି ବ୍ୟୋମ ଆମ ଚଉଦିଗେ,
ମହାଶୂନ୍ୟେ ସମଯାତ୍ରୀ କୋଟି ରବି ସହ
ଅବିଚ୍ଛିନ୍ନ ଅଙ୍ଗ ଆମେ ବିରାଟ ସୃଷ୍ଟିର ।

* କମ୍ୟୁନିଷ୍ଟମାନେ ଧର୍ମ ଓ ଈଶ୍ୱରରେ ବିଶ୍ୱାସ କରନ୍ତି ନାହିଁ ।

ଆମେ ସୂର୍ଯ୍ୟ, ଆମେ ତାରା, ଧ୍ରୁବ, ଓରାୟନ *
ଆମେ ବାୟୁ, ଜଳ, ବୃକ୍ଷ, ଜୀବ, ମାଟି ପରେ,
ଉନ୍ନତା-ପ୍ରତ୍ୟୟ୍ ଖାଲି ଦୃଷ୍ଟି, ଭାବନାର
ମାୟା-ଅନ୍ଧତାରୁ ଜାତ ।
ତୁମ୍ଭ ଦେଶେ 'ସେପି',
ପ୍ରତିଷ୍ଠିଛ, ତମେ ଯାହା ସ୍ରଷ୍ଟା ନଶ୍ୱର,—
ଭାବିଛ କି ସେ ଆଦର୍ଶ ପ୍ରଥମ-ପ୍ରଚ୍ୟୁର ?
ବୁଦ୍ଧବାଣୀ ରୂପେ ତାର ଆଦ୍ୟ ଆବିର୍ଭାବ
ଘଟିଥିଲା ଏ ଭାରତେ ସମଗ୍ର ଧରାରେ ।
ନର-ପ୍ରତିବନ୍ଧ-ମାନ୍ଦ-ଈଶ୍ୱରର ପୂଜା
ପ୍ରତ୍ୟାଖ୍ୟାନ, ଜୀବ ପୂଜା ମୈତ୍ରୀ କରୁଣାରେ
ପ୍ରସ୍ତୁତ, ସୋପାନ ରୂପେ ଆତ୍ମ-ଜାଗ୍ରତର,
ବୁଦ୍ଧ ହିଁ ଜଗତେ ଦେଲେ ପ୍ରଥମ ସମ୍ମାନ
ନରତ୍ତ୍ୱରେ ଜୀବନରେ, ଇହ ଜଗତରେ,
'ପ୍ରେମ' 'ଅହିଂସାରେ' କହି ଶ୍ରେଷ୍ଠ ଆରାଧନା ।
ଲେନା, ଭଲ୍‌ଗା, ନିପରର କୂଳେ କୂଳେ ଆଜି
ନରତ୍ତ୍ୱ-ବିକାଶ-ପୂଜା ପାଇଁ ନବାଳୟ
ତମ ଦେଶେ କରାଇଛ ଠିଆ, ବନ୍ଧୁ ଯାହା
ଧିକ୍‌କାର ପ୍ରାଚୀନ ମସ୍‌କ, ଚର୍ଚ୍ଚ, ମନ୍ଦିରରେ
ନୁହେଁ କିନ୍ତୁ ତାହା ବନ୍ଧୁ, ନର, ଈଶ୍ୱରର
ପରିପୂର୍ଣ୍ଣ ଜୟଗାନ । ହିଂସା—କଳୁଷିତ,
ମାନବ-ଆତ୍ମାରେ ତାହା ପୁଷ୍ପ ମାଳ୍ୟ ତଳେ
ଗୋପନ ଛୁରିକା ସମ ଘୃଣ୍ୟ ଅପମାନ ।

---

* ଓରାୟନ—ଆକାଶରେ ଏକ ବିରାଟ ଉଜ୍ଜ୍ୱଳ ନକ୍ଷତ୍ର ପୁଞ୍ଜ ।

ପୁରାଣ ଭାରତ, ବନ୍ଧୁ, ନିରନ୍ତରେ କେବେ
ଦେଖିନ ବିଚ୍ଛିନ୍ନକରି ନିଖିଳ ସୃଷ୍ଟିରୁ ।
ସଭ୍ୟତାର ଆଦିକାଳୁ ଭାରତର ଦ୍ରଷ୍ଟା
ଯାଇଛନ୍ତି ମୁକ୍ତ କଣ୍ଠେ କରି ପ୍ରଚାରିତ—
ସମଗ୍ର ସୃଷ୍ଟିରେ ବ୍ୟାପ୍ତ ଏକ ପ୍ରାଣ-ଶକ୍ତି
ପ୍ରକଟ ଯା' ଅଯୁତଧା ବ୍ୟୋମୁଁ ରେଣୁଯାଏଁ
ସୃଷ୍ଟି-ସ୍ଥିତି-ଲୟ କ୍ରମେ । ସେହି ସେ ଶକ୍ତିରେ
ଭାରତର ଋଷି ନାହିଁ ବର୍ଣ୍ଣିଛନ୍ତି କାହିଁ,
ନିୂର ଦଣ୍ଡଦାତା, ରାଜା, ଉଗ୍ରରକ ରୂପେ—
ବର୍ଣ୍ଣିଛନ୍ତି ତାରେ କହି ଅନ୍ଧକାର ପରେ
ଜ୍ୟୋତିର ପରମ ଜ୍ୟୋତି, ସ୍ଥୂଳ ତଳେ ସୂକ୍ଷ୍ମ,
ଆରେଣୁନକ୍ଷତ୍ରବ୍ୟାପି ଅଲଂଘ୍ୟ ନିୟମ,
ନିସର୍ଗରେ ଅଗଣିତ ଶରୀରୀପ୍ରମାଣ
ପ୍ରାଣୀ, ଉଦ୍ଭିଦର କୋଟି ନାମ ରୂପ ତଳେ
ଆବାଙ୍ମାନସ ଗୋଚର ସାର୍ବଭୌମ ସତ୍ତା ।
ସେହି ସେପିଲ୍‌କୋ ବାକ୍ୟଚତ୍ତ-ଅଗୋଚର
ଉଦ୍ଭାସିତ ଦେଖ ଏଇ ଆମ ଚତୁର୍ଦ୍ଦିଗେ
ଊର୍ଦ୍ଧ୍ୱେ, ଅଧେ, ବାମେ, ଦକ୍ଷେ, ସମ୍ମୁଖେ, ପଶ୍ଚାତେ
କୋଟି କୋଟି ସୂର୍ଯ୍ୟତାରା, ଗ୍ରହମଣ୍ଡଳୀର
ଅକଳ୍ପିତ ସମାବେଶେ, ମାଟିର ଧରାରେ,
ପୁଣି ଏହି ପ୍ରକୃତିର ମୋହନ ବିକାଶେ,
ଏ ଅନ୍ଧାରେ, ଏ ଆଲୋକେ, ପୁଣି ଏଇ ଦେଖ
ଧୀର ଊର୍ଦ୍ଧ୍ୱଗାମୀ ଏଇ ଉଗ୍ର ଶୀତାଂଶୁର
ଶାନ୍ତ, ସ୍ନିଗ୍ଧ ମାଯ୍ୟାଲୋକେ । କି ବାଧା ଏଥିରେ

ପ୍ରଣମିବା ବସୁଧାରେ, ମୁଗ୍ଧ ମାନବର,
ବ୍ୟାପକ ଏ ସୃଷ୍ଟିରେ ଅବା ତା ସ୍ରଷ୍ଟାରେ ?”

ତରୁଣ ସାଥୀରେ ନାହିଁ ଦେଇ ଅବସର
ଯୌବନ-ରଭସ-ବାବଦୂକା ସେ ତରୁଣୀ
ଚତ୍କାର କହଇ ପୁଣି, ଦେଖାଇ ଅଂଗୁଳ,
“ଦେଖ ସେପିଲ୍‌କୋ, ଦେଖ, କି ପରିବର୍ତ୍ତନ
ହଠାତ୍ ଏ ଯାଦୁମୟୀ ପ୍ରକୃତି-ନାଟ୍ୟର ।
ଚତୁର୍ଦ୍ଦିଗ ଜ୍ୟୋତ୍ସ୍ନାପ୍ଲୁତ, ତାରକା ମେଳଣ
ଊର୍ଦ୍ଧ୍ୱେ ହୋଇଆସେ ଧୀରେ କଅଁଳ ଅସ୍ପଷ୍ଟ,
ନମ୍ନେ କିନ୍ତୁ ପ୍ରଚ୍ଛନ୍ନ ଯା ଥିଲା ଏଇମାତ୍ର,
ଅସ୍ତେ ହୋଇ ଆସେ ସ୍ପଷ୍ଟ । ନୀଳଗିରି ଶ୍ରେଣୀ
ବନାନ୍ତମେ ଅନୁକରି ଭୂଷାଚିତ ବେଶ
ଦୂର ହିମାଦ୍ରୀର ଅବା ହସନ୍ତ କୁତୁକେ;
ଦୂର ଦ୍ୱୀପମାଳା, ଝରବନ, ଗୃହଆଡ଼
ଆଚ୍ଛାଦିତ ଏବେ ଶୀତାଂଶୁର ମାୟାଜାଲେ,
ଦୂର ସେହି ସିଂହେଶ୍ୱର ତଳେ ଆମ ବାସେ
ଜଳେ ଦେଖ ବିଦ୍ୟୁତର କନକ ପ୍ରଦୀପ ।
ଉତ୍କଣ୍ଠିତ ହୋଇଥିବେଣି କକା ଓ ମାଉସୀ,
ଚାଲ ଏବେ ଯିବା ଫେରି,—ଫେରୀରେ ନାଉରୀ ।”

"ଗାଅ ତମେ ଫେରାପଥେ ମଧୁ-ଗାନ ଏକ
ଗାଆନ୍ତୁ ଯା କଇବର୍ତ୍ତ କୃଷ୍ଣ ସାଗରରେ ।
କହୁଥିଲ ତୁମେ ପରା ଆମ ଏ ଚିଲିକା
କୃଷ୍ଣ ସିନ୍ଧୁ ଦୃଶ୍ୟ ଆଣେ ସ୍ମୃତିରେ ତୁମର,
ପରିପୂର୍ଣ୍ଣ କର ସେହି ସ୍ମୃତିର ଚିହ୍ନଟି
ଗାଇ ଏକ ଗୀତ ଇଉଫେମା କେଉଟର ।
ତମ ଗୀତ ପରେ ଏଇ ଓଡ଼ିଆ ଧୀବରେ
ଶୁଣାଇବେ ନିଜଗଢ଼ା ନାବିକ ସଂଗୀତ ।
ଏଇ ହ୍ରଦ, ଏଇ ଗିରି, ଏଇ ବେଳାଭୂମି,
ରୁଷିଆର କାସ୍ପିୟାନ, କୃଷ୍ଣ ସିନ୍ଧୁପରି
ମୋ ଜାତି-ଚିତ୍ତର ଏକ ଅଂଶ ଅବିଚ୍ଛେଦ୍ୟ ।
କବିଜନ-ବନ୍ଦିତ ଏ; ଇତିହାସ ଯୁଗରେ
ଯୋଗ୍ୟ ରଙ୍ଗମଞ୍ଚ ଭାବି ଯାଇଛି ଏଠାରେ
କରି କେତେ ରସବନ୍ତ ନାଟକାଭିନୟ,
ପରେ ଗଲେ କଥା ତାହା କହିବେ ବିସ୍ତାରେ ।

ନଉକା ଫେରଇ ଘାଟରେ ହ୍ରଦଜଳେ ସୃଜ
ଅଗଣିତ ତାରାପୁଞ୍ଜ ନିଜ ବିଘୂର୍ଣ୍ଣନେ,
ସେପିଲକୋ ଉର୍ଦ୍ଧ୍ୱେ, ଯୁହିଁ, ପ୍ରସାରି ତା ହସ୍ତ
ଉଚ୍ଛ୍ୱସିତେ ଗାଏ ଏହି ରୁଷୀୟ ସଂଗୀତ —
କୃଷ୍ଣସାଗରର ଏକ ନାବିକର ସ୍ୱପ୍ନ ।

## ଗୀତ

ଗହ୍ମ ଖେତର
ବସନ୍ତ ଲାଗି
ସୁନାର ଫସଲ ବିକାଶେ,
ସୁନାର ନାଟେଶା
ଯଉବନ ଦ୍ୱାରେ
ଦେବ ଫୁଲମାଳା କା ଆଶେ ?
କୂଳେ ଫେରିଗଲେ
ଚେର କୁଞ୍ଜରେ
ସ୍ୱପ୍ନ ମୁଁ ରଚେ—
ନବ ଭାରତର ଦୁନିଆ;
ଶଙ୍କା ମୁକ୍ତ,
ଗତ ଦାରିଦ୍ର୍ୟ
ନିଜେଇ ନିଜର
ପ୍ରଭୁ ! ମୁଁ କାହାର
ଦାସ ନୁହେଁ, ହେବ ଘୁନିଆଁ ।
ମାଟିର, ପାଣିର
ଶ୍ରମିକଶ୍ରେଣୀର
ଧାନକୁଠୀ ଆଜ
ମଧୁ ଆଶ୍ରମର ଉଠକ,
ଜମି, ଜୀବନର
ମାଲିକ ଆମର
ସମୃଦ୍ଧ,—ସର୍ବ-ଶୁଭଙ୍କ ।

ସେହି ସ୍ୱପ୍ନର
ସପାରେ ଥିବ
ନାହିଁ କି, ନାଟଶାଳା ପାଶରେ;
ଦେଖିବ କି ସେ କି
ଆଜି କା ନୟନେ
ଧୀପ ଜଳବାର
ମୁଗ୍ଧ, ମଧୁ ତା' ହସରେ ?
ବସନ୍ତ ଆଜି
ନୂତନ ଚେତନା
ଅଙ୍ଗେ ଅଙ୍ଗେ
ଆଣିଛି ପୁରୁଣା ଧରାର—
ନବ ଦୁନିଆଁର ସ୍ୱପ୍ନ; ମୋ ରଙ୍ଗେ,
ନାଟଶାଳା ଗାଆଁଇ, ଜନ ସଙ୍ଗୀତେ,
କମରେଡ୍ ହୋଇ,
ନ ହେବକି ମୋର,
ଫ୍ଲୋଟ ଉଡ଼ାଗର ମଶାଲ ?

ସେପିଲକୋ ଗାନ ପରେ ରାଲକା-କେଉଟ
ବଣ୍ଟୁମିକା-ଅନୁରୋଧେ ଗାଏ ଏହି ଗାନ
ନଉକାର ଗ୍ଲାଉ କଣେ ବସି ନେଇ ବୁଜ
ଖଞ୍ଜଣୀରେ ଦେଇ ତାଳ, ଭାବ ଅନୁରୂପେ ।

ବିଷୟୀ ବିଷରେ ଧାଇ ନହାଇ, ସରେ
ଦିବାନିଶି ପରମାୟୁ ।
ଚିତ୍ତ-କମଳରେ ବିଜେ କର ଥରେ;
ପାପ, ପ୍ରଭୁ, କଟିଯାଉ ।
ମୋରେ କମଳ
ପ୍ରାୟୁ ଥାଉ ଧ୍ୟାନ ପ୍ରବଳ

ଭାର୍ଯ୍ୟା, ଭଗିନୀ, ପୁଅ ପରିଜନ
କେ ନୁହେଁ ସଙ୍କଟ ସାଥିରେ
ସକଳ ସ୍ୱାର୍ଥ, ଅର୍ଥ ସାର ମାତ୍ର
ସର୍ବେ ଚଳେ ନିଜ ବାଟରେ ।
ଜୀବ-ଜୀବନ
ତୁମ୍ଭେ ହିଁ ସଙ୍କଟ-ତାରଣ

ବିପଦ, ସମ୍ପଦ, ଧନ, ମାନ, ପଦ
ସବୁ ପ୍ରଭୁ ତୁମ୍ଭ ରଚନା,
ଅହମିକା ବଶେ ନିମିଷେ ନିମିଷେ
ଧାଇ, ଯେତେ ପାଉଁ ଗଂଜଣା;
ଜଗନ୍ନାଥ ହେ,
ବୃଥା ଅହଂକାରୁ
ଜୀବନ ଉଦ୍ଧାର
ପ୍ରାଣେ ଦିଅ ପରମାର୍ଥ ହେ ।

ପରସ୍ପର ଅନୁବାଦେ  ମିଷ୍ଟା-ସେପିଲକୋ
ବୁଝିଲେ ତାତ୍ପର୍ଯ୍ୟ ଦୁହେଁ ଦୁଇ ସଙ୍ଗୀତର ।
ମିଷ୍ଟା ଭାବେ ମନେ ମନେ—"କଠିନ-ମରମ
କମ୍ୟୁନିଷ୍ଟ ମଧ୍ୟ ଖୋଜେ ଅନ୍ତରରେ ତାର
ମୃଦୁ, କାନ୍ତ ନାରୀ ସ୍ପର୍ଶ । ବରଂ ବିପ୍ଳବ
ନାରୀତ୍ୱର ସ୍ୱାଦ ବିନା ସତେ ବା ବିଅର୍ଥ !"
ସେପିଲକୋ ଭାବେ ତେଣେ ଅବ୍ୟକ୍ତ ଅନ୍ତରେ—
"ଆଶ୍ଚର୍ଯ୍ୟ ଏ ଭାରତର ଜନତା-ସଭ୍ୟତା
ନିରକ୍ଷର କଇବର୍ତ୍ତ ଖୋଜିପାରେ ଯହିଁ
ଦୈନନ୍ଦିନ ଶ୍ରମ ତଳେ ବିରାଟ ସତ୍ତ୍ୱରେ ।"
କେହି କାର ମନ-ବାଣୀ ନାହିଁ ଖୋଲି, ମୌନେ
ରହିଲେ ନଉକା ଛାତେ, ଗୁହିଁ ଚତୁର୍ଦ୍ଦିଗେ,
ନାବ ଧୀରେ ଧୀରେ ଲାଗେ ସିଂହେଶ୍ୱର କୂଳେ ।

---

# ଦ୍ୱିତୀୟ ସର୍ଗ

"ସମରେ ଦୁର୍ଦ୍ଧର୍ଷ ଜାତି, ସ୍ଥିର ବ୍ୟବସାୟେ,
ଶାସନେ ନିଷ୍କଣ୍ଠଧସ୍ୱ ନ୍ୟାୟ-ତନ୍ତ୍ର-ବାଦୀ,
ସେହି ସେ ଇଂରେଜ, କବା, କେମ୍ବ୍ରିଜେ, ଲଣ୍ଡନେ,
ଦେଖି ଯାଇ ମସ୍ତିତର, ଜ୍ଞାନ ବିଜ୍ଞାନର
ବିମୀତ ପୂର୍ଖୀସ୍ୱ ରୂପେ । ଦେବୀ ସରସ୍ୱତୀ
ସହି ନାହିଁ ପାରି ଅବା ବିଦ୍ୟାର ଅଶ୍ରଦ୍ଧା,
ଜନତା ବଞ୍ଚିତ ହେବା ଶାସ୍ତ୍ରର ଆନନ୍ଦୁ
ମୁକ୍ତି ମେପୁ-ସ୍ୱାର୍ଥ ଲାଗି, ଏ ଭାରତଭୂମେ,
ତେଜି କ୍ରୋଧେ, ବିରାଗରେ, ନୀରବରେ, ଚଳା
ଚାଲି ଯାଇଛନ୍ତି ବହୁକାଳୁ ଏଇ ଦେଶୁ
ବସି ଆଦରରେ ସେହି ଶ୍ୱେତାଙ୍ଗର ଦେଶେ ।
ଅକ୍ସଫୋର୍ଡ୍, କେମ୍ବ୍ରିଜର କଲେଜେ କଲେଜେ
ଭ୍ରମିଲେ ଲାଗିବ ଯେହ୍ନେ ଆସିଅଛ ତମେ
କେଉଁ ଏକ ପୁରାଣ ସେ ଦେବତାଧିଷ୍ଠାନେ
ନିଶ୍ଚିନ୍ତ, ପବିତ୍ର, ଯା'ର ଆସଙ୍ଗଲିପ୍ସାରେ
ଇତିହାସ ଯନ୍ତ୍ରୀ ମାନ ପରାଜୟ କବା,
ବିଶ୍ରାମ ନେଇଛନ୍ତି ଅବା ଅଳସ ଆମୋଦେ ।
ଭାଇ ପରି ଆଲିଙ୍ଗନ ଦିଏ ପରସ୍ପରେ
ତହିଁ ଉଗ୍ର ଆଧୁନିକ ଶୃଙ୍ଖଳ ଅଣ୍ଟରେ,
ଧର୍ମ ଓ ବିଜ୍ଞାନ ତହିଁ ବିଳସନ୍ତି ଯେହ୍ନେ
ଦୁଇ ଅଭିଜାତବଂଶୀ ସୁନ୍ଦରୀ ସଙ୍ଗିନୀ ।

କାଳଜୟୀ, କାନ୍ତି ଇତିହାସ-ଗୌରବିତ,
ସରଳ ସେ ସୌଧମାଳେ ଜ୍ଞାନ-ତପସ୍ୟାର
କି ମହାନ ଚିତ୍ର କହ, ଦର୍ଶନ ମାତ୍ରକେ
ବିଶ୍ରୁତାଙ୍କ ସେ ଅଧ୍ୟାପକ ଅଧ୍ୟାପିକାଗଣେ
ମନେ ହେବ, ଯେପରିକି ଏ ଆର୍ଯ୍ୟାବର୍ତ୍ତର
ଅତୀତର ଯାଜ୍ଞବଲ୍କ୍ୟ, ଲୋପାମୁଦ୍ରା ଦଳ
ତତ୍ତ୍ୱର ସନ୍ଧାନ ଲାଗି ପଦାର୍ଥର ମାୟା
ସମୂଳେ ଉପାଡ଼ି ଚିତ୍ତୁ, ତେଜି ଲୋକ-ସଙ୍ଗ,
ଅଶ୍ରୁତ-ବାଙ୍ମୟ ମୂକ ପ୍ରକୃତିର କୋଳେ
କରୁଥିଲେ ବାସ ଯେହ୍ନେ । ସେହ୍ନେ ସତ୍ୟଧ୍ୟାନୀ
ଜ୍ଞାନତପୀବୃନ୍ଦ ଆଜି ସପ୍ତସିନ୍ଧୁ ପାରେ
ଆବର୍ତ୍ତିତ ଶ୍ୱେତଭୂମେ ନବଜ୍ଞାନ ଆଣେ
ନବ କାଳେ, ନବ ବେଶେ, ନବ ପ୍ରୟୋଜନେ ।
ଏ ପୁରାଣ ଭାରତର କେଉଁ ପୀଠେ ହେଲେ,
ନ ଦେଖିଲି, କହ, ସେହି ଜ୍ଞାନ-ପୂତ ହୋମ,
ସତ୍ୟ ପାଇଁ ଜୀବନର ଯଜ୍ଞ-ନିବେଦନ
ତତ୍ତ୍ୱର ସନ୍ଧାନ ଯହିଁ ବ୍ରତ ଜୀବନର ।
ନାହିଁ ପାରି ଅବିମିଶ୍ର ଜ୍ଞାନର ସାଧନା,
ନାହିଁ ଦେଇ ସମାଜର ସର୍ବଶ୍ରେଷ୍ଠ ମାନ
ଜ୍ଞାନୀ, ଗୁଣୀ କଳାକାର, ବୁଦ୍ଧିଜୀବୀ ବୃନ୍ଦେ,
କହ ହେ, କେଉଁ କି ଜାତି କେବେ ଇତିହାସେ
ପାଇପାରିଅଛି କାହିଁ ବିଶ୍ବର ସମ୍ମାନ ?
ମାରିଛି ବା କରି ଧନ-ଭୋଗ ଅକୁଣ୍ଠିତେ ?”

ସେହି ସେ ରୂପସୀ ବାଳା ହୃଦବଦାରରୁ
ଫେର ସେହି ସିଂହେଶ୍ୱର ଶିଖର ସନ୍ଧ୍ୟ—
ଚଲକା-ପବନ-ନବ୍ଧଜତ ଅଳନ୍ଦରେ
ଅଳସେ ଗଳ୍ପଇ ବସି କକା ସାଥେ ତାର,
କମଳ-ଅନୁଜ ପେନ୍ଥ,—ସ୍ୱାମୀ ମହାନନ୍ଦ ।
ପାଶେ ମଧ୍ୟ ସମାସୀନା ମସି ବାତ୍‌ସଲ୍
ପୂରିତନ ଆମେରିକା-ଧାତ୍ରୀ କୁମାରୀର,
ମସ୍ତକେ ମହିମାମୟ ବମ୍ଭସ-ରଚିତ
ଶୁଭ୍ର-ରୌପ୍ୟ-କେଶ-ଚୂଡ଼ା ଚାନ୍ଦ୍ରବ ମୁକୁଟ ।
ବୃଷୀସ୍ଥ ଚରଣ ବନ୍ଦି ସେପିଲକୋ ଫେର
ନମ୍ରେ ସିଂହେଶ୍ୱର ଗ୍ରାମେ ଯାଇଚ୍ଛ ଅଟକ
ଦେଖିବାକୁ ଚନ୍ଦ୍ର ଚନ୍ଦ୍ରେ କୃଷକ ଜୀବନ ।
ଏଇ ଅବସରେ କକା ସ୍ୱାମୀ ମହାନନ୍ଦ
ବସି ଶୁଣୁଛନ୍ତି ବଦ୍ୟାବତୀ ଝିଆରୀର
ଭ୍ରମଣର ଅଭିଜ୍ଞତା । କହେ ବଶୁମିତ୍ରା
ପୁଣି ପୂର୍ବ ସୂତ୍ର ଧରି—
"ଶୁଣୁଛ ତ କକା ?"
"ଶୁଣୁଛି ମା, ଶୁଣୁ ଛି ମା ଅତ୍ୟନ୍ତ ଆଗ୍ରହେ,"
କହିଲେ ସେ ମହାନନ୍ଦ, ଗେରୁ-ଉଷ୍ଣୀଷର
ପୁଚ୍ଛ ତାଙ୍କ ଉଡ଼ୁଥାଏ ଚିଲିକା ପବନେ ।
"ଶୁଣୁଛି ମା, କହିଯାଅ, ନହେଲେ କପାଇଁ
ଜାଣିସି ଥାଆନ୍ତି ତୋର ଭ୍ରମଣର ଜ୍ଞାନ ?
କହିଯା ମା"
କହେ ପୁଣି ବଶୁମିତ୍ରା ହସି

"ଯାଅ କହି ଥରେ ତମେ, ବୁଲି ଆସ ଯାଇ
ସେ ସଭ୍ୟ, ସୁନ୍ଦର ଦେଶେ, ମନୁଷ୍ୟ, ପ୍ରକୃତି
ଦୁହିଁର ମିଳନ ଯହିଁ ମାଟିର ଧରାରେ
ପରିଣତ କରିଅଛି ପ୍ରମୋଦ ଉଦ୍ୟାନେ,
ଦୁଃଖମୟ ଏ ଜୀବନେ ଉପଭୋଗମୟ ।
ଏସିଆର ଜୀବନ ହିଁ ଦୁଃଖର କାହାଣୀ,
ୟୁରୋପେ ଜୀବନ ଅର୍ଥ ସଂଗ୍ରାମ ଓ ଭୋଗ ।
ଏ ଦେଶେ ମାନବ ଆତ୍ମା ଚିର ପଳାତକ
ଜୀବନର ଯନ୍ତ୍ରଣାରୁ; ସେ ଦେଶେ ଜୀବନ
ଯେହ୍ନେ ପଶୁରାଜ-ଶକ୍ତିମନ୍ତ, ଭୟହୀନ
ବରିନେଇ କେଶରିଣୀ-ପ୍ରକୃତି-ଲଳନା
ଭୋଗେ ତାର ବକ୍ଷୋଷିକାମୟ ରସଧାର
ନିଜ ହସ୍ତେ ଯତ୍ନେ କରି କାନ୍ତେ ପରିଣତ ।
କିପାଇଁ ସନ୍ନ୍ୟାସୀ ହେଲି, କି ପାଇଲି କହ,
କି ଦେଇ ବା ଯିବ ତମେ ଜନମ ଧରାରେ ?
କିସ ଏ ଜୀବନାଦର୍ଶ ? ଆରାଧ୍ୟ ମୋ ପିତା,
ବରେଣ୍ୟା ଜନନୀ ମୋର, ଥାଇ ଭାରତୀୟ,
ଅନ୍ତରରେ ଥିଲେ କିନ୍ତୁ ଗାଢ଼ ୟୁରୋପୀୟ ।"

ଯୋଡ଼ କର ନୀରବରେ, ଜଣାଇ ବିନତି,
କହନ୍ତି ସନ୍ନ୍ୟାସୀ କହ ଧୀର, ନମ୍ର ବାଣୀ,
"ନ ଭୁଲ ମା, ଯୁଗ୍ମ ସେହି ମାନବ, ମାନବୀ
ମୋହର ବି ଚିର ପୂଜ୍ୟ । ପିତା-ମାତା ଆମ,

ଜାଣୁ ଛ ମା ଗଲେ ଗୃହ ଦୁଃଖେ, ଅବସ୍ଥାପ୍ନେ,
ଭାଇ ସେହ୍ନ ବଢ଼ାଇଲେ ମତେ, ଭଗିଣୀରେ
ହୋଇ ଯୁଗ୍ମ ପିତା-ମାତା, ଉଦାର ଭ୍ରାତୃଜନେ ।
ସେହ୍ନ ତ ମା, ଭାରତର ସ୍ୱର୍ଣ୍ଣମୟ ଆତ୍ମା,
ନିବଡ଼ ଦାରିଦ୍ର୍ୟ ମଧ୍ୟେ, ଭାଇ ଭଗିନୀର
ନିର୍ମଳ ଏ ସ୍ନେହ-ବନ୍ଧ, ପ୍ରାଣର ସାରଲ୍ୟ,
ପଦାର୍ଥ ଉପେକ୍ଷି, ତାର ତଳେ ଖୋଜିବାର
ଅଦୃଶ୍ୟ ଆନନ୍ଦ, ତେଜି ପଦାର୍ଥର ବାହ୍ୟ
ତାତ୍‌କାଳିକ ଶୃଙ୍ଖଳରେ, ପରିଣାମେ ତାର
ପାଇବା ହିତାୟୁ ଦୃଷ୍ଟି·····ଆଜି ମା ସେକଥା,
ପରେ ତତେ ବୁଝାଇବି······କହ୍ନି ଯା'ଛ ଥରେ
ପୂର୍ବ ତୋର ଅଭିଜ୍ଞତା, ଦେଶ-ପର୍ଯ୍ୟଟନେ ।
ଆସିଯିବ ସେପିଲକୋ—ଘଣ୍ଟା-ନିୟନ୍ତ୍ରିତ
ୟୁରୋପୀୟ ପ୍ରାଣ ତାର ଲୋଡ଼ିବ ଉଦର
ପୁଣି ତ ଏ ଅଳ୍ପ କ୍ଷଣେ । ଏଇ ଅବସରେ
ଶୁଣିଯାଏ ତୋ ମୁଖରୁ, ତୋର ଅଭିଜ୍ଞତା ।"

"ହଉ କକା" କହି ମିନା ପୁଣି ଧରେ ସୂତ୍ର—
"ପୂର୍ଣ୍ୟତୋୟା ଜାହ୍ନବୀର ଗର୍ବ କରୁଁ ଆମେ,
କିନ୍ତୁ କକା, ସେଇ କ୍ଷୁଦ୍ର କାମ୍—ଆଇସିସ୍— *

* କାମ ନଦୀକୂଳରେ କେମ୍ବ୍ରିଜ୍ ଓ ଆଇସିସ୍ କୂଳରେ ଅକ୍‌ସଫୋର୍ଡ଼୍ ଅବସ୍ଥିତ । ଆମ ଓଡ଼ିଶାର ବଡ଼ ବଡ଼ କେନାଲ୍‌କୁ ଯୋଡ଼ିଦେଲେ ଯାହା, ଏହି ନଦୀଗୁଡ଼ିକ ପ୍ରାୟ ସେତିକି ଓସାର ହେବେ ।

ଧୌତ ସେହ୍ବ ସୌଧୋଦ୍ୟାନମୟ ଜ୍ଞାନପୀଠ,
ସେ କେମ୍ବ୍ରିଜ୍, ଅକ୍ସଫୋର୍ଡ଼େ, ଯେତେ କବି, ଜ୍ଞାନୀ
ଉଦ୍ଭବ ସମଗ୍ର ବିଶ୍ୱ କଲେ ସମୁଜ୍ଜ୍ୱଳ,
କାହିଁ ତାର ପଟାନ୍ତର ? ଏକା ସେ କେମ୍ବ୍ରିଜେ
ନିଉଟନ୍, ଡାରଉଇନ ମୂକ ପ୍ରକୃତିର
ନିରୁଦ୍ଧ ରହସ୍ୟଜାଲ ଗଲେ ତ ଉଦ୍‌ଘାଟି,
ଓ୍ୱାର୍ଡ଼ସ୍‌ୱର୍ଥ, ବାଇରନ ଗୁଡ଼ଗଲେ ଗାଥା,
(ଏକ ଦିଏ ପ୍ରାଣେ ଶାନ୍ତି, ଆନ ସୃଜେ ଝଡ଼)
ମିଲ୍‌ଟନ, ଟେନିସନ୍ ସେହ୍ବ ସ୍ଥାନେ ପୁଣି
ମାନବର ସ୍ୱପ୍ନ, ଆଶା, ବିଶ୍ୱାସ ସକଳ,
ଥୋଇଗଲେ କାବ୍ୟେ, କାବ୍ୟେ, ମାନବ ବାଣୀର
ଅତୁଳ୍ୟ ଐଶ୍ୱର୍ଯ୍ୟ, ଶୀର୍ଷ କରେ ଯା ପ୍ରକାଶ !"

ମୃଦୁ ହସି କହେ ବୃଦ୍ଧା ମିସି ବାଟସନ,
"ଧନ ମୋର, ମାଲ୍‌କମ୍ ସହ ପରିଚୟ,
ହେଲୁ ନା ସେ କେମ୍ବ୍ରିଜରେ ? ଅବା ଏଡ଼ିନବରେ ?—
ନା, ନା, ନସହ୍ବ କେମ୍ବ୍ରିଜରେ, ଟ୍ରିନିଟି କଲେଜ—
ସୁବିଖ୍ୟାତ ଉଦ୍ୟାନରେ ।"

"ହଁଅ ଲୋ ମାଉସୀ,
ଟ୍ରିନିଟି ଉଦ୍ୟାନେ ହେଲା ପ୍ରଥମ ସାକ୍ଷାତ"
କହେ ବିଶ୍ୱମିତ୍ରା ହସି । କଜା ଆଡ଼େ ଫେର

କହେ ପୁଣି—"ସ୍କଚ-ଇଂଗ ଧନିକ ଯୁବକ,
ସୁନ୍ଦର, ଆଦର୍ଶବନ୍ତ, ବିଶ୍ୱଜନପ୍ରେମୀ,
ଦେଖିବା ମୁହୂର୍ତ୍ତୁ, କକା, ମାଉସୀ ମୋହର,
ପୁଅ ପରି ସ୍ନେହ ତାକୁ ଦେଇଛନ୍ତି ଢାଳି,
ହୋଇ ମୋ' ହର୍ଷର ବନ୍ଧୁ । ଆସିବ ସେ ଏବେ—
କହୁ କକା ସାରିଁ ଦିଏ ପର୍ଯ୍ୟଟନ-କଥା ।"

"ଦେଖି ଯା ଆସିଛି କକା, କିପରି ବର୍ଣ୍ଣିବ ?
ଲଣ୍ଡନ, ପାରିସ୍ ଆଉ, ଭେନିସ୍ ବିଭବ ?
ବିରାଟ ସେ ଜନାରଣ୍ୟ—ଯା' ନାମ ଲଣ୍ଡନ—
ସେଇଠି ଇଂରେଜ ଆଣି ସଂପାଦିଛି ଗୃହେ
ସମଗ୍ର ବିଶ୍ୱର ଜ୍ଞାନ, କଳା, ଇତିହାସ,
ଏକ ବର୍ଷ ଯାର ପିଇ ଜ୍ଞାନ-ଦୁଗ୍ଧ-ଧାର
ଏକାଧାରେ ମାର୍କସ୍ * ଆଉ ଗାନ୍ଧିର ଉଦ୍ଭବ
ହୋଇଛି ଇଦାନୀ କାଳେ । ମାନବ ଲୀଳାର
ପ୍ରତିଟି ଅଂଶର ତତ୍ତ୍ୱ ପରମ ବିକାଶ,

---

* କମ୍ୟୁନିଜମ୍‌ର ଜନ୍ମଦାତା କାର୍ଲମାର୍କସ ଜର୍ମାନ୍ ହେଲେହେଁ ଜୀବନର ଶ୍ରେଷ୍ଠାଂଶ ସେ ଲଣ୍ଡନରେ କଟାଇଥିଲେ ଓ ତାଙ୍କ ଜୀବନ-ଦର୍ଶନର ଉପାଦାନ ସେ ବ୍ରିଟିଶ ମ୍ୟୁଜିୟମର ପୁସ୍ତକାଳୟରୁ ହିଁ ସଂଗ୍ରହ କରିଥିଲେ । ମୋହନ ଦାସ କରମଚାନ୍ଦ ଗାନ୍ଧି ନାମକ ଏକ ଗୁଜରାଟୀ ଯୁବକ ଏଇ ଲଣ୍ଡନରେ ବାରିଷ୍ଟରି ପଢ଼ିଲା ବେଳେଇ ତାଙ୍କ ଭିତରେ ପରବର୍ତ୍ତୀ ମହାତ୍ମାର ବୀଜ ଉପ୍ତ ହୋଇଥିଲା । ଗାନ୍ଧି ଈଶ୍ୱରଭକ୍ତ । କାର୍ଲମାର୍କସ ନିରୀଶ୍ୱର ।

ଭସ୍କର୍ଯ୍ୟ ଚାତୁର୍ଯ୍ୟ ଯାଏଁ ; ପରମ ତପସ୍ୟା
ବିରାଜିତ ପୁଣ୍ୟାଲୋକେ, ବ୍ୟଭିଚାର ପାଶେ ।
ଉଗ୍ର ସ୍ୱାଧୀନତାପ୍ରେମୀ * ସାକ୍‌ସନ ସେ ଜାତି
ପ୍ରତ୍ୟେକ ଆତ୍ମାରେ ଦେଇ ନିର୍ବନ୍ଧ ସ୍ୱାତନ୍ତ୍ର୍ୟ
ସମଗ୍ର ଜାତିରେ କରିଅଛି ବର୍ଣ୍ଣମୟ
ଅପୂର୍ବ ଜୀବନ-ପୁଷ୍ପ-ସ୍ୱକୀୟ-ବିକାଶେ ।
ଏ ଧରାର ଯେଉଁ ପ୍ରାନ୍ତୁ ଆସୁନା ବିଦେଶୀ,
ଦେଲା ମାତ୍ରେ ପାଦ, ଶ୍ୱେତଦ୍ୱୀପ ମୃତ୍ତିକାରେ
ହୁଏ ସେ ସ୍ୱାଧୀନ ନର, ନିଃଶଙ୍କ, ନିର୍ଭୟ,
ଖାଣି ଇଂରେଜର ସାଥେ ସମ-ଅଧିକାର ।
ସ୍ୱଭାବ-ସଂକୀର୍ଣ୍ଣ ନର ହେବା ବିକଶିତ
ଏଭଳି ଆତିଥ୍ୟେ, ଆଉ ପୁଣ୍ୟ ଔଦାର୍ଯ୍ୟରେ
ଘଟିବାର କାହିଁ କିଏ, ଦେଖିଛ ଶୁଣିଛ ?
ତା'ପରେ ଦେଖିଲି ପାରୀ,—ନଗରୀ ସମାଜେ
ପ୍ରକୃତ ସୁଷମାମୟୀ, ଅନ୍ତରହାରିଣୀ,
କିନ୍ତୁ ତାର ମାୟା ଜାଲେ ଫରାସୀ ଜାତିରେ
ରଖିଛି ସେ କ୍ଷିପ୍ତ-ଚିତ୍ତ, କ୍ଷିପ୍ରୋଷ୍ଣ-ଶୋଣିତ,
ଧୈର୍ଯ୍ୟହୀନ, ସ୍ଥୈର୍ଯ୍ୟହୀନ, ଦୃଢ଼ ବୀର୍ଯ୍ୟହୀନ ।

---

* ଆଧୁନିକ ଯୁଗରେ ବ୍ୟକ୍ତି-ସ୍ୱାଧୀନତା ଓ ଗଣତନ୍ତ୍ର ଶାସନର ମହାନ, ସୁନ୍ଦର ଆଦର୍ଶ ହେଉଛି ଆଙ୍ଗ୍ଲୋ-ସାକ୍‌ସନ ଜାତି । ଇଂରେଜମାନେ ଏହି ଆଙ୍ଗ୍ଲୋ-ସାକ୍‌ସନ ଜାତିର ଲୋକ । ମାନବିକ ମର୍ଯ୍ୟାଦାର ପରମତମ ଆଦର୍ଶ ଇଂଲଣ୍ଡର କବି ଓ ଚିନ୍ତାକାରକମାନଙ୍କ ଲେଖାରେ ହିଁ ଫୁଟି ଉଠିଛି । ଇଂଲଣ୍ଡର ମାଟିରେ ପାଦ ଦେଲେଇ ମଣିଷ ସ୍ୱାଧୀନ ।

ତା'ପରେ ଇଟାଲି ଗଲୁ, ୟୁରୋ-ସଭ୍ୟତାର
ପ୍ରାଚୀନ ଜନନ-ସ୍ଥଳ । ରୋମ୍, ନେପଲ୍‌ସ୍,
ଫ୍ଲରେନସ୍, ମିଲାନ ଆଦି ପ୍ରାଚୀନ ନଗରୀ
ଚୂଡ଼ାନ୍ତ ଯେ ସବୁ କଳା ନଗର-କଳାର । *
ଇତିହାସ-ବିଭୂଷିତ ପ୍ରତି ଗୃହ ଯାର
ପ୍ରତି ପଥ, ପ୍ରତି ଘାଟ, ପ୍ରତି ଶୃଙ୍ଗାଟକ,
ସେହି ସେ ମହିମାମୟୀ ରୋମକ ନଗରୀ
ଅଭିଭୂତ କରେ କଳା, ଦର୍ଶକ ମାନବେ ।
ନୀଳ, ଶାନ୍ତ, ଅର୍ଦ୍ଧବୃତ୍ତ ସାଗର ଆବୋରି
ନେପଲସ ନଗରୀର କିବା ସେ ସୁଷମା,
ଶ୍ୱେତବସ୍ତ୍ରା ରୂପସୀ ସେ ହେଲା-ଲୀଳାୟିତା
ଯେସନେ ନୀଳ ଶଯ୍ୟାପରେ, କାନ୍ତ ଭୂଧରର ।
ବରୁଣର ରାଜଧାନୀ, ଜଳପଥମୟୀ,
ଭେନିସି ପୁଣି ସେ, କଳା, ଆରେକ ବିସ୍ମୟ,
ପ୍ରତି ଗୃହ ବାତାୟନ ଚୁମ୍ବି ଚୁମ୍ବି ଯହିଁ
ଦୁର୍ଦ୍ଦାନ୍ତ ସମୁଦ୍ର ଯାଏ ଶାନ୍ତ, ସଖୀ ପରି । †
'ଜଳ' ରାଜ୍ୟ, କଳା, ଯିବେ ପାରିଥିଲି କରି
ଯେ ଜାତି ବିସ୍ତାର କରି 'ସ୍ଥଳ'ର ସାମ୍ରାଜ୍ୟ,
ସମୁଦ୍ର ଊର୍ମିରେ କଲା, ଗୃହ, ରାଜପଥ,

---

* ନଗର-ନିର୍ମାଣ, ବିଜ୍ଞାନ ଓ କଳା ମଧ୍ୟଯୁଗୀୟ ଇଟାଲିରୁ ହିଁ ବାହାର ସମଗ୍ର ପୃଥିବୀରେ ପ୍ରସାରିତ ହୋଇଛି ।

† ଭେନିସ୍ ନଗରୀ ସମୁଦ୍ର ଜଳରୁ ଉଦ୍ଭୂତା । ତାର ଘରମାନଙ୍କର ଦ୍ୱାର ଓ ବାତାୟନର ଠିକ୍ ନିମ୍ନରେ ଆଡ୍ରିୟାଟିକ ସମୁଦ୍ରର ଶାନ୍ତ ଲହରି ଛୁଇଁ ଛୁଇଁ ଯାଏ ।

କଳ୍ପନା କରତ କକା, ନର ସଭ୍ୟତାର
କ ଉଚ୍ଚ କୋଟିରେ ଯାଇ ଉଠିଥିଲ ଦିନେ
ୟୁରୋପର ସେ ଶ୍ୱେତାଙ୍ଗ ।
ସେଠୁ ଫେରି ଏଇ
ପ୍ରାଚୀନ ଭାରତବର୍ଷେ ଭ୍ରମି ପ୍ରାନ୍ତୁ ପ୍ରାନ୍ତେ,
ଦେଖିଲ ଯା ବର୍ବରିକା, ଘୃଣ୍ୟ ଆଦିମତା,
ଯେ ଦାରିଦ୍ର୍ୟ, ଅସଭ୍ୟତା, କୁତ୍ସିତ-ସନ୍ତୋଷ,
ତୁମକୁ କହୁଛି, କକା, ମର୍ମବାଣୀ ମୋର,
ୟୁରୋପର ତୁଳନାରେ ଆମର ଏ ଦେଶେ
କହିବାକୁ କୁଣ୍ଠିତ ମୁଁ ସଭ୍ୟ, ଭବ୍ୟ ବୋଲି ।
ଭାରତୀୟ ସଂସ୍କୃତିର ଖାଣ୍ଟି ଉତ୍ସ ସବୁ,
ଦେଖାଇବ ବୋଲି ଏଇ ମାଉସୀଙ୍କୁ ମୋର;
ଗଲୁଁ ପୁରୀ, ବୃନ୍ଦାବନ, ଗୟା, ଋଷିକେଶେ,
ବନାରସେ, ମଥୁରାରେ, ତ୍ରିବେଣୀ ସଙ୍ଗମେ ।
କ ଦେଖିଲୁ କହୁ କକା ? କ ଧର୍ମ ତମର ?
କ ସଭ୍ୟତା, କ ସଂସ୍କୃତ, କସ ଲୋକାଚାର ?
ଲଜ୍ଜିତ ନ ହୋଇ ଆମେ ଗର୍ବିତ ହେ ପୁଣି
ଏସବୁ ବର୍ବରତାରେ ? ଗୟା, ମଥୁରାରେ
ଧର୍ମ ତ ଦେଖିଲୁ ନାହିଁ, ଦେଖିଲୁଁ କେବଳ
ମୂର୍ଖ, ହୀନ, ଗୁଣ୍ଡାଦଳ ଈଶ୍ୱରେ, ଧର୍ମରେ
ପଣ୍ୟ କରି ବଂଚୁଛନ୍ତି ଠକାଇ ଜନତା ।
ନିର୍ମଳ ଜାହ୍ନବୀ ଜଳେ ମୃତ ଦେହ ରାଜି
ଧାଡ଼ି ଧାଡ଼ି ପଡ଼ିଥିବା ବନାରସ-ଘାଟେ
ବିଦ୍ରୋହୀ ଉଠିଲି ଶତ୍ରୁ ଦେଖି ସେ ଜଘନ୍ୟ

ବସ୍ତିକାମୟ ଦୃଶ୍ୟ । ଧୂଳିମୟ ପଥ
ଦୁଇ ପାର୍ଶ୍ୱେ ଦେଖି ଦେଖି ଚିତ୍‌କାସ୍ତ ଭିକ୍ଷୁକ,
କୁଷ୍ଠରୋଗୀ ଦଳେ ଦଳେ, ଋଷିକେଶେ ପୁଣି
ଘୃଣାରେ ଭରିଲା ଚିତ୍ତ, କିବା, ସେହିପରି ।

କିନ୍ତୁ ଋଷିକେଶ ତେଜି ଚଳିଲୁଁ ମସୌରୀ—
କି ଭିନ୍ନତା ! ପ୍ରକୃତିରେ ଅଣାଇ ଆୟତ୍ତେ,
ହିମାଳୟ କଟିତଟେ ରଚି ଶୈଳମାଳେ,
କି ସୁନ୍ଦର ପୁରୀ ଗଢ଼ି ଯାଇଛନ୍ତି ଇଂରେଜ ।
ଗଲୁଁ ତହିଁ ଗିରି-ଶୃଙ୍ଗ-ଶୀର୍ଷ-ଅବସ୍ଥିତ
ଖ୍ରୀଷ୍ଟୀୟ ବିଦ୍ୟାନୁଷ୍ଠାନେ, ପୁଲନ୍ଦରୁ ଯାର
ସ୍ପଷ୍ଟ ଦିଶେ ହିମାଦ୍ରିର ବରଫ-ମୁକୁଟ
ଭେଦି ଊର୍ଦ୍ଧ୍ୱେ ମେଘଲୋକ । କି ପରିଚ୍ଛନ୍ନତା,
କିବା ଶୁଚି, କିବା ଭାବ, କିବା ସମାବେଶ,
କି ଶୁଦ୍ଧ, ପବିତ୍ର ବେଶ, ସେବା ସମର୍ପିତା
* ଭଗିନୀ ଦଳର ତହିଁ ସ୍ୱାସ୍ଥ୍ୟ ସୁଷମାରେ
ସମଗ୍ର ପୀଠଟି ଯେବେ ହେଲା ଅନୁଭବ
ସୁଲକ୍ଷିତ, ସୁପଠିତ, ପୁଣ୍ୟ ମନ୍ତ୍ର ଏକ ।
ସେହି ଶୁଚି, ସେହି ଭାବ; ସେ ପରିଚ୍ଛନ୍ନତା,
ଦେଖି ମୁଁ ହୋଇଛି ମୁଗ୍ଧ ପୁଣି ହେ ସଦୃଶ
ଇସ୍‌ଲାମର ମସଜିଦେ । ଭିନ ଧର୍ମ କିବା,

* ଚିରକୁମାରୀ ବ୍ରତଧାରିଣୀ, ସେବାନ୍ୟସ୍ତପ୍ରାଣା କାଥଲିକ ସନ୍ୟାସିନୀମାନଙ୍କୁ ସିଷ୍ଟର ବା ଭଗିନୀ କୁହାଯାଏ ।

କୁତ୍ସିତ ଏପରି କହାଁ, ଆଦମ ବର୍ବର ?
ଶିବ-ସୁନ୍ଦରର ପୂଜା ହୋଇବ କପାଇଁ
ଏସନେ ସୁରୁମାହୀନ, କଦର୍ଯ୍ୟ, ଅଜ୍ଞାନ ?
ଯେ ଜାତି ବା ଜାଣି ନାହିଁ ସୌନ୍ଦର୍ଯ୍ୟର ପୂଜା
ପ୍ରତିଟି କର୍ମରେ ତାର, ପ୍ରତି ପରିବେଶେ,
ସେ ଜାତିକ କରିପାରେ ସଭ୍ୟତାର ଗର୍ବ ?
ରାମକୃଷ୍ଣ ମିଶନରେ, ଅରବିନ୍ଦାଶ୍ରମେ
କରିବାକୁ ପରିବେଶ ଈଶ୍ୱର ପୂଜାର
ଶୁଚିମନ୍ତ, ଶ୍ରୀମଣ୍ଡିତ, ବିଜ୍ଞାନ-ଶୃଙ୍ଖଳିତ,
ହୋଇଛି ଆରମ୍ଭ କିଛି । ଗାନ୍ଧି-ଅରବିନ୍ଦ—
ବିବେକାନନ୍ଦର ବାହ୍ୟ ଶୁଦ୍ଧ ଶୁଚିତାର
ବାଣୀ ଯେ ପର୍ଯ୍ୟନ୍ତ ନାହିଁ କରିଛି ଗ୍ରହଣ
ଏ ଭାରତ, କହ, ଥାଉ ଯେତେ ନା ଦର୍ଶନ
ତମର ପୁସ୍ତକାଳୟେ, ସଭ୍ୟ ଜାତି ବୋଲି
ତମରେ କହିବ କଏ ?

ସାମାନ୍ୟ ଜାପାନ

ତମ ଧର୍ମ, କଳା ନେଇ, ସୌନ୍ଦର୍ଯ୍ୟ ପୂଜାରେ
ତୁମକୁ ଲଜ୍ଜିତ କରେ । ସମଗ୍ର ଜଗତେ,
ଶ୍ରେଷ୍ଠ ସେହି ଦ୍ୱୀପମାଳା ଉଦୟ ସୂର୍ଯ୍ୟର *
ରୂପ-ତୀର୍ଥ ଆଜି କହ—ଶୟନ, ଭୋଜନ,
ପରିଧାନ, ପରିବେଶ, ସବୁହିଁ ସେଠାରେ
ରୂପମୟ । ରୂପମୟ ଏ ବିଶ୍ୱରେ, କହ

* ଜାପାନର ଜାପାନୀ ନାମ ନିପ୍‌ପନ, ଯାହାର ଅର୍ଥ ହେଉଛି 'ଉଦୟ ସୂର୍ଯ୍ୟର ଦେଶ' ।

ସାମାନ୍ୟ ସ୍ୱସ୍ତିବନ୍ତ, ବୁଦ୍ଧିମନ୍ତ ଯେହୁ,
କୁତ୍ସିତ, ଅମେଧ୍ୟ, ଘୃଣ୍ୟ, ହକାରକ ଯାହା,
ତା' ଦେଇ କରେ ପୂଜା କଣବ ଈଶ୍ୱରେ,
ନାହିଁ ଘଣପାରେ ମୁହିଁ, ଲଗେ ଯେ ଅଦ୍ଭୁତ !"

ଏକାଳେ ପଣିଲ୍ ଗୃହେ ଧୀରେ ସେପିଲକୋ,
ମୃଦୁ ସ୍ମିତ ଧଣ ମୁଖେ । କକା ଓ ଝିଅ।ଘ,
ଉନ୍ମୁଖେ ରହିଲେ ଗୃହିଁ ତାକୁ । ମହାନନ୍ଦ
ଜିଜ୍ଞାସିଲେ ସ-କୌତୁକେ—"ତୃଷୀପୁ ତରୁଣ,
କ ଦେଖିଲ ନମ୍ନ ଗ୍ରାମେ, ଆମ ଜୀବନର
କ ତତ୍ତ୍ୱ ପାଇଲ ତହିଁ ? କବା, କବା ଅବା
ଅପସନ୍ଦ ହେଲ୍ ତବ—କହ, ଶୁଣୁକନା ।"

ଧୀରଭାଷୀ ସେପିଲକୋ କହେ ମୃଦୁ ବାକ୍ୟେ,
ସେହି ସ୍ମିତ ରଖି ମୁଖେ—"ଆଶା କରେ କକା
ସତ୍ୟ ଯହିଁ କହେ, ତମେ, ନଭାବ ଅନ୍ୟଥା,
ନଜ ଲୋକ ବୋଲ ମୋର ବାଣୀରେ ଧେନବ ।
ନଜେ ମୁହିଁ ହୋଇଥାନ୍ତି ଯହିଁ ଭାରତୀୟ
ତେବେ ମଧ୍ୟ ଏହି ବାଣୀ ଦୃଢ଼େ ପ୍ରସ୍ଥରନ୍ତି
ନାହିଁ ଡର ଉପହାସେ । ଏହି ଅତ୍ୟାଚାର
ଆମେ ମଧ୍ୟ ଋଷିଆରେ ସହୁଥିଲୁ ଦନେ,
ସ୍ୱାର୍ଥପର ପୁରୋହିତ ସମ୍ପ୍ରଦାୟ ହାତେ

ସମଗ୍ର ମାନବ ଜାତି ଯୁଗ ଯୁଗ ଧରି
ସହି ଆସିଅଛି ଏହି ଘୋର ଅନ୍ଧକାର
ଅମାନୁଷ ଅତ୍ୟାଚାର । ନାନା ମିଥ୍ୟା ଆଶା
ପୂରାଇ ଜନତା ମନେ, ନାନା ଉପାୟରେ
ଭୁଲାଇ ଜନତା ଚିତ୍ତ, ତା-ବୁଦ୍ଧି-ବଳର
ସମଗ୍ର ତା'ଠାରୁ ନେଇ, ରଖି ନିଜ ହାତେ,
ମୃତ୍ୟୁ-ପର ନାନା ଭୟେ ଭରି ତା ମସ୍ତିଷ୍କ
ଜଳା, ଏ ଭାରତ ପରି, ଦେଖିବ ସର୍ବତ୍ର,
ପୁରୋହିତେ ଜନତାରେ ପଶୁପଲ ପରି
ରଖିଥିଲେ ଇତିହାସେ । ଏଇ ଭାରତର
ବୁଦ୍ଧ ହିଁ କରିଲେ ଆଦ୍ୟେ ଦୃଢ଼ ପ୍ରତିବାଦ
ଏଇ ଘୋର ପ୍ରବଞ୍ଚନାମୟ ମିଥ୍ୟା ଧର୍ମେ,
ସେହି ହିଁ ସମଗ୍ର ଧରଣୀର ଇତିହାସେ
ଶାସ୍ତ୍ର, ପୁରୋହିତ, ଅବା ବାହ୍ୟ ବସ୍ତୁ କରୁ—
କାହାରଠି ନାହିଁ ରଖି କଣ୍ଟିତ ନିର୍ଭର,
ଶିଖାଇଲେ ମନୁଷ୍ୟରେ ନିଜେ ହିଁ ନିଜର
ହେବାକୁ ଆଲୋକ-ଶିଖା, ଆପଣା ଭାଗ୍ୟର
ନିଜେଇ ହେବାର ସ୍ରଷ୍ଟା । ଠିକ୍ ସେଇ କଥା
ପଞ୍ଚବିଂଶ ଶତାବ୍ଦୀର ବ୍ୟବଧାନ ପରେ,
ଲେନିନ୍ କହିଲୁ ଉଚ୍ଚେ, ଧର୍ମ-ମୂଢ଼ ଜନେ
ରୁଷିଆର । ପୁଞ୍ଜିପତି-ପୁରୋହିତ-ଶ୍ରେଣୀ—
—ନିଷ୍ପେଷିତ, ରୁଷିଆର ସେକାଳ ଜନତା,
ଠିକ୍ ଏଇପରି ଥିଲେ, ଦେଖି ମୁଁ ଆସିଲି

ଏଇ ନିମ୍ନ ଗ୍ରାମେ ଯାଁକୁ,—ପଶୁ ଜୀବନରୁ
ଯାଙ୍କ ସ୍ତର ସାମାନ୍ୟ ହିଁ ମାତ୍ର ଉଚ୍ଚତର ।
ବିମୁକ୍ତ ଭାରତ ସତ୍ୟ, ଇଂରେଜ ଶାସନୁ,
କିନ୍ତୁ ନିଜ କୁସଂସ୍କାର, ଅନ୍ଧବିଶ୍ୱାସର
ସହସ୍ର କୁତ୍ସିତ ଆତ୍ମ-ଘାତୀ ସାମାଜିକ
ଅଭ୍ୟାସର ଦାସତ୍ୱରୁ ଯେ ଯାଏଁ ଏ ଜାତି
ନ କରିଛି ମୁକ୍ତ ଆପେ, ଏହି ଦେଶ, କଳା,
ସ୍ୱାଧୀନ ଜାତିର ସ୍ଫୂର୍ତ୍ତି ନ ପାରିବ ଭୋଗି ।
ନିର୍ବିଘ୍ନରେ ପୂଜୁଥିବା କାଷ୍ଠେ, ପାଷାଣରେ,
ଖୋଜୁଥିବା ପୁରୋହିତ-ହାତେ ମୁକ୍ତି ତାର,
ଅବା ତୀର୍ଥ ପର୍ଯ୍ୟଟନେ ହେବାର ମଙ୍ଗଳ,
ଆତ୍ମ-ଶକ୍ତିହୀନ, ବାହ୍ୟ-ଆଡ଼ମ୍ବର-ସର୍ବସ୍ୱ
ଏପରି ମନୁଷ୍ୟ-ଗୋଷ୍ଠୀ ନୋହିପାରେ, କବା
କେବେହେଁ ନିପୁଣ ଜାତି । କାଷ୍ଠପାଷାଣର
ଅଗଣିତ ଦେବଦେବୀ, ଅଗଣିତ ପୁଣି
ପୁରୋହିତ, ସନ୍ନ୍ୟାସୀର ଦଳ ଏ ଜାତିକୁ
ରଖିଛନ୍ତି ଦୀନ, ହୀନ, ଦରିଦ୍ର, କୁତ୍ସିତ,
ଅଜ୍ଞ, ରୁଗ୍‌ଣ, ଅସହାୟ, ଦୈବ-ପ୍ରପୀଡ଼ିତ ।
କିନ୍ତୁ ଯାଅ ଲେନିନର ନିରୀଶ୍ୱର ରାଜ୍ୟ,
ଦେଖି ତହିଁ ନିଜ ମଥା ଗର୍ବରେ ଟେକି,
ମନୁଷ୍ୟ ଯେପରି ତହିଁ ଉଠିଲା ସଳଖି
ମେରୁଦଣ୍ଡ, ଥିଲା ଯାହା ଦରିଦ୍ର, ବର୍ବର—
ହୋଇଛି କିପରି ଆଜି ଭୋଗ-ଭାଗ୍ୟ ଭରା ।"

---

# ତୃତୀୟ ସର୍ଗ

ସିଂହଳରାଜ ଶୈଳୋବାସେ ଦୀପ ନିର୍ବାପିତ;
ଶାନ୍ତ, ସମାହିତ ରଜେ ସମଗ୍ର ଧରଣୀ;
ଜ୍ୟୋତ୍ସ୍ନାପ୍ଲୁତା ନଦୀଥର ନିବିଡ଼ ଆଶ୍ଳେଷେ ।
ପାଖେ ନାରିକେଳ କୁଂଜଶ୍ରେଣୀ ଷେନ ଚିତ୍ରାଙ୍କି
ଗମ୍ଭୀର ଧୂସର ଗିରିମାଳା ଧ୍ୟାନ-ମୌନ,
ପାଖେ ପ୍ରସାରିତ ସ୍ଥିର-ଊର୍ମି ଜଳକାର,
ଉଦାର, ବିମୁକ୍ତ ଅଙ୍ଗ, ଶୀତାଂଶୁ କରଣେ
ଶୟାନା ରୂପସୀ ଅବା ଶୁଭ୍ରଶଯ୍ୟା ପରେ
ଦିବସର କ୍ଳାନ୍ତ ଅନ୍ତେ, ବିଶ୍ରାମ-ବିନୋଦେ ।

ସେହିପରି ଶଯ୍ୟାଲଗ୍ନା, କରି ବିଛୁରିତ
ସୁତନୁ ତନିମା ତାର, ଅଯତ୍ନ ସୌଷ୍ଠବେ
ଶୋଇଥିଲି ବିଶ୍ୱମିତ୍ରା ନିଜ କକ୍ଷେ । କିନ୍ତୁ
ନାହିଁ ଥିଲି ନୟନେ ତା' ନିଦ୍ରାର ପରଶ ।
ଯୌବନର ବାୟୁହୀନ ଝଡ଼େ ଚିତ୍ତ-ନୌକା
ହେଉଥିଲି ବକ୍ଷେ ତାର ଘୋର ଟଳ-ମଳ ।
ସେ ରୂପସୀ, ସପ୍ତଦଶୀ ସେ ବିଶ୍ୱମିତ୍ରାର
ରସୋଚ୍ଛଳ ଅନ୍ତରରେ, ବାହ୍ୟ ପ୍ରକୃତିର
ପରିବ୍ୟାପ୍ତ ଜ୍ୟୋତ୍ସ୍ନାସ୍ନାତ ସେ ମଧୁର ଶାନ୍ତ,
ଜଡ଼ଜୀବବୃକ୍ଷବ୍ୟାପି ସୁପ୍ତି ସେ ଗଭୀର,
ନାହିଁ କରିଥିଲି କାଣ୍ଟିତରେ ପ୍ରଭାବିତ ।

ବିଶ୍ୱମଯ୍ୟ ମୋହାଚ୍ଛନ୍ନ ଶାନ୍ତ, ସୁପ୍ତି ତଳେ
ଅଶାନ୍ତ ତା ସ୍ୱାଭାବିକ-କ୍ଷିପ୍ର ଦୁଇ ନେତ୍ର
ଚନ୍ଦ୍ରା-ହୀନତାରେ ନିଜ କୃଷ୍ଣ ମଧୁରିମା
ଅକାରଣେ ବୁଣୁଥିଲେ କକ୍ଷ-ଶୂନ୍ୟତାରେ ।
ବେଳେ ବେଳେ ତା'ର ନେତ୍ର-ତାରି-ଲୋକୁଁ ଖସି
ଆସୁଥିଲା ବିଗଳିତ ଜ୍ୟୋତି-ଧାରା ବନ୍ୟା
ସ୍ୱର୍ଣ୍ଣ-ଗଣ୍ଡ-ବେଳା କରି ଉତ୍‌ପ୍ଲାବିତ, ପୁଣି
ଧୂତୁରା-କୁସୁମ-କମନୀୟ ଗ୍ରୀବା ଦେଇ
ସିକ୍ତ କରୁଥିଲା ବଙ୍କୁରିତ କେଶଜାଲ
ଶିଖିରିତ-ସଜ-ପଦ୍ମ-ମୁଖୀ ସେ ବାଳାର ।
ଏକଡ଼ ସେକଡ଼ ହୋଇ କୋମଳ ଶୟନେ
ବାଣ୍ଟି ବାଣ୍ଟି ମନୋଜ୍ଞତା ତା' ତନୁ-ମାଳାର,
ପ୍ରଲମ୍ବିତ ନିଃଶ୍ୱାସରେ ହୃଦଭାରି ତାର
ଲଘୁ କରିବାର ଚେଷ୍ଟା କରେ ବାରମ୍ବାର ।
ଊର୍ଦ୍ଧ୍ୱେ ଉଡ଼ି ଉଡ଼ି ଯାଏ, ରବେ ଓ ଶବ୍ଦରେ
ବିଦାରି ସେ ଶାନ୍ତ ନିଶା, ଟେଣ୍ଟୋଇ ଆନନ୍ଦେ,
ଶୁଣି ତାହା, ନାହିଁ ଶୁଣିପାରେ ବିଶ୍ୱମିତ୍ର,
ଅନାଏ ସେ ଦୂର ନଭେ ବାତାୟନ ଦେଇ
ଛଡ଼ା, ଛଡ଼ା ନିଜ-ନିଜ-ଯାହା-ରତ ତାରା
କେତୋଟି, ଅଲକ୍ଷ୍ୟ ଦୃଷ୍ଟେ ।

ଭାବେ ମନେ ମନେ
"କହିବା ଏହାର ଅର୍ଥ ? ଏ ଜନ୍ମ, ମରଣ,
ଏଇ ଯେ ବଞ୍ଚିବା କିଛି କାଳ ଜଗତରେ

ଅନ୍ୟ କାର ନର୍ତ୍ତନରେ, ପୁଣି ଯିବା ଚଳି
ସେହି ସେ ଅଲକ୍ଷ୍ୟ ହସ୍ତରଶ୍ମି ଠାଣିବାରେ !
ଏଇ ରଙ୍ଗମଞ୍ଚେ ପରନିର୍ଦ୍ଦେଶଚାଳିତ
ଅଭିନୟେ, କିବା ପୁଣି ଅର୍ଥ ବା ସଙ୍ଗତି—
ଏଇ ପ୍ରେମ, ସ୍ନେହ, ଅଶ୍ରୁ, ମାୟା, ମମତାର ?
କିପାଇଁ ମନୁଷ୍ୟ ପ୍ରାଣ ଖୋଜଇ ଅନ୍ତରେ
ବ୍ୟାକୁଳେ ଅନ୍ୟର ସଖ୍ୟ ? କିବା ଆକର୍ଷଣ
ମାଂସେ, ମାଂସେ, ମନେ ମନେ, ନୟନେ ନୟନେ !
ଅଛି କିବା ସେହି ଠାଣି ନକ୍ଷତ୍ରେ ନକ୍ଷତ୍ରେ
ବୃକ୍ଷେ ବୃକ୍ଷେ ଜଡ଼େ ଜଡ଼େ, ମୃତ, ଜୀବିତରେ ?
ଜନକ ଜନନୀ ମୋର ବିଖ୍ୟାତ ଏ ଦେଶେ
ପ୍ରେମିକ-ପ୍ରେମିକା ରୂପେ, ଯଶୋମୟ ପୁଣି
ପୁଣ୍ୟକର୍ମା, ପୁଣ୍ୟଧର୍ମା, ଲୋକବନ୍ଧୁ ବୋଲି ।
ତାଙ୍କର ଦାୟାଦ ମୁଁ ଯେ ! କାହିଁ ଗଲେ ସେହି
ବରେଣ୍ୟ ମାନବ-ଯୁଗ୍ମ ! ତାଙ୍କ ସହ ମୋର
କି ସମ୍ପର୍କ, କି ସମ୍ବନ୍ଧ ? ଅରକ୍ଷିତା କନ୍ୟା
ଛାଡ଼ି ଦେଇ ଏ ବିପୁଳ ଗହନ ସଂସାରେ,
କେମନ୍ତେ ସେ ପୁଣ୍ୟବାନ ମହାପ୍ରାଣ ଦୁଇ
ନିଶ୍ଚିନ୍ତେ ରହିଲେ କାହିଁ ! କେତେ ବାର ସତେ
ବିକଳେ ଲୋତକ ଢାଳି ନ ଡାକିଛି ତାଙ୍କୁ
"ଦେଖା ଦିଅ ବାପା-ବୋଉ, କହ ଥରେ ମତେ,
କହ ତବ ସ୍ନେହର ସେ ଏକଇ କନ୍ୟାରେ,
କିବା ତା' ଜୀବନ-ଲକ୍ଷ୍ୟ !—କହ ଖୋଲି ହେଲେ,
ତମେ ମୋର ପାଶେ ପାଶେ ଅଛ ଅଲକ୍ଷିତେ ।"

ଭାବ ଭାବ ତାର ସେହି ସିକ୍ତ କୃଷ୍ଣ ନେତ୍ର
ପୁଣି ଖସେ ଦର ଦର ଉଷ୍ଣ ଅଶ୍ରୁ ଧାର,
ବାଳପେ ମେ ସୁକୁମାରୀ, ନପାରି ସମ୍ଭାଳି
ହୃଦୟର ଭାବାବେଗ ।

ନିଜ ଲୁହଧାର
ନିଜ ହସ୍ତେ, ନିଜାଞ୍ଚଳେ ପୋଛି ସେ କିଶୋରୀ
ଶଯ୍ୟାରୁ ଉଠିଲା ଧୀରେ, ଛାଡ଼ି ଶଯ୍ୟାତଳେ
ଉନ୍ମାଦକ ତନୁ-ସ୍ପର୍ଶ, ମଞ୍ଜୁଳ-ସୁରଭି ।
ଭିତ୍ତିରେ ଲମ୍ବିତ ଯେଉଁ ଚିତ୍ର ଥିଲା ଦୁଇ
ସେହି କକ୍ଷେ, ସ୍ୱର୍ଗତ ତା' ପିତା-ମାତାଙ୍କର—
ତାହାରି ସମ୍ମୁଖେ ଆସି, ପ୍ରାୟାନ୍ଧକାରରେ
ଜାନୁପାତି, ଯୁକ୍ତହସ୍ତେ, ଦରଦର ଭାଷି
ପୁଣି ସେ ବର୍ଣ୍ଣଇ ବ୍ୟଥା—

"ବାପା, ବୋଉ ମୋର,
କହ କଥା, ପାଏଁ ତବ ବଚନ-ଅମିୟ
ମୋର ଏହି ଚିର କ୍ଷୁଧାମୟ ଶୂନ୍ୟ ପ୍ରାଣେ ।
କାହିଁକି ଜଗତେ ତମେ ଆଣିଥିଲ ମତେ ?
କାହିଁକି ବା ଗଲ ଛାଡ଼ି, କେଉଁ ଅପରାଧେ ?
କିଏ ମୋର ଅଛି ଏହି ବିପୁଳ ଧରାରେ
ନିଜର, ଯେ ଜୀବନର ସଙ୍କଟ ମୁହୂର୍ତ୍ତେ
ଦେବ ବିଜ୍ଞ ଉପଦେଶ, କରିବ ନିର୍ଦ୍ଦେଶ

ସମୁଚିତ ଯାତ୍ରା-ପଥ । ମୋ କ୍ଷୁଦ୍ର ଜୀବନେ
ଆଜ ଉପସ୍ଥିତ ଯେଉଁ କଠିନ ସଂକଟ,
ତମେକ ଜାଣନ ତାହା ଜନକ-ଜନନୀ ?
ଜାଣେ ମୁଁ ଏତକ ମାତ୍ର, ଏକ ପଦ-କ୍ଷେପେ
ଆଜ ଏ ମୁହୂର୍ତ୍ତେ, ମୋର ସାରା ଜୀବନର
ଭାଗ୍ୟ ହେବ ଲିପିକୃତ, ଏକ ବର୍ଣ୍ଣ ଯାର
ପୋଛିବାର ଶକ୍ତି ଆଉ ନାହିଁ ଥିବ ମୋର ।
ପ୍ରାଣପ୍ରିୟ ବୋଉ ମୋର, କେଉଁ ପଥେ ତେଣୁ
ଗୃହିବ ମୋ ପଦକ୍ଷେପ, କହ ମା ବତାଇ ।
କଏ ମୋର ଅଛି ଆଉ ? କାହାକୁ କହିବ ?
ତମେ ନାହଁ; ଏପର୍ଯ୍ୟନ୍ତ ନ ଅଛି ବା ଭେଟି
ଈଶ୍ୱର ନାମକ ସେହି ଅଦୃଶ୍ୟ ଶକତି,
ବିପୁଳ ଏ ସଂଗହୀନ ଧରାର ଗହନେ ।
କାହା ପାଶେ ଜଣାଇ ମୋ କ୍ଷୁଦ୍ର ଦୁଃଖ, ସୁଖ
ପାଇବ ଉଚିତ ଶିକ୍ଷା ?"

ପୁଣି ଦର ଦର
ଅଶ୍ରୁ ଖସି ଗଣ୍ଡ ତାର କଲା ଅଭିଷିକ୍ତ,
ଭରେ ବିନ୍ଦୁ ବିନ୍ଦୁ ମଉକ୍ତିକ ବକ୍ଷସ୍ଥଳେ ।
ଭାବାବେଗେ ବକ୍ଷଲଗ୍ନ ଅଂଜଳି ପୁଟରେ
ମୁଖ ରଖି ବିଳପଇ ଦୁଃଖୀ ବିଶ୍ୱମିତା ।

ଭାବାବେଗ ହେଉ ଶାନ୍ତ, ସେହି ଅନ୍ଧକାରେ,
ଉଠି ଧୀରେ ପ୍ରଣମିତ ହୋଇ ଚୈତନରେ
ଜନକ ଜନନୀଙ୍କର, ପୁଣି ଶଯ୍ୟା ତଳେ
ଫେରି ଆସୁଁ ମୁକ୍ତ ତାର କକ୍ଷ ବାତାୟନେ,
ଦେଖିଲା ସେ ଅଦୂରରେ କେ ଗିରିଶୀର୍ଷେ ଏକ
ପ୍ରଶସ୍ତ ଉପଳ ଖଣ୍ଡେ, ଅବସାନ ପର
ଚନ୍ଦ୍ରର ଅସ୍ପଷ୍ଟ, ମ୍ଳାନ ଶୀତଳ ଜ୍ୟୋତ୍ସ୍ନାରେ
ବସିଅଛି ସ୍ଥାଣୁବତ ଅନାଇ ଆକାଶେ ।
ସାରା ବକ୍ଷେ ହେଲା ତାର ବିଦ୍ୟୁତ ଚମକ,
ତରୁଣୀ ସେ ବୁଝିଲା ଭୁଲ ଆନ କେହି ନୁହେଁ
ସେପିଲକ ବିନା ସେହି । ହୁଏତ ତା'ପରି
ସେ ମଧ ଉନିଦ୍ର ଆଜ, ସେପରି ବିଭ୍ରାନ୍ତ;
ଅଣ୍ଡାଳ ହେଉଛି ନଷ୍ଟେ ଅନିଶ୍ଚିତ-ଜାଲେ ।
ସ୍ତମ୍ଭୀଭୂତ ହୋଇ କ୍ଷଣେ ହୋଇଲା ସେ ଛିଡ଼ା,
ପ୍ରବଳ ଝଞ୍ଜାରେ ପଡ଼ି ମହା ବିହାୟସେ
ଉଡ୍‌ଡ୍ଡୀନ ବିହଙ୍ଗ ଯେହ୍ନେ ରହିଯାଏ ବେଳେ
ଏକାନ୍ତରେ ଗତିହୀନ । ହଠାତ୍ ତା' ମୁଖେ
ଆନନ୍ଦର କ୍ଷୀଣ ଊର୍ମି ଭାସିଗଲା ଯେହ୍ନେ,
ପାଇଲା ଯେପରି ହୃଦେ ସ୍ଥିର ବାର୍ତ୍ତା କିଛି
ତା' ବିକଳ ଜିଜ୍ଞାସାର । ରହିଲା ଅନାଇ
ବହୁକ୍ଷଣ ଉଦ୍‌ଭ୍ରାନ୍ତ ସେ ସୁନ୍ଦର ତରୁଣେ
—ଉଦ୍‌ଭ୍ରାନ୍ତ ସେ ତା'ରି ପାଇଁ, ବୁଲୁଛି ଉନିଦ୍ର
ତାହାରି କରର ପୂର୍ଣ ଅଧିକାର ପାଇଁ
ଭାବି ଏହା, ସାରା ଦେହେ ମୁଗ୍‌ଧା ତରୁଣୀର

ଦେହ ଗଲା ବ୍ୟାପି ଯେହ୍ନେ ଲଳିତ ବେପଥୁ ।
ସେପିଲକ ଏହ୍ନ କାଳେ, ଉଠି ତା’ ଆସନୁ,
ଏଣେ ତେଣେ ଗୃହେଁ ଧୀରେ, କର୍ମହୀନ ଯେହ୍ନେ,
ଅତି କ୍ଳାନ୍ତ ପର ମନ୍ଦ ମନ୍ଦ ପଦକ୍ଷେପେ,
ଗ୍ଲକଗଲା ଶିରଶୀର୍ଷେ ଅନ୍ୟ କେଉଁ ପାଶେ ।

ଆତୁର ବଳିଛି ନଶା । ନୈଶ ବାୟୁ କ୍ରମେ
ହୋଇଲାଣି ତୀକ୍ଷ୍ଣ ହିମ । ଚନ୍ଦ୍ରାକ୍ରାନ୍ତ ମିତା
ଶୀତ ଆଉ ଶ୍ରାନ୍ତି ଯୋଗୁଁ ବୁଜି ବାତାୟନ,
ଧୀରେ ପୁଣି ଶୟନରେ ହେଲା ଲମ୍ବମାନ,
ପ୍ରଭାତେ ବକାଣ୍ଡ଼ି ଯେହ୍ନେ ତରୁତଳ ଘାସେ
ବୃନ୍ତଚ୍ୟୁତ ମୌନ ଗଙ୍ଗଶିଉଳୀର ମାଳା ।
ଧୀରେ କ୍ରମେ ନଦ୍ରା ଆସି ତା’ନେତ୍ର କପାଟ
ଆସ୍ତେ ଆସ୍ତେ ଦେଲା ବୁଜି । ଅଳ୍ପକ୍ଷଣେ ମାତ୍ର
ହୋଇଲା ସେ ଉପନୀତ ସୁପ୍ତିର ପ୍ରାସାଦେ ।

ସେହ୍ନ ସୁପ୍ତି ସ୍ୱପ୍ନ ରାଜ୍ୟେ ଦେଖିଲା ବାଳକା
ଜନନୀ ଯେପରି ତାର ଆସିଛନ୍ତି ଗୃହେ,
ବୁଲୁଛନ୍ତି କକ୍ଷେ କକ୍ଷେ, ବୁଝୁଛନ୍ତି କଥା,
ଲାଗିଛି ସେ ଗୃହେ ଯେହ୍ନେ ମଂଗଳ-ଉତ୍ସବ
କେଉଁ ଲକ୍ଷ୍ୟେ, କାହା ଲାଗି । ବାଜୁଛି ବାଜଣା
ଲାଗିଅଛି ଦଳ ଦଳ ଲୋକ ଯାଆ-ଆସ,

ଉତ୍ସାହର, ଆନନ୍ଦର, ଆଶା, ପ୍ରତ୍ୟାଶାର
ଊର୍ମି ଖେଳେ ଚତୁର୍ଦ୍ଦିଗେ । ବିଶ୍ୱମିତ୍ରା ତହିଁ
ନିଶ୍ଚିନ୍ତରେ କେଉଁ କକ୍ଷେ ପଢ଼ୁଥିଲା ବସି
ଆଧ୍ୟାତ୍ମିକ ଗ୍ରନ୍ଥ ଏକ, ଶୁଣୁଥିଲା ପୁଣି
ରେଡ଼ିଓରେ ପଶ୍ଚିମର କେଉଁ ଏକ କେନ୍ଦ୍ରୁ
ମଧୁର ଯନ୍ତ୍ର-ସଂଗୀତ । ଏକାଳେ କରୁଣା,
ତା' ଜନନୀ, କକ୍ଷେ ଆସି ଆଦରେ ସାଉଁଳି,
କହିଲେ "ମାଆଲୋ ମୋର, କେଶରାଜି ତୋର
ସଜାଇ ଦିଏ ମୁଁ ଟିକେ ।" କହି ସେ ଆଣିଲେ,
ଗନ୍ଧତୈଳ, କଂକତିକା । ଅତି ଯତନରେ
କୁଣ୍ଡାଇଲେ ଦୀର୍ଘ, ଘନ, କୃଷ୍ଣଊର୍ମିଶୀଳ
କେଶ, ବର ରୂପସୀ ସେ ନିଜ ତନୁଜାର ।
କୁଣ୍ଡାଉ କୁଣ୍ଡାଉ କିନ୍ତୁ ହଠାତ୍ କଂକତି
ଗଲା ଭାଙ୍ଗି । ବିଶ୍ୱମିତ୍ରା ଉଠିଲା ଚମକି,
ସେ ଚମକେ । ସ୍ୱପ୍ନ ସେହି ହେଲା ଅବସାନ
ନିଦ୍ରା ସହ ।

ସେତେବେଳେ ହୋଇଥିଲା ଆସି
ରଜନୀର ଶେଷ ଧାପ । ପ୍ରାଚୀ ଦିଗ୍‌ବଳୟେ
ଚିରନବବୟସ୍କା ଉଷା ଆବିର୍ଭାବ ଲାଗି,
ରଜତର ରଙ୍ଗମଞ୍ଚ ହେଲାଣି ସଜ୍ଜିତ ।
ନାରିକେଳ କୁଂଜେ କୁଂଜେ ଚଳିକା ବେଳାର

ଆକାଶର ହାଁଗିତକ ପକ୍ଷୀ ଦଳେ ଦଳେ
ଉଷା ବନ୍ଦାପନା ପାଇଁ ଆଦ୍ୟ ଆଗମନୀ
ଦେଲେଣି ଆରମ୍ଭ କରି ।

ବୁଦ୍ଧ କକ୍ଷେ ତାର

ନିଶା-ଶେଷ-ପ୍ରାୟାନ୍ଧାରେ ନିଃସଙ୍ଗ ଶୟନେ
ସ୍ୱପ୍ନଭଙ୍ଗେ ଚେତ ବଣ୍ଣମିନୀ ସେ ଦୁଃଖିନୀ
ହଠାତ୍ ବିହ୍ୱଳ ଯେହ୍ନେ, କିଛି ନାହିଁ ବୁଝି,
ରହିଲା ଅଚେତ ପରି । ଧୀରେ ଧୀରେ ତାର
ସ୍ୱପ୍ନ ହୋଇ ମନ-ନେତ୍ରେ ପୁନରଭିମାନ,
କଂପିଲା ହୃଦୟ ତାର ମୃଦୁ ଆଶଂକାରେ ।
"ଏ କିସ ଅଶୁଭ ଅବା ? କିବା ଯ୍ୟାର ଅର୍ଥ ?
ଜନନୀଙ୍କି ଦେଖି ପୁଣି ହରାଇଲ କ୍ଷଣେ,
ନାହିଁ ପଚାରିଣୁ ଅନ୍ତରର ଗୂଢ଼ ପ୍ରଶ୍ନ;
ଉତ୍ସବ ସେ ଗଲା ଭାଙ୍ଗି ନ ହୋଇ ଆରମ୍ଭ !
ଥାଉ, ଥାଉ,—ରାତି ଏବେ ହୋଇଲାଣି ପ୍ରଭାତ,
ଜାଗିବାକୁ ହେବ ଭରା, ଲାଗିବାକୁ କର୍ମେ,
ଭାଙ୍ଗିବାର ନୁହେ ମନ ବୃଥା ସନ୍ଦେହରେ ।
ଜୀବନ ମୋ ଉତ୍ସର୍ଗିତ ମାନବ-ସେବାରେ,
କି ଶୁଭ, ଅଶୁଭ, ଥାଇପାରେ ଏ ଜୀବନେ ?
ବୃଥା ତେଣୁ ସ୍ୱପ୍ନ-ମର୍ମ, ମନର ଆଶଙ୍କା ।
ତେବେ ଏଇ ସେପିଲକ·····ପୁଣି ମାଲକମ···
ସେହି ! ସେହି ! ପୁରାତନ ପ୍ରଶ୍ନ ପୁଣି ଉଠେ !

ମୋ ଜୀବନ ଯାତ୍ରା ପଥେ ପ୍ରୟୋଜନ ଅବା
ଅଛି କି କାହାର ସଖ୍ୟ ? ସାନିଧ କାହାର ?
ମୁଁ କି ମୋର ଏକା ଏକା ଯାତ୍ରା ସମାପନେ
କରି ନିଜ ଲକ୍ଷ୍ୟ ସ୍ଥଳେ ନାହିଁ ପହଁଚିବି ?
କି ଅବା ସେ ଲକ୍ଷ୍ୟ ପୁଣି ? ସକଳ ଯୁକ୍ତିର
ନିମ୍ନେ, ପୁଣି ପ୍ରାଣ ରହେ ଯୁକ୍ତ ସନାତନ—
ଅବୋଧ ଆହ୍ୱାନ, ପୁଣି ଅଳି ଆକର୍ଷଣ—
ଏକ ପ୍ରାଣ ଅନ୍ୟ ପ୍ରାଣେ ମିଶିବା ଆନନ୍ଦ
ପାଇଁ କି କେବଳ ସେଇଁ ଦୁର୍ବାର ଲାଳସା !
ତାହାହିଁ, ତାହାହିଁ ଘଟେ ଦୂର ଦେଶାଗତ
ଅଜ୍ଞାତ ଏ ରୁଷ-ଯୁବା ନେବପଥେ ତାର
ପଡ଼ିଲା ଯେ ମୁହୂର୍ତ୍ତରେ ଦିଲ୍ଲୀ-ନୃତ୍ୟୋତ୍ସବେ ।
ପରମ ଇଂରେଜ ବନ୍ଧୁ ମାଲକମ୍ ତେଣେ
ରହିଛି ଅପେକ୍ଷା କରି ତା' କର ପଲ୍ଲବେ
ପୂର୍ଣ୍ଣ ଅଧିକାର ପାଇଁ । କାହାକୁ ବାଛିବ ?
କିପାଇଁ ବା ବାଛିବାକୁ ଯିବ ସେ କାହାରେ ?
ଏ ଯାଏଁ ସେ ସ୍ୱୟଂପୂର୍ଣ୍ଣ, ଅଭାବ ତ କିଛି
ନାହିଁ ତାର । ନୃତ୍ୟେ, ଗୀତେ, ସାହଚର୍ଯ୍ୟେ, ଫଳାପେ
ଦେଶେ ଦେଶେ ପର୍ଯ୍ୟଟନେ, କଟୁଅଛି କାଳ
ଅନୁକୂଳ ନଦୀ ସ୍ରୋତେ ନୌକାଗତି ପରି ।
କିପାଇଁ କାହାରେ ଆଣି ତା' ଶାନ୍ତ ସଂସାରେ
ଜଞ୍ଜାଳର ଝଡ଼-ବର୍ଷା-ଜମ୍ବାଳେ ପଶିବ ?
କାହିଁକି ?

ତଥାପି ସେହି ସ୍ପୃହା ଅଯୌକ୍ତିକ !
···ସେପିଲଙ୍କେ ଗୃହେ ଆତ୍ମା ! ଅବା, ମାଲଙ୍କମେ !
କେମନ୍ତେ ସେ ପ୍ରାଣ ଥାଉ କରିବ ନିର୍ଣ୍ଣୟ
କାହାରେ ? ପ୍ରତ୍ୟେକ ଭାଗ୍ୟ କରୁଛି ଅପେକ୍ଷା
ତାହାର,—ମିହାର ମୁଖୁ ହଁ-ନାହିଁ ପାଇଁ ।
ହାୟରେ ଏ ନିର୍ଦ୍ଦ ଦ୍ୱନ୍ଦ୍ୱ ! ଯୁଗ ସମାଧାନ
ପାଇଁକି, ସେ ଧାଇଁ ଧାଇଁ ଜନକଜନନୀ
ଯାଇଥିଲା ଖୋଜିବାକୁ । କିବା ସମାଧାନ,
କି ଉତ୍ତର ପାଇଲା ସେ ? କିବା ସେ ସ୍ୱପ୍ନର
ଯଥାର୍ଥତା ?

ଏହିକାଳେ ନିର୍ମଳ ପବନେ
ପ୍ରସ୍ତର, ହ୍ରଦ, ବଣ, କେଦାର, କେଦାର
ଭେଦି ପ୍ରକମ୍ପିତ ହେଲା ସିଂହେଶ୍ୱର ଶୈଳ
କାହାର ଉଦାର ଗାନେ, ନିମ୍ନେ ପଥେ ଯାତ୍ରୀ
ସ୍ତବ୍ଧ ହୋଇ ଊର୍ଦ୍ଧ୍ୱେ ଅନାଇଲେ ବୁଝିବାକୁ,
ବାତାୟନ ଖୋଲି ଦେଇ ବିଶ୍ୱମିତ୍ରା ନିଜେ
ବୁଝିବାକୁ ଗୃହିଲା ସେ ଉଦାର ଗାୟନ
ବିଦେଶୀ ବାଣୀରେ, ଅନ୍ୟ-ଦେଶ ଛନ୍ଦେ, ତାଳେ ।
ଦୂରେ ନୁହେ କିନ୍ତୁ ଏ ଯେ, ଅତି ନିକଟରେ,
ସେହି ସେ ଉପଲ ଖଣ୍ଡେ ପୂର୍ବ ରଜନୀରେ
ବସିବାର ଦେଖାଥିଲା ସେପିଲଙ୍କ ଯହିଁ,
ସେହିଠାରେ ସେପିଲଙ୍କ ଠିଆ ରହି ଏବେ

ତାଶ କଣ୍ଠ ବାତାୟନେ ମୁଖ କରି, ଗାଏ
ପ୍ରାଣ ଭରି, କଣ୍ଠ ଭରି ଏକ ରୁଦ୍ର-ଗାନ ।
ବୃଦ୍ଧିମତୀ ବର୍ଣ୍ଣମିନା ବୁଝିଲା ସହସା
ଗାଏ ଉଷ୍ଣ * ସେରନେଡ଼ ଏ ଯେ ତା'ର ପାଇଁ
ପ୍ରେମାର୍ଥୀ ସେ ରୁଷ-ଯୁବା, ବକ୍ଷୁବ୍ଧ ଆତ୍ମାର
ଜଣାଇ ଦେବାକୁ ବ୍ୟଗ୍ର ବ୍ୟାକୁଳ ସ୍ପନ୍ଦନ ।
ଯାଇ ନପାରିଲା ଫେରି । ବାମ କରେ ଧରି
ବାତାୟନ ଏକ ପାର୍ଶ୍ୱ, ଦକ୍ଷିଣ କରରେ
କମନୀୟ ସ୍ୱର୍ଣ୍ଣାଂଗୁଳିଜାଲ ଦେଇ ମେଲି
ଧଇଲା ସେ ବାତାୟନ-ଏରୁଣ୍ଡିରେ ଧୀରେ,
ଭାବାବିଷ୍ଟ ଦୁଇ ଚକ୍ଷୁ ନତ କରି ତନ୍ୱୀ
ସେହିଠାରେ ସ୍ଥିର ହୋଇ ରହିଗଲା ଠିଆ ।
ରଞ୍ଜା-ବନ୍ଧା ପୁଷ୍ପାନ୍ୱିତା ଲତିକା ସେ କିବା,
ଅବା ଅନ୍ତରର କେଉଁ ନିବିଡ଼ ଗହନେ
ଅପହୃତ ପ୍ରିୟଜନ ଅପୋଗ୍ଧ ସେ ସ୍ମୃତି ।
ପ୍ରାଣ-ନିଃସ୍ୟନ୍ଦିତ ସେପିଲିକ-ସେରନେଡ଼
ଅବାଧେ ପ୍ରବେଶ କଲା କୁମାରୀ-ଅନ୍ତରେ ।

---

* ପ୍ରଣୟିନୀ ଉଦ୍ଦେଶ୍ୟରେ ତାହାର ଗୃହ-ଗବାକ୍ଷ ନିମ୍ନରେ ରାତ୍ରି ଗାନ ବା ଯନ୍ତ୍ର ସଙ୍ଗୀତରେ ପ୍ରଣୟ ନିବେଦନ, ପାଶ୍ଚାତ୍ୟ ସଂସ୍କୃତିରେ ଏକ ରୋମାଣ୍ଟିକ୍ ପରଂପରା । ଏହାର ନାମ ସେରନେଡ଼ ।

## ସେଣ୍ଟେନେଡ଼

ହେ ସୁନ୍ଦରୀ,
ଯେଉଁ ପଥେ ଯାଅ, ସୁଧାର ପ୍ରବାହ
ପଡ଼ଇ ଝରି
ହେ ସୁନ୍ଦରୀ ।

କାହିଁ ଚଳ ତମେ ? ରୁକ୍ଷ ଏ ଭୂମେ ?
ନରମ-ମରମ-ତଳୁ ପରୀ,
ଦେଇଛୁ ବଚ୍ଛାଇ ଅଭିସାର ପାଇଁ
ପୀରତ କୁସୁମ ଗଂଧଭରୀ ?
କରୁଣା କରରେ
ପ୍ରାଣେଶ୍ୱରୀ
ହେ ସୁନ୍ଦରୀ ।

ଜୀବନେଶ୍ୱରୀ ଭୁବନେଶ୍ୱରୀ
ନିଖିଳ ଜଗତ, ଚରଣେ ତବ
ସୁଷମା ମୁଗ୍‌ଧ, ପରଶ ଲୁବ୍‌ଧ,
ଚୁମ୍ବି, ପାଉଛୁ ଜୀବନ ନବ ।
ଦଗ୍‌ଧ ଧରାରେ ରୂପ ବୁଣି ଯାଅ
ରୂପେଶ୍ୱରୀ
ହେ ସୁନ୍ଦରୀ ।

ଯହିଁ ଯାଅ ଧରା—  ପ୍ରାନ୍ତରେ, ଧରା
ପଡ଼ ଶେଷେ ଯଦ କାହାର ବକ୍ଷେ,
ସନ୍ତାପିତ ଏ  ଜନର ହୃଦୟେ
ଯେ ପୂଜା, ତା'କ ଗୋ ପାଇବ ସତ୍ୟେ ?
କିଂକର ହୋଇ  ସେବବ ଚରଣ
ପ୍ରାଣେଶ୍ୱରୀ,
ହେ ସୁନ୍ଦରୀ ।

ତମ ବିନା ମତେ  ଏ ଧରା, ଆକାଶ
ରୁକ୍ଷ, ଶୂନ୍ୟ, ଅର୍ଥହୀନ
ତବ ଦାସ ବିନା  ଏ ଜୀବନ ବୀଣା
ବୁକେ ବାଜିବାର ଆଶାହିଁ କ୍ଷୀଣ ।
ଅକରୁଣା ତବ ମରଣ ସର
ହେ ସୁନ୍ଦରୀ ।

ସେଉନେଡ଼ ଗାଇ ସାର ବହ୍ୱଳ, ଉନ୍ମତ
ସେପିଲିକ ଦେଖେ ଯେବେ ସମ୍ମୁଖରେ ତାର
ସ୍ୱପନର ରାଣୀ ଉଭା, ଖୋଲି ବାତାୟନ,—
ଧୀରେ ଧୀରେ ପଦ ଗୁଳ ଆସିଲା ସଙ୍କୋଚେ,
ସେହି ବାତାୟନ ତଳେ, କମ୍ପିତ କରରେ
ଧରିଲା ସହସା ମିହା-ଦକ୍ଷ କରାଙ୍ଗୁଳି
—ଚମ୍ପକ କଳିକା ପୁଞ୍ଜ ସମ କମ୍ର, ଗୌର—
ନୋଇଁ ଜାନୁ, ପ୍ରାଣଭରି ମୁଦ୍ରିଲା ତହିଁରେ
ପ୍ରଥମ ଚୁମ୍ବନ ତାର । ମିହା-ତନୁଲତା
ଥରିଗଲା କ୍ଷୀଣ, ଘନ, ମଧୁ ବେପଥୁରେ ।

ନବାର ପାରଲ ନାହିଁ, ମୁଦ୍ରିତ ନୟନେ
ରହିଲ ସେ ଅଭିଭୂତ ହୋଇ କେତେ ଦଣ୍ଡ;
ତା'ପରେ ଚୈତନ୍ୟ ଫେରୁ, ଡାକିଲ ଧୀରେ
"ଛାଡ଼, ଛାଡ଼ ପ୍ରିୟ ସେପି, ବୃଲଯାଅ ଏଠୁ;
ଲଜ୍ଜା ଦିଅ ନାହିଁ ମତେ ।"

ସେ ମୁଗ୍‌ଧ ପ୍ରଣୟୀ,
ମେଘ ଯେସନ୍ତେ ଚୁମ୍ବେ ଧରା, ଭୃଙ୍ଗ କୁସୁମରେ,
ନାହିଁ ଛାଡ଼ୁଥାନ୍ତା ଅବା, ନାହିଁ ଥାନ୍ତା ଯାଇ,
ଯେ ଯାଏଁ ସେ ଶେଷ ସ୍ୱାଦେ ନ ଭୋଗିଛି ତାର
ପ୍ରେମିକାର ଗୂଢ଼ ସୁଧା—

କିନ୍ତୁ ଏହି କାଳେ,
ଶୈଳାବାସ ଅନ୍ୟ ପ୍ରାନ୍ତୁ ଉଦାତ୍ତ କଣ୍ଠରେ,
ଶୁଭିଲ ପ୍ରଣବଧ୍ୱନି-ସହିତ ଝଙ୍କାର
ଗମ୍ଭୀର ମହିମ୍ନ ସ୍ତବ, ପରମ ବାଣୀରେ ।
ଉଭୟ ପ୍ରଣୟୀ ହୋଇଗଲେ ଭିନ୍ନ ଭିନ୍ନ,
ଶୁଣିଲେ ଚକିତେ କବି-ସନ୍ନ୍ୟାସୀଙ୍କ କଣ୍ଠୁ,
ଗୁହା-ଭେଦି ବାଣୀ-ଗଙ୍ଗା ହେବା ନିସ୍ୟନ୍ଦିତ
ସଂସ୍କୃତର ଛନ୍ଦୋମୟ ଶୁଦ୍ଧ ପଦ ଜାଳେ ।

## ସ୍ତୋତ୍ର

"ହେ ମହାନ, ଶାଶ୍ୱତ ହେ, ହେ କବି, ହେ ସ୍ରଷ୍ଟା
ସକଳର ଆଦ୍ୟ, ପୁଣି ଅନ୍ତ ସକଳର,
ତୁମକୁ ହିଁ ପ୍ରାଣ ମୋର, ଖୋଜେ ହେ ସର୍ବଦା
ମେଲି ଅଗଣିତ ଦଳ ବାସନା-ପଦ୍ମର ।

ପରାତ୍ପର, ହେ ବିରାଟ, ନିଖିଳ ସମ୍ରାଟ,
ତମେ ଯେ କେବଳ ଲଭ୍ୟ ପ୍ରଣୟ ଲୋତକେ,
କାହିଁ ସେ ପ୍ରଣୟ ପ୍ରଭୁ ? କାହିଁ ସେ ଲୋତକ ?
ନୟନେ ଲୋତକ ଦିଅ, ପ୍ରାଣେ ସେ ପିପାସା ।

ବିଶ୍ୱମୟ, ହେ ପ୍ରଣୟୀ, ପ୍ରତି ପଦ ରେଣୁ
ଧରେ ଯାର କୋଟି କୋଟି ବ୍ରହ୍ମାଣ୍ଡର ମାଳା,
ସେହି ତୁମେ ହେ ରସିକ, ସାମାନ୍ୟ ଜନର
ଲୋତକ-ବିନ୍ଦୁରେ ଆସି ବିରାଜ ଆନନ୍ଦେ !

ହେ ଆଲୋକ, ବାୟୁ, ଅଗ୍ନି, ହେ ନିଶା, ପ୍ରଭାତ,
ହେ ଖାଦ୍ୟ, ଖାଦକ, ସ୍ରଷ୍ଟା, ପାଳକ, ଧ୍ୱଂସକ,
ହେ ସର୍ବ-ସଂସାର-ଲୀଳା ପଛେ ଯାଦୁକର,
ଯାଦୁଚଳେ, ଏକ, ସତ୍ୟ,— କେବେ ହେବ ଭେଟ ?

ତମର ମନ୍ଦିର କିବା ? ବିଶ୍ୱବ୍ୟାପ୍ତ ଯେତୁ,
ଆଗେ, ପଛେ, ଅଧେ, ଉର୍ଦ୍ଧ୍ୱେ ବାମେ ଓ ଦକ୍ଷିଣେ,—
ଏ ଦେହ-ମନ୍ଦିରେ ତମ, ମୋ-ନିଖିଳ-ପ୍ରାଣ,
ହେ ନିକଟତମ, କରେଁ ପୂର୍ଣ୍ଣ ସମର୍ପଣ ।

—o—

# ଚତୁର୍ଥ ସର୍ଗ

ସନ୍ନ୍ୟାସୀର ଯୋଗ-ସ୍ପର୍ଶେ ଶ୍ୱେତାଙ୍ଗ ତରୁଣ,
ନଶ୍ୱର ସେପିଲକ୍କ ହରାଇ ଚୈତନ୍ୟ
କ୍ଷଣେ ହୋଇ ଧରାଶାୟୀ, ଉଠିଲା ଚିତ୍କାରି
"ମଲି, ମଲି, ମିହା ମିହା"—ନୀରବ ତାପରେ ।
ଧାଇଁ ଆସେ ବଶ୍ୱମିହା, ମିସି ବାଟସନ,
ଦେଖନ୍ତି ସ୍ୱକକ୍ଷେ ଉଭା ସ୍ୱାମୀ ମହାନନ୍ଦ
ସଦ୍ୟସ୍ନାତ, ପରିଶୁଦ୍ଧ, ଉପାସନା-ବୁଦ୍ଧ,
ଅପୂର୍ବ ଜ୍ୟୋତିରେ ଧୌତ ବଦନମଣ୍ଡଳ,
ଅପଘନ ନମ୍ନ, ଊର୍ଦ୍ଧ୍ୱେ, ଗୈରିକ ବସନ
ଗୌର ବର୍ଣ୍ଣେ ଆଣିଦିଏ ଦ୍ୱିଗୁଣିତ ଝଳ ।
ସମ୍ମୁଖରେ ଲମ୍ବ ହୋଇ ଶୟାନ ଧରାରେ
ସେପିଲକ ଅଚଞ୍ଚଳ, ମୁଦ୍ରିତ ନୟନ ।
ସ୍ୱାମିଜୀ ଆଙ୍ଗୁଳି ଟେକି ସଙ୍କେତିଲେ ଉଭା
ମିହା, ବାଟସନେ କିଛୁ ହେବାକୁ ନିଷ୍କ୍ରାନ୍ତ,
ବାକ୍ୟ ମାନି ଗଲେ ଚାଲି ସେମାନେ ସ୍ୱକକ୍ଷେ,
ଯୋଗୀ ଆଉ ନାସ୍ତିକରେ ଦେଇଣ ସାନ୍ନିଧ ।

ଜାନୁ ପାତି ମହାନନ୍ଦ ଶୟାନ ତରୁଣେ
ସ୍ପର୍ଶି ଧୀରେ ସଞ୍ଚାଳିଲେ ଆଙ୍ଗୁଳି ତାଙ୍କର
ସେପିଲକ ଅପଘନେ । କମ୍ୟୁନିଷ୍ଟ ଯୁବା
ଧୀରେ ଧୀରେ ଚକ୍ଷୁ ମେଲି ହୋଇଲା ଜାଗ୍ରତ

ନରେଖିଲା ଘୃଣାଆଡ଼େ । ସ୍ୱାମିଜୀଙ୍କୁ ଦେଖି
ସସ୍ମିତେ ସେ ଜିଜ୍ଞାସିଲା—"କେଉଁସ୍ଥାନେ ମୁହିଁ ?"
ଉତ୍ତରିଲେ ମହାନନ୍ଦ,—"ସେହି ପୂର୍ବ ସ୍ଥାନ,
ଚିଲିକା ହ୍ରଦର ତୀରେ ସିଂହେଶ୍ୱରଙ୍କ ନିକଟେ
ସେହି ସୌଧାବାସେ ବଣ୍ଟମିତା କୁମାରୀର ।
ଉପାସନା ଅନ୍ତେ ମୋର କକ୍ଷେ ମମ ଆସି
କୌତୂହଳେ ହେଲ ଉଭା । ଗତ ରଜନୀରେ
ହୋଇଥିଲା ମନେ ଅଛି, ତମ-ଆମ ମଧ୍ୟେ,
ସୁକ୍ତିତର୍କ ଭାରତର ଆତ୍ମଜ୍ଞାନ ନେଇ ?
ଉଠ, ସେପିଲକ, କହ ତବ ଅଭିଜ୍ଞତା,
କହ ତ ସ୍ୱଚ୍ଛନ୍ଦେ, ତେଣୁ, ଜୀବନକୁ ତମେ
କ ନୂତନ ଦୃଷ୍ଟିକୋଣୁ ଦେଖିଲ ଏକ୍ଷଣି,
ପୃଥିବୀର ମାଟିନେଇ କେବଳ ସଂଗ୍ରାମ
ବ୍ୟର୍ଥିତ, ଆଉ କ ଥାଇପାରେ ଯୋଗ୍ୟ ଲକ୍ଷ୍ୟ
ମାନବର, କହ ତମ ନିଜ ଅବବୋଧୁଁ ।"

ଉଠିବସି ସେପିଲକ, ଆଦ୍ୟ ଭାବାବେଶେ
ଚୁମ୍ବିଲା ସେ ସନ୍ନ୍ୟାସୀର ଏକଇ ଚରଣ ।
ଭାବିଲା ସେ ମନେ ମନେ କେତେକ୍ଷଣ ଆଗେ
ସେ ଯେ ଚୁମ୍ବିଥିଲା ଏକ ଯୁବା-ରୂପସୀର
ସ୍ୱର୍ଣ୍ଣାଂଗୁଳି ଜାଳ ପ୍ରେମ-ବ୍ୟାକୁଳ-ଉନ୍ମାଦେ,
ସେହି ସେ ପ୍ରେମିକ ଚୁମ୍ବେ ଏଇ ବର୍ତ୍ତମାନ
ବୃଦ୍ଧ ଏକ ଭାରତୀୟ ସନ୍ନ୍ୟାସୀର ପଦ !

ଦୁଇ ମଧୁଁ ମନେ ହେଲା ସତେବା ଯେପରି
ବିଶ୍ୱରୁ ହିଁ ସତ୍ୟତର, ଅନାବିଲତର ।
ଚୁମ୍ବି, ଉଠି, ପୁଣି ବସି ପାର୍ଶ୍ୱସ୍ଥ ଆସନେ,
ସନ୍ନ୍ୟାସୀଙ୍କି ଅନ୍ୟ ଏକ ଆସନେ ବସାଇ,
କହେ ସେପିଲକ,

"ମତେ ଜାଗ୍ରତ କପାଇଁ,
କଲ ପୁନଃ ? କି ଶାନ୍ତି ସେ, ଅନବଚ୍ଛିନ୍ନ
ଅଭିଜ୍ଞତା କିବା ସେହି ! କଳ୍ପନା-ଅଜ୍ଞାତ
ସେ ପରମ ଅନୁଭବୁ କପାଇଁ ଆଣିଲ
ଫେରାଇ ଏ ଜାଗତିକ ରୁକ୍ଷ ପରିବେଶେ ?
କିବା ସ୍ଥୂଳ ଏ ଜଗତ, ଏ ପ୍ରତ୍ୟକ୍ଷ ଧରା,
କି ସୂକ୍ଷ୍ମ-ସୁନ୍ଦର ସେହି ଅଦୃଷ୍ଟ ସଂସାର,
କିବା ପ୍ରାଣସ୍ପର୍ଶୀ ତାର ଅଶ୍ରୁତ ସଂଗୀତ !
ଦୃଷ୍ଟ ଯେତେ, ଅଦୃଷ୍ଟର ରୁକ୍ଷ ପ୍ରତିବିମ୍ବ ,
ବିଶ୍ୱାସ କେ ଯିବ ଭବେ, ନ ଭୋଗିଲା ଯାଏଁ ?
—ସେହି ସୂକ୍ଷ୍ମ ମନୋଲୋକ ଭାରତର ଋଷି
ଆତ୍ମ-ଧ୍ୟାନେ ଆବିଷ୍କାର କରିଥିଲେ ଯାହା ।
ଏ ଦେହ ବାସ୍ତବ ନୁହେଁ, ଏ ଗୃହ, ଏ ଶୈଳ,
ଏ ପ୍ରକୃତି, ଏଇ ହ୍ରଦ, ଏଇ ଆସବାବ;
ଏ ସମସ୍ତ-ଦୃଶ୍ୟମାନ ପଦାର୍ଥର ପଛେ
ଲୁକ୍କାୟିତ ସୂକ୍ଷ୍ମ ସତ୍ତ୍ୱ, କେବଳ ଯା ସତ୍ୟ,
ଆମେ ସବୁ ବାସ୍ତବରେ ଅଛୁ ଏକେ ଏକେ
କେବଳ ହିଁ କ୍ଷୁଦ୍ର କ୍ଷୁଦ୍ର ଆନନ୍ଦ-ଚିତ୍କଣା,

ସେହି ହିଁ ପ୍ରକୃତ ତତ୍ତ୍ୱ ଆମ ସକଳର ।
କୃତଜ୍ଞ ସ୍ୱାମିଜୀ ତବ, ପଦପାଶେ ମୁହିଁ ।
ସ୍ୱର୍ଗ ମାଝେ ମୁହୂର୍ତ୍ତିରେ ଦେଲ ଆଜ ଯାହା
ଅନନ୍ୟ ଏ ଅଭିଜ୍ଞତା ବହୁ-ଜନ୍ମ-ସାଧ ।"

ହରଷର ହସୁଥାନ୍ତି ସ୍ୱାମୀ ମହାନନ୍ଦ
ସେପିଳକ ଭାଷଣରେ । ସରୁଁ ତାର ବାକ୍ୟ,
ଦେଲେ ସେ ଇଂଗିତ ତାରେ ଅଂଗୁଳ ନିର୍ଦ୍ଦେଶେ,
ଦୁହେଁ ଆସି କକ୍ଷାନ୍ତରୁ ବସିଲେ ସ୍ୱଚ୍ଛନ୍ଦେ
ସୁଖାସନେ, ପ୍ରାତଃ-ସ୍ଥିର ହ୍ରଦରେ ସମ୍ମୁଖି,
ହୋଇ ଆସୁଥିଲା ଯହିଁ ତପନ ଉଦୟ ।
ମେଘ-ମୁକ୍ତ ଥିଲା ପ୍ରାଚୀ;—ଜ୍ୱଳନ୍ତ ଲୋହିତ
ସୂର୍ଯ୍ୟଦେବ ଉଠି ଧୀରେ ହ୍ରଦବାର ଭେଦି
ଅଂଶେ ଅଂଶେ ଦେଇ ଦେଖା ସହସା ଡେଇଁଲେ
ନଭେ ପୂର୍ଣ୍ଣ ପରିଧିରେ, କ୍ରୀଡ଼ାରତ ଅବା
ପାତାଳ-ରୂପସୀ-ହସ୍ତୁ ଅନାୟତ୍ତେ ଖସି
ଆସିଗଲା, ସୁନ୍ଦର ଏ ବୈଦୁର୍ଯ୍ୟ କନ୍ଦୁକ,
ଅଥବା ନଶାର ଗର୍ଭୁ ଜୀବନ ଦ୍ୟୋତକ
ମହାବୀର୍ଯ୍ୟ ଶିଶୁ ଏହି ଆକାଶ-ଧାତ୍ରୀର
କୋଳେ ହେଲେ ସମାଗତ, ଅବା ପ୍ରକୃତିର
ଦୈନନ୍ଦିନ ମହାଦ୍ୱୀପ ଉଠିଲା ପ୍ରଜ୍ୱଳି
ନଶାର ଜଡ଼ତା କାଟି ଧରା ଜୀବଗ୍ରାମେ
କରିବାକୁ ବାସନାର ଆସ୍ୱାଦେ ଚଞ୍ଚଳ ।

ଆସନସ୍ଥ ମହାନନ୍ଦ ଉତ୍ଫୁଲ୍ଲ ଉତ୍ପଳେ
ଅନାଇ ଆରମ୍ଭ କଲେ ମହିମ୍ନ ସେ ସ୍ତବ
ସହସ୍ର ସହସ୍ର ଯୁଗୁଁ ଭାରତୀୟ ଆର୍ଯ୍ୟ
ଯେ ବାଣୀରେ କରିଅଛି ସୁନ୍ଦରର ପୂଜା,
ବିସୁପୂର ଆରାଧନା, ଏ ଧରଣୀ ପରେ ।
"ହେ ଜବାକୁସୁମବର୍ଣ୍ଣ ସୁନ୍ଦର ସବିତା,
ହେ ସୃଷ୍ଟିର ମହାଜ୍ୟୋତି, ଉତ୍ସ ଜୀବନର,
ହେ ପିତା ଏ ପ୍ରକୃତିର, ଜୀବ ଉଦ୍ଭିଦର,
ହେ ପାଳକ ଏ ଧରାର, ମେଘର ଜନକ,
ହେ ଜଡ଼ତା-ବିନାଶକ, ସ୍ୱାସ୍ଥ୍ୟର ନିଧାନ,
ମହା ପ୍ରଜନକ ଆହେ ସକଳ ଅନ୍ନର,
ତୁମାର ପ୍ରତୀକ, ସୂର୍ଯ୍ୟ, ବନ୍ଦଇ ତୁମରେ ।"
ଭାବ-ଆନମିତ ନେତ୍ରେ ଅନାଇ ସନ୍ନ୍ୟାସୀ
ସେପିଲକେ କହିଲେ ସେ, ଶୁଣି, ବନ୍ଦ କରି
ସୂର୍ଯ୍ୟସ୍ତବ, "କହିଲ ତ ତୁମେ ସେପିଲାକୁ,
ପୌତ୍ତଳିକ ବୋଲି ହେଉଁ ବିଦ୍ରୂପ-ଶରବ୍ୟ
ଆମେ ହିନ୍ଦୁ, କହ ଦେଖି, ଏହି ସୂର୍ଯ୍ୟସ୍ତବେ
କି ବା ଅଛି ସଂକୀର୍ଣ୍ଣତା ପୌତ୍ତଳିକତାର ?
ଏ କି ନୁହେଁ କେବଳ ହିଁ ବିଶୁଦ୍ଧ କବିତା,
ମହିମା ଓ ସୌନ୍ଦର୍ଯ୍ୟର ମୁଗ୍ଧ ବନ୍ଦାପନା,
ବିଶ୍ୱମାନବର ପ୍ରାଣୁଁ ଉତ୍ଥିତ ଉଚ୍ଛ୍ୱାସ
ଅବଲୋକି ଏ ପ୍ରକୃତି ବିଚିତ୍ର, ଉଦାର,
ଅଜ୍ଞେୟ, ଦୁର୍ଜ୍ଞେୟ ଏହି ନିଖିଳ ନିସର୍ଗ ?
ତୁମର ଲେନିନ୍ କରିଅଛନ୍ତି ପ୍ରଚୁର

'ଧର୍ମ, ମୂର୍ଖ ଜନତାର ଆତ୍ମିକ-ଅଫିମ',
ପ୍ରଶ୍ନ ମୋର ତା ଉତ୍ତର-—"ଜୀବନ ଯା' କୁହ,
ସେହି କି ନୁହଇ ଘୋର ଅଫିମ ସବୁଠୁଁ ?
ଦେଖ ଆତ୍ମ-ନେତ୍ର ଫେଡ଼ି ସମଗ୍ର ସଂସାରେ,
ଦେଖ କେମନ୍ତେ ଏ ଧରଣୀ, ରକ୍ତାକ୍ତ ସଂଗ୍ରାମେ
ଅବିଚ୍ଛିନ୍ନ,—ଅବାରିତ-ବହ୍ନିଶିଖାମୟ !
କି ଲାଗି ଏ ବିଶ୍ୱ-ବ୍ୟାପ୍ତ ବିଭତ୍ସ ସମର,
କି ଲାଗି ଏ ସଦା-ଲିପ୍ତ ଚିର-ଆତ୍ମ-କ୍ଷୟୀ
ଆହବେ, ନିଖିଳ ସୃଷ୍ଟି ? କିପାଇଁ ସଂଗ୍ରାମ ?
ଶାନ୍ତି ନାହିଁ କାହିଁ କିପାଁ ସମଗ୍ର ସଂସାରେ ?
ୟୁରୋପର ସୁଧୀ ଜନେ କହିଥାନ୍ତି ଯାକୁ
'ଜୀବନ-ସଂଗ୍ରାମ' ବୋଲି ଆତ୍ମ-ସଂରକ୍ଷଣେ,
ଯେ ସଂଗ୍ରାମେ ଅହରହ ନିମଜ୍ଜିତ ଆମେ
ଉଦ୍ଭିଦ, ଜୀବ ଓ ନର ଗୂଢ଼ ପ୍ରେରଣାରେ ।
କି ବା ଅର୍ଥ ଏ ଯୁଦ୍ଧର ? ଜୀବନର ଶସ୍ୟ
ଅଦୃଶ୍ୟ ମରଣ-କୃଷୀ କାଟେ ଅହରହ,
ଜେତା ଓ ବିଜିତ ଦୁହେଁ ଜୀବନ-ସଂଗ୍ରାମେ,
ହୁଅନ୍ତି ସେ କୃଷୀ-ଦାନେ କର୍ତ୍ତିତ-ଚେତନ !
ଜୀବରେ ଜୀବରେ ତେଣୁ ଏ ଘୋର ସଂଗ୍ରାମ
ଯୁଧମାନ ଯାହା ଅହରହ ପ୍ରତି କଣେ
ଧରାର, ନୁହେ କି ଭ୍ରମ ? ବିଶ୍ୱକ୍ଷୟକାରୀ
ଦୁଇ ମହାଯୁଦ୍ଧେ ପଶି, କହ ତ ୟୁରୋପ
ଜୀବନର, ଜଗତର କିବା ଉପକାର
ସାଧୁଛି ଏ ଧରଣୀରେ ? ଧରା ଧ୍ୱଂସକାରୀ

ମାରଣାସ୍ତ୍ର କରି ଜମା ଆଉ ବିଶ୍ୱ ଯୁଦ୍ଧେ
ହେଉଅଛି ପୁଣି ସାଜ । ଜାଣ ତମେ ସର୍ବେ
ସେ ସଂଗ୍ରାମେ ଜେତା ଆଉ ବିଜିତ ଉଭୟେ,
ହୋଇବେ ସମୂଳେ ଧ୍ୱଂସ, ଅବା ଚିର ଲାଗି
ହେବେ ଭଗ୍ନ-ମେରୁଦଣ୍ଡ, ବିକଳ, ବିକୃତ ।
କହ ସେପିଲକ, ତେଣୁ , ସିଧା ତକେ ଯାଇ,
ଜୀବନ ହିଁ ନୁହଇ କି ପରମ ଅଙ୍ଗିମ,
ନୁହେ ମାୟା, ନୁହେ ଭ୍ରମ, ଚରମ ପ୍ରମାଦ ?
ତମେ ସବୁ ଆଧୁନିକ ସଭ୍ୟ ୟୁରୋପୀୟ
ଭ୍ରମୁଥିଲ ବଣେ ବଣେ ଉଲଗ୍ନ, ଆଦିମ
ଭଲ୍ଲୁକ, ସିଂପାଞ୍ଜୀ ପରି ସଦା ଭୀତ, ସନ୍ତ୍ର
ଅନ୍ୟ ଜୀବ ଆଶଂକାରେ, ଯେ କାଳରେ, ଏଥି
ଏହି ହେତୁ ଭାରତରେ, ଆମ ସୁଧୀବୃନ୍ଦ
ଆଲୋଚିତ, ପରୀକ୍ଷିତ, ଆତ୍ମ-ଅଭିଜ୍ଞାତ
ଦେଇଥିଲେ ମାନବରେ ଏ ପରମ ସତ୍ୟ—

ମୃତ୍ୟୁର ଜୟ ହିଁ ମାତ୍ର ଜୟ ଜୀବନର,
ଜୀବ ଅନ୍ୟ ଜୀବେ ହିଂସି ଜୀବନରେ ଶାନ୍ତି
ଅସମ୍ଭବ ପାଇବାର । ଜୀବନ ଓ ମୃତ୍ୟୁ
ଉଭୟ ହୋଇବେ ଭୋଗ୍ୟ, ହିଂସାର ଉତ୍ତରେ
ଯେବେ ନର ଦେଇପାରେ ମୈତ୍ରୀ ଓ କରୁଣା ।
ଜୀବନ ଓ ମୃତ୍ୟୁ ଏକ,—ଏ ବିଚିତ୍ର ସୃଷ୍ଟି-
ତଳେ ଏକ ସତ୍ତା, ଭିନ୍ନ କେବଳ ବାହାରେ ।
ବିଭକ୍ତିର ତଳେ ଯେହୁ ମହା ଅବିଭକ୍ତେ
ଦେଖିପାରେ, ସ୍ୱ-ଚେତନେ ସମଗ୍ର ବିଶ୍ୱରେ,

ବର୍ଣ୍ଣ, ସହ ଏକାଭୂତ, ପୁଣି କୁଣ୍ଠମୁକ୍ତ,
ସେହି ହିଁ ମହାତ୍ମା, ସେହି ବରେଣ୍ୟ ମାନବ ।
ସୁବୋପର ମହା ଭ୍ରମ, ଆତ୍ମ-ଜୀବନକୁ
ଧରି ନେବା ଜୀବନର ବର କାମ୍ୟ ବୋଲି,
ସେ ଜୀବନ ପାଇଁ ପୁଣି ଅନ୍ୟ ଜୀବନର
ଧ୍ୱଂସେ ଭାବ ଜୀବନର ପରମ-ସାଧନା ।
ସେପିଲକ, ବୁଝ ତମେ, ନିଜେ ହୋଇ ଘାରି
ଘାରୁନା କି ଆଜି ତମେ ସମଗ୍ର ଧରାରେ ?
ଜୀବନର ଭ୍ରାନ୍ତ-ଜୟ-ଛଳନାରେ ଭୁଲି
ଧରାରେ ଆଣୁଛ ନିକି ଧ୍ୱଂସ ଜୀବନର ?
ଏହି ତବ ଅହଂକୃତ ଆପାତ-ଉଜ୍ଜ୍ୱଳ
ସଭ୍ୟତାର ସତ୍ୟ ରୂପ;—ଯାହା ତମେ ସବୁ
ଦେଖି ମଧ୍ୟ ଦେଖି ନାହିଁ ପାର, ଯେ ହେତୁରୁ
ଜୀବନ-ଅଫିମ-ନିଶା ଘାରୁଛି ଭ୍ରମରେ ।
ଏ ଜୀବନ-ପ୍ରେମ, ବନ୍ଧୁ, ଉନ୍ନତ ମାନବେ
ନୋହିପାରେ ବର କାମ୍ୟ । ବୃକ୍ଷ, ଲତା, ଜୀବେ
ସଜ୍ଜିତ ଏ ପ୍ରକୃତିରେ ବିରାଜିତ ଯାହା,
ସେ ଜୀବନ-ମୋହେ ପଡ଼ି ପରସ୍ପର-ଧ୍ୱଂସେ
ମନୁଷ୍ୟ ମାତିବ କି,–ହେ ପରମ ଗୌରବେ
ଜଙ୍ଗଲର ଜନ୍ତୁ ସମ ? ସେହି ଧ୍ୱଂସ ନେଇ
ତମରି ସେ ସଭ୍ୟତାର ଯେତେ ଅହଂକାର !
ଭାରତର ବାଣୀ କିନ୍ତୁ ମୈତ୍ରୀ, କରୁଣାର,
ହିଂସାର ଉତ୍ତର ଏଥି ବ୍ୟାପକ ଅହିଂସା,
ଜୀବନର ଜୟ ଏଥି ଜୀବନର ପୂଜା,

ନୁହେ ଜୀବନର ଧ୍ୱଂସ । ଧର୍ମ ଏଥି ବନ୍ଧୁ
ନୁହେ ଅହିଫେନ,— ତାହା ତନ୍ତ୍ର, ଜ୍ଞାନ ପାଇଁ
ମାନବର ଉନ୍ମୋଚିତ ତୃତୀୟ ନୟନ ।
ଧର୍ମ ଏଥି ଅନ୍ଧେ କରେ ଦିବ୍ୟ ଚକ୍ଷୁବନ୍ତ,
ଭ୍ରାନ୍ତିର ଅନ୍ଧାର ନାଶେ ସତ୍ୟର ଆଲୋକେ,
ଅଂଶକୁ ମିଳାଏ ନେଇ ସମଗ୍ରର ସାଥେ,
ଅପୂର୍ଣ୍ଣକୁ କରେ ପୂର୍ଣ୍ଣ, ବନ୍ଦୀ କରେ ମୁକ୍ତ ।"

ହସି ଧୀରେ ଜିଜ୍ଞାସଇ ଯୁବା ସେପିଲକ—
"ତମେ ମୁକ୍ତ ହେ ସ୍ୱାମିଜୀ, ତମେ ଭାରତୀୟେ,
ତମେ ଏଇ ଭାଗ୍ୟବାଦୀ, ରୁଗ୍ଣ, ଦୀନ, ଭୀତ,
ନିରକ୍ଷର, ଆଶାହୀନ, ଅଜ୍ଞ ନରପୁଂଜ ?
କି ସତ୍ୟର କର ଗର୍ବ, ଯା ରଖିଛି ଏହି
ଦେଶେ ତବ ଯୁଗ ଯୁଗ ଧରି ଇତିହାସେ
ପରାଧୀନ, ପରାଜିତ, ଶାସ୍ତ୍ର-ନିପୀଡ଼ିତ,
ସହସ୍ର ଗୋଷ୍ଠୀରେ ଛିନ୍ନ, ପରସ୍ପର-ଦ୍ୱେଷୀ,
ଦାରିଦ୍ର୍ୟର ଘୃଣ୍ୟତମ ପଙ୍କେ ବିଲୋଳିତ ?
ଏଇ ତବ ଧର୍ମ ସ୍ୱାମୀ ? କାଷ୍ଠ, ପାଷାଣରେ
ମାଗିବାର ବରାଭୟ ? ଅନ୍ଧ ବିଶ୍ୱାସରେ
ଜଡ଼ ହୋଇ ଭୁଲିଯିବା ସକଳ ପୌରୁଷ,
ସକଳ ଜିଜ୍ଞାସା, ସର୍ବ ନିରୋଚିତ ଚେଷ୍ଟା ?
ୟୁରୋପ ପାରିଥେ' କରି ନାନା ପ୍ରତ୍ୟବାୟ,
କିନ୍ତୁ ସେ ବାସ୍ତବଧର୍ମୀ, କଳ୍ପନ ଅପନ୍ନ

ଇହ ତାର ଜୀବନରେ; ସେହି ଜୀବନକୁ
ଜାଣି ମଧ୍ୟ କ୍ଷଣସ୍ଥାୟୀ, କରନ୍ତି ତାହାରେ
ଭୋଗ୍ୟ, ରମ୍ୟ, ମାନସୀୟ, ଉଜ୍ଜ୍ୱଳ, ସୁନ୍ଦର ।
ଜୀବନର ନାହିଁ ଥାଇ ପାରେ କିଛି ଅର୍ଥ; —
ନାହିଁ ଯଦି ତହିଁ, ସ୍ୱାମୀ, ମୁଗ୍ଧ ଆରାଧନା
ସୌନ୍ଦର୍ଯ୍ୟ ଓ ପୌରୁଷର, ଯୁକ୍ତ-ବସ୍ତୁରର ।
ଏହି ତନ ବିନା, ସତ କହ ତ ସ୍ୱାମିଜୀ,
ଯାହା ସବୁ କହ ଏଇ ଧର୍ମ, ଆତ୍ମ-ଜ୍ଞାନ
ଲୁହେ କି ତା ମୃତ୍ ତତ୍ତ୍ୱ ମନୁଷ୍ୟ ଜୀବନେ ?"

ଉଠିପଡ଼ି ମହାନନ୍ଦ, ଯୁବା ସେପିଲକ—
ଦୁଇ ସ୍କନ୍ଧେ ଦେଇ ହାତ, ଅନାଇ ତା'ମୁଖେ,
କହିଲେ ପ୍ରସନ୍ନ ହାସ୍ୟେ—

"ୟୁରୋପୀୟ ଯୁବା,
ପୃଥିବୀସ୍ଥ ଜୀବନର ଶେଷ ସତ୍ୟ ଏଇ—
ଆଲୋକ-ଅନ୍ଧାର ପରି ବିଜଡ଼ିତ ଏହା
'ଦୁଃଖ' 'ଦୋଷ'—ଏହି ଦୁଇ ଓତପ୍ରୋତ ଗୁଣେ ।
ଯେତେ କର ଜୀବନକୁ ଭୋଗ୍ୟ, ମନୋରମ
ନ ପାରିବ ପୋଛି ଦୁଃଖେ । ଯେତେ ଯା କୃତୀତ୍ୱ
ମାନବର ଏ ଜଗତେ, ପ୍ରତ୍ୟେକରେ ଅଛି
ଦୋଷ ବିଜଡ଼ିତ ସଦା । ଆନନ୍ଦ, ପୂର୍ଣ୍ଣତା,
ଖୋଜିବା ହିଁ ଜଗତକୁ କରେ ଗତିଶୀଳ ।
ଉନ୍ନତ ବ୍ୟକ୍ତିତ୍ୱ ମଧ୍ୟ ଅପୂର୍ଣ୍ଣ, ସଦୋଷ
ରହେ, କରିବାକୁ ତାକୁ ପୂନଶ୍ଚ ସନ୍ଧାନ ।

ଜୀବନର କଷ୍ଟ କଷ୍ଟ ସତ୍ୟ ତତ୍ତ୍ୱ, ବନ୍ଧୁ,
ଏସିଆ, ୟୁରୋପ ଦୁହେଁ, ପାଇଛନ୍ତି ଧରି,
କିନ୍ତୁ ଉଭେ ଏ ପର୍ଯ୍ୟନ୍ତ ଅପୂର୍ଣ୍ଣ ନିଶ୍ଚିତେ,
ଉଭ ସଭ୍ୟତା ହିଁ ନାନା ଦୋଷ-ବିଦୂଷିତ,
ଉଭୟ ହିଁ ଜଳି ମରେ ଦୁଃଖ ଅଶାନ୍ତିରେ
ଅହରହ, ସେପିଲିକ । ସମୃଦ୍ଧ ୟୁରୋପେ
ତମେ ଯାଇ ନେବ ଯେବେ ଖୋଜି ଏକ, ତେବେ
କେତେ ଜଣ ସୁଖୀ ଆତ୍ମା ପାଇବ, ଯୁବକ ?
ସୌନ୍ଦର୍ଯ୍ୟର, ପୌରୁଷର ମହାଯଜ୍ଞ କୁଣ୍ଡେ
ଦୁଃଖ, ଅଶାନ୍ତିର ଅଗ୍ନି ଖାଲି ଜଳେ କିଆଁ ?

କିନ୍ତୁ ତମେ ଯିବ କାଲି ମିହାର ସଙ୍ଗତେ,
ମିହାଗ୍ରାମେ । କହ ଆସି, ଦେଖି ମତେ ବନ୍ଧୁ,
ଶ୍ରେଷ୍ଠ ସେହି ଗ୍ରାମେ ତମେ ଦେଖିଲ କି ନାହିଁ
ଅଧିକ ଆନନ୍ଦ, ବେଶୀ ସଂଖ୍ୟା ସୁଖୀ-ପ୍ରାଣ
ନ ଦେଖିଛ ଯାହା ତମେ ମସ୍କୋ-ଲେନିନ୍‌ଗ୍ରାଡ଼—
ଅଗଣିତ ଜନସଙ୍ଘେ । ସ୍ୱାଚ୍ଛନ୍ଦ୍ୟ, ଦାରିଦ୍ର୍ୟ,
ପଦାର୍ଥର ପ୍ରାଚୁର୍ଯ୍ୟ, ବା ପଦାର୍ଥ-ଅଭାବ
ଏ ସବୁର ବହୁ ତଳେ, ୟୁରୋପୀ ତରୁଣ,
ବହେ ଶୁଦ୍ଧ ଆନନ୍ଦର ମନ୍ଦାକିନୀ ଧାରା ।”

# ପଞ୍ଚମ ସର୍ଗ

ତିନୋଟି ନକ୍ଷତ୍ର ଅବା ତିନି ବିହଙ୍ଗମ,
ତିନି ନବ ମାନବକ ଦେହ ପରିଗ୍ରହି,
ଅବା ତିନି ବାଣୀ ଯେନ ସୁନ୍ଦର ବିଗ୍ରହ,
ଧାଇଁଛନ୍ତି ବେଳାଭୂମେ କ୍ଷିପ୍ର ଅଶ୍ୱପୃଷ୍ଠେ ।
ମିନାର ଇଂରେଜ ବନ୍ଧୁ ଯୁବା ମାଲ୍‌କମ୍‌
ଆସିଯାନ୍ତେ, ପତ୍ର-ଦତ୍ତ-ବାର୍ତ୍ତା ଅନୁଯାୟୀ,
ସେପିଲିକ, ମାଲ୍‌କମ୍‌, ମିନା, ରଖି ଘରେ
ବୃଦ୍ଧ, ବୃଦ୍ଧା, କକା-କାକୀ; ଚଳିଛନ୍ତି ଏଇ
କରୁଣା-କଲ୍ଲୋଳୀ ଆଡ଼େ ବେଳାଭୂମି ଧରି ।
ତିନି ଅଶ୍ୱେ ବସିଛନ୍ତି ତିନି ସେ ତରୁଣ,
ମଧ୍ୟେ ମିନା, ଦୁଇ ପାଶେ ଶ୍ୱେତାଙ୍ଗ ସୁହୃଦ
ଦୁଇ ତାର, ପଲ୍ଲବ ସେ ଦୁଇ ଅବା, ଯେଣ
ରହିଛନ୍ତି ସୁକୁମାର କୁସୁମରେ ଜଗି,
ଅଥବା ସେ ରସମୟୀ ମନୋଜ୍ଞ କବିତା,
ଶବ୍ଦ, ଅର୍ଥ, ଛନ୍ଦ ଯାରେ ସନ୍ନଦ୍ଧ ଆଶ୍ଳେଷେ
ରହିଛନ୍ତି ଅନ୍ୟୋନ୍ୟର ନିଗୂଢ଼ ସମ୍ବନ୍ଧେ ।
ଯୌବନର ସ୍ୱର୍ଣ୍ଣ ବିଭା ମଣ୍ଡିଛି ତିନିରେ
ଅପୂର୍ବ ଲାବଣ୍ୟରସେ, ତିନି ଭାଲପଟ—
ଚିକ୍‌କଣ, ଚଟୁଳ, ରେଖା-ହୀନ, ସମତଳ,—
ହୀରକ ଫଳକ ସମ କରେ ବିଚ୍ଛୁରିତ
ଦିବାଲୋକ । ତିନିଙ୍କର ସ୍ୱର୍ଣ୍ଣାଂଶୁଳପୁଂଜ
ବଲ୍‌ଗା ପରେ ରହି ସୃଜେ ବିନା ମାଳାକାରେ,

ଚମ୍ପକର ମାଳା ଯେହ୍ନେ, ତନୁ ଗଳପଟେ
ସ୍ୱେଦବିନ୍ଦୁ ଉଦ୍‌ଭାସିତ, ସୁବର୍ଣ୍ଣ ଫଳକେ
ସ୍ଫଟିକର ରେଣୁଜାଳ, ଅଥବା ପ୍ରଥମ
ପ୍ରଦୋଷେ ଦିନାନ୍ତରଙ୍ଗେ କ୍ଷୀଣ ବିଭାସିତ
ଆକାଶେ ଉଦ୍‌ଭିନ୍ନ ଯେହ୍ନେ ଆଦ୍ୟ ତାରାବଳୀ ।
ମିଶା ଗୁଲେ ଶ୍ୱେତ ଅଶ୍ୱେ, ପିନ୍ଧି ରକ୍ତାମ୍ବର,
ଚିକ୍‌କଣ ରେଶମ ପରେ ଛାୟା ଓ ଆଲୋକ
ଦୁଇ ଦୁଷ୍ଟ ଶିଶୁପରି କରୁଥାନ୍ତି କ୍ରୀଡ଼ା ।
ସୁଗୋଲ୍, ସୁଢ଼ଳ ତାର ସ୍ୱର୍ଣ୍ଣ-ଦୁଇ ବାହୁ,
ମୃଦୁ-କ୍ଷିପ୍ର ଗତିଶୀଳ ଅଶ୍ୱ-ପଦ-ଛନ୍ଦେ,
ସୁଗ୍ରଥିତ ଦୁଇ ପୁଷ୍ପମାଳା ଯେହ୍ନେ କେହି
ନଚ୍ଚଉଛି ତାଳେ ତାଳେ ରହି ଅଦୃଶ୍ୟରେ ।
ଘନ କୃଷ୍ଣ କେଶ ତାର ନଠୋଳ ଜୁଡ଼ାରେ
ଢଳି ଅଛି ଘର୍ଘ, ନମ୍ନ-ମୁଖ କାକ ସମ
ଗୌର ପୃଷ୍ଠେ । ତେଜୋମୟ ବାମ କପୋଳରେ
ନମାନ ଯେତେକ ଶାନ୍ତି, ଚୂର୍ଣ୍ଣ କେଶ-ଗୁଚ୍ଛ
ନାହିଁ ଛାଡ଼େ, କରେ କ୍ରୀଡ଼ା ପ୍ରିୟ ସେ ଅଙ୍ଗନେ ।
ମୃଦୁ ମୃଦୁ ସ୍ମିତ ଦେଇ ଦୁହେଁ ଉପହାର
ଦୁଇ ଦିଗେ, ଗୁଲେ ମିଶା ମୁହୁର୍ମୁହୁ ଦୋଳି
ସୁନ୍ଦର-ଖୋଦିତ ତାର ବଦନ-ସୁଷମା—
ମଳୟ-ଦୋଳିତ ଫୁଲ୍ଲ ପଙ୍କଜ ସେ କିବା ।

ଶ୍ମଶ୍ରୁହୀନ, ସୁଚିକ୍‌କଣ ଶୁଭ୍ରଗଣ୍ଡବାନ
ସେପିଲିକ, ସେଦିନର ପ୍ରଣୟ ସାଫଲ୍ୟେ,—

ମିନାର ପରମ ରମ୍ୟ କର ପଲ୍ଲବରେ
ଚୁମ୍ବନର ଅଧିକାରେ,—ଉମଗ୍ନ ଚିତ୍ତ,
ମଥା ଟେକ ଊର୍ଦ୍ଧ୍ୱାକାଶେ ଅଦମ୍ୟ ଉତ୍ସାହେ
ଚଲେ ଧୀର ଗାମ୍ଭୀର୍ଯ୍ୟରେ, ଯେପରିକ ଆଜ
ପାଇଛି ସେ ଜୀବନର ପ୍ରାପ୍ୟ ଯାହା କିଛି,
ଜଗତର ସିଦ୍ଧି ଯାହା ସବୁ ସେଥିର ତାର,
କରାୟତ୍ତ । ଅଶ୍ୱ ତାର ଅଟକୁଛି ଖାଲି
ଭଦ୍ରତାର ଅନୁରୋଧେ, ସାଥେ ଜୁଟିବାରୁ
ଇଂରେଜ ସେ ମ୍ୟାଲକମ୍—ଘୃଣିତ ବୁର୍ଜୁଆ,
ମନୁଷ୍ୟ-ଶୋଷକ, କ୍ରୂର ସାମ୍ରାଜ୍ୟମଦ୍ୟପ—
କପଟ ଯେ ମିନା ପରି ଶିକ୍ଷିତା ବାଳିକା
ବନ୍ଧୁ ରୂପେ ବରି ପାରେ ପ୍ରାଚୀନ ଏ ସବୁ
ଯାଦୁଘର ଦ୍ରବ୍ୟାବଳୀ, ବୁଝି ସେ ନପାରେ ।
ତଥାପି ସେ ସଂଯମି ତା ଅନ୍ତର-ଉଦ୍‌ବେଳ,
ଦେଖାଏ ସକଳ ସାମାଜିକ ସମ୍ଭାବନା *
ମିନାର କୋମଳ ଚିତ୍ତେ ନ ଦେବାକୁ ଟଳେ
ସାମାନ୍ୟ ଆଘାତ କାହିଁ । ମିନା-ମାଲ୍‌କମ
ଆଳାପେ ନଶୁଣି, କିନ୍ତୁ ଦେଖାଇ ଛଳନା
ଶୁଣିବାର, ଧୀରେ ଚଲେ ଯୁବା ସେପିଲକ
ନବ ପ୍ରଣୟର ମଧୁସ୍ୱାଦେ ଆତ୍ମ-ହରା ।

* ସମ୍ଭାବନା—ସମ୍ମାନ, ଭଦ୍ରତା ।

ମଧୁହ୍ରାସୀ ମାଲ୍‌କମ୍ ତରୁଣ ବାରନ *
ଦୁର୍ଗାଧିପ, ଜମିଦାର ଉତ୍ତର ଇଂଲଣ୍ଡେ
କେମ୍ବ୍ରିଜ୍-ସ୍ନାତକ, କରେ ସ୍ୱେଚ୍ଛା-ଅଧ୍ୟୟନ
ଧରଣୀର ସର୍ବପ୍ରାନ୍ତ ମାନବ-ଗୋଷ୍ଠୀର
ସଂସ୍କୃତି ଓ ଇତିହାସ, ଧର୍ମ ଓ ଦର୍ଶନ ।
ପଶ୍ଚିମର ସଭ୍ୟତାର ଦ୍ରବ୍ୟ-କେନ୍ଦ୍ରକତା †
ଆତ୍ମାହୀନ, ଏକାନ୍ତରେ ପାର୍ଥିବ ଜୀବନ
ଦେବାରୁ ଶତରେ ତାର ପ୍ରତିକ୍ରିୟା କରି,
ଆସିଛି ସେ ଭାରତର ପୁରାଣ ହୃଦୟେ
ଖୋଜିବାକୁ ଜୀବନର ପରମ ରହସ୍ୟ ।
ମିନା ସାଥେ କେମ୍ବ୍ରିଜରେ ହୋଇଁ ପରିଚୟ,
ନିବିଡ଼ ମାତୃତ୍ୱ-ସ୍ନେହ ଲଭି ଅଯାଚିତେ
ମିସି ବାତ୍ସଲ୍ୟଠାରୁ, ମାତୃହୀନ ସେହି
ତରୁଣ ଇଂରେଜ-ଧନୀ, ତୁଙ୍ଗ-ବଂଶ-ଜାତ,—
ସେହି କାଳୁ ହୋଇଅଛି ବନ୍ଧୁ-କୁଟୁମ୍ବିକ,
ମିନା-ପରିବାରେ ଏକ ଅନ୍ତରଙ୍ଗ ସଭ୍ୟ ।
କ୍ଷୀଣାଙ୍ଗ ସେ, ଦୀର୍ଘ ଦେହ, ସରଳନାସିକ,
କ୍ଷୀଣ, ଆରକ୍ତିମ ଦୁଇ ପେଲବ ଅଧର,
କ୍ଷୁଦ୍ର, ସୁସଂସ୍କୃତ, ଗାଢ଼, ସ୍ୱର୍ଣ୍ଣାଭ ଶ୍ମଶ୍ରୁରେ

---

*ବାରନ୍—ଇଂଲଣ୍ଡରେ ଅଭିଜାତ ଗୋଷ୍ଠୀର ନିମ୍ନସ୍ତରର ଉପାଧି ।

† ଦ୍ରବ୍ୟ କେନ୍ଦ୍ରକତା—ମେଟେରିୟାଲିଜ୍‌ମ୍, ଯେଉଁ ଜୀବନ ତତ୍ତ୍ୱରେ ଇହଜଗତର ଦ୍ରବ୍ୟମୂଳକ ସୁଖ ହିଁ ଚରମ ସିଦ୍ଧି । ୟୁରୋପୀୟ ସଭ୍ୟତା ବିଶେଷରେ ମେଟେରିଆଲିଷ୍ଟିକ୍ ।

ଆବରିତ ଦୁଇ ଗଣ୍ଡ, ଆର୍ଯ୍ୟ ସୌନ୍ଦର୍ଯ୍ୟର,
ପୁଣି ଶାନ୍ତାଶୀଳତାର କରାଇ ପ୍ରଚୁର ।
* ଇଙ୍ଗ-ସ୍କଚ୍ , ସ୍ୱାଭାବିକେ ଅଳ୍ପଭାଷୀ ପ୍ରାଣୀ,
କହି ନୁହେ ସହଜରେ କି କାମନା ତାର
ଅନ୍ତରେ ଜାଗ୍ରତ କରେ, ସୁନ୍ଦରୀ ମିନାର
ସହଜ, ଘନିଷ୍ଠ ସଖ୍ୟ । କିନ୍ତୁ ସେହି ଜାଣେ
ଯେ ଦିନ ସେ କାମ୍ ନଦ-କୂଳ-ଉପବନେ
ଇଂଲଣ୍ଡୀୟ ବସନ୍ତର ମଧୁ ଅପରାହ୍ନେ
ପ୍ରଥମେ ଚାହିଁଲା ମିନା ଗୂଢ଼-ଗାଢ଼କୃଷ୍ଣ
ଦୁଇ ନୟନେ, ପୁଣି ତାର ସ୍ନିଗ୍ଧ, ଘନ, କୃଷ୍ଣ
କୁଞ୍ଚିତ କୁନ୍ତଳ ଶୋଭା (ବିରଳ ତା'ଦେଶେ)
ମାଲ୍‌କମ୍-ହୃଦୟର ଅନିର୍ଦ୍ଦିଷ୍ଟ ତଳେ
କେ ଯେସନ୍ତେ ଚେତାଇଦେଲା ମୃଦୁଳ ଗୁଞ୍ଜନେ,
"ଏଇ ସେ ଜୀବନ୍ତ ପ୍ରାଚ୍ୟ, ରହସ୍ୟ-ନିହିତ,
ପ୍ରକୃତିର, ଜୀବନର ନିଗୂଢ଼ ରହସ୍ୟ
ଏହାର ଅନ୍ତର ତଳେ ଅଛି ଲୁକ୍କାୟିତ ।"

ମାଲ୍‌କମ ଧାବିତ ସେହି ରହସ୍ୟ ସନ୍ଧାନେ,
ଏବେ ବି ଦେଖୁଛୁ ମିନା କୃଷ୍ଣନେତ୍ର ଯୁଗ୍ମେ

---

* ଇଙ୍ଗ-ସ୍କଚ୍ — ଇଂରେଜ ଓ ସ୍କଚ୍ ମିଶ୍ରଣ-ଜାତ । ଉଭୟେ ସ୍ୱଳ୍ପଭାଷୀ ଜାତି କର୍ମଠତା ପାଇଁ ବିଶ୍ୱବିଖ୍ୟାତ ।

ଘନ କୃଷ୍ଣ କେଶେ ତାର, ବାସନ୍ତିକ ଗଣ୍ଡେ,
ପ୍ରାଚ୍ୟର ରହସ୍ୟମୟ ପୁରାଣ ବ୍ୟକ୍ତିତ୍ୱ ।
ମାଲ୍‌କମ୍ ଚଳେ ଧୀରେ, ମୃଦୁ ଛନ୍ଦେ ସ୍ଥୂଳ
ପାଣ୍ଡୁବର୍ଣ୍ଣ ଅଶ୍ୱ ତାର । କଥୋପକଥନ—
ସୁଖେ, ମିହା-ସାନ୍ନିଧରେ ମଜ୍ଜାଇ ନିଜରେ,
ଇଗଲ ସେ ଯେହ୍ନେ ପକ୍ଷ ମେଲି ମହା ବ୍ୟୋମେ
ଧୀରେ ଖୋଲି ଭାସୁଥାଏ, ବ୍ୟୋମେ ଭାସିବାର
ମହାସୁଖ ଅନୁଭବ ।
ଈର୍ଷା-ଉଚ୍ଚାଟନେ
ଡାକ ଉଠେ ସେପିଲକ ଏକାଳେ ସେ ପାଶୁଁ—
"ମଧୁର ଆଳାପ ପାଇଁ ଶ୍ରେଷ୍ଠ ସ୍ଥାନ ନକ
ଅସ୍ଥିର ଏ ଅଶ୍ୱପୃଷ୍ଠ, ମୁକ୍ତ ନଭତଳେ ?"

‘ନାନା’ ‘ନାନା’ ‘କ୍ଷମା କର’ କହି ଦୁଇ ବନ୍ଧୁ
ଦେଲେ ଟାଣି ନିଜ ନିଜ ବଲ୍‌ଗା ଅଶ୍ୱ-ମୁଖେ ।
ଚଙ୍ଗା ହୋଇ, କାନ ରଖି ସିଧା ପଛଆଡ଼େ,
ନାସିକା ବିସ୍ତାରି, କରି ମୃଦୁ ହ୍ରେଷା ଧ୍ୱନି,
କ୍ଷେପି କ୍ଷେପି ଦଉଡ଼ିଲେ ଅଶ୍ୱ ତିନିଙ୍କର ।
ଜନହୀନ ଘର୍ଦବେଳା, ଗତିମୟ ଏହି
ଛଅଟି ପ୍ରାଣୀରେ ହେଲ ସହସା ଯେପରି
ପ୍ରାଣମୟ, ଧ୍ୱନିମୟ, ସହସ୍ର ଜୀବରେ ।
ରେଣୁ-ମେଘ ସୃଷ୍ଟି କରି ପଶ୍ଚାତେ ପଶ୍ଚାତେ
ବାଳିକା-କେନ୍ଦ୍ରିକ ସେହି ଶ୍ୱେତାଙ୍ଗ ଯୁଗଳ

ଧାଇଁଲେ ବିପୁଳ ବେଗେ; ଅଶ୍ୱ ଖୁରାଘାତେ
ନାହିଁ ଶୁଭେ ବାଲୁକାର କୋମଳ ତଳ୍ପରେ,
କ୍ଷିପ୍ରତାରେ ଅଶ୍ୱଖୁର ଲାଗୁଛି କି ନାହିଁ
ଭୂତଳେ ନ ପଡ଼େ ଜଣା । ଉଠନ୍ତି, ପଡ଼ନ୍ତି
ଅଶ୍ୱପୃଷ୍ଠେ ପଲାଣରେ ତରୁଣ ସାଥୀଏ;
ଲଗାମରେ ଦେଇ ଟାଣ, ଦୃଢ଼େ ରଖି ପାଦ
ଷ୍ଟିରପାରେ *, ଜଘନରେ ସଂକେତ ଅଶ୍ୱେର
ଧାଇଁଛନ୍ତି ବନ୍ଧ-ଭଂଗା ବନ୍ୟା-ନଦୀ ପରି ।
ଦୁର୍ବାର ଯୌବନ-ଲୀଳା, ସ୍ୱପ୍ନ, ଆକାଂକ୍ଷାର
ପ୍ରତୀକ ପରି ସେ ଗତି, ଦ୍ରୁତ, ଅନର୍ଗଳ,
ଅବନ୍ଧନ, ଲକ୍ଷ୍ୟହୀନ, ଗତି-ସୁଖ ମାତ୍ର
ଲକ୍ଷ୍ୟ ଯେଉଁ ଗମନର, ଅଶେଷ ଯାହାର ।

ବାଲବନ୍ତେ ଉଚ୍ଚାବଚ କାହିଁ ବେଳାଭୂମି,
କାହିଁ ଶୂନ୍ୟ, ସମତଳ, କାହିଁ କୃଷି କ୍ଷେତ୍ରେ
ଖତ-ବିକ୍ଷତ ସେ ପୁଣି, କାହିଁ ଗୋଟାମାନେ
ଶ୍ୟାମଳ, ଶୀତଳ ଭୂମି, କାହିଁ ରୁକ୍ଷ ମରୁ
ଶୂନ୍ୟ କୂଳେ ପିଟେଇର ଫଣା କୋଟି କୋଟି
ନୀଳ-ସିନ୍ଧୁ ସର୍ପ-ରାଜ, ବିପୁଳଗର୍ଜନେ ।

* ଇଂରାଜୀଶବ୍ଦ, Stirrupର ଓଡ଼ିଆ ରୂପ, ଷ୍ଟିରପ, ( ଯେଉଁଠି ପାଦ ସ୍ଥିର ରହେ ) ।

ସେହି ଟୋଟା, ସେହି କ୍ଷେତ, ସେହି ବନ୍ତ, ମରୁ
ଡେଇଁ ଡେଇଁ ଅକଳ୍ପିତ ବେଗେ ଧାଇଁଛନ୍ତି
ଜନବନ୍ଧୁ, କେ କାହାରେ ପ୍ରଶ୍ନ କରିବାର
ନାହିଁ କିଛି, ନାହିଁ ଅବା ସୁଯୋଗ ସେଲାଗି ।
ଗତି-ସୁଖ, ଭ୍ରମୋନ୍ମାଦ କେବଳ ହିଁ ଲକ୍ଷ୍ୟ
ପ୍ରଥମ ସେ ଯୌବନର ସରସ ପ୍ରକାଶେ ।

ଉଚ୍ଚ ଏକ ବାଲିବନ୍ତେ ଉଠି ବଶ୍ୱମିସା ।
ଡାକ ଦେଲା କନ୍ନୁ ବେଳେ, ଦୁଇ ସେ ମିତରେ—
"ଆସ, ଆସ ଦେଖିଯାଅ, ପରମ ସୁଷମା
ଜନନୀ ଓ କନ୍ୟକାର, ସିନ୍ଧୁ-ଶୈଳକାର,
ଏକାବେଳେ, ଏକସ୍ଥାନେ ।"
ଅଗ୍ରଗାମୀ ବନ୍ଧୁ
ଇଉହେମା ସେପିଲିକ, ଅନିଚ୍ଛାରେ ତାର
ଦୁର୍ମଦ ଅଶ୍ୱରେ ନେଇ ଚଳେ ପଶ୍ଚାତକୁ,
ଚଢ଼ିଲା ସେ ବନ୍ତ ପରେ । ମିତ୍ରା-ପଚ୍ଛଗାମୀ
ଭଦ୍ର ସେ ଇଂରେଜ-ବନ୍ଧୁ ଯୁବା ମାଲକମ
ହସି ହସି ପଛୁ ଆସେ ଧୀରେ ବନ୍ତପରେ ।
ବନ୍ତର ସର୍ବୋଚ୍ଚ ପୀଠେ ଠିଆ ହୋଇଁ ତିନି,
ଦେଖିଲେ ସେ ଦୁଇପଟେ ଦିଗ୍‌ବଳୟ ବ୍ୟାପୀ
ଅପୂର୍ବ, ଦୁର୍ଲ୍ଲଭ ଦୃଶ୍ୟ, ଅବର୍ଣ୍ଣ୍ୟ ସୌନ୍ଦର୍ଯ୍ୟ,
ଉଦାର, ଗମ୍ଭୀର, ପୁଣି ଲଳିତ, ମୋହନ ।
ଏକପାଶେ ସୁବିସ୍ତୃତ ଦେଖିଲେ ସେମାନେ

ଦୂର ଦିଗ୍‌ବଳୟୁ ଲମ୍ବି ବିପୁଳ ବାରିଧି,
ବିକ୍ଷୋଭିତ, ଦୋଳାୟିତ, ନୀଳ ମନ୍ଥମାରେ,
ଭାସ୍ୱର ରବିର କର ମରକତ ଦେହେ
ଚକ ଚକ କରେ କୋଟି ହୀରକର ଦ୍ୟୁତି।
ଅନ୍ୟ ଦିଗେ ସେହିକାଳେ ଦେଖନ୍ତି ସେ ପୁଣି
ଶ୍ୟାମ-କୁଞ୍ଜମୟ-ଦ୍ୱୀପ-ମାଳିକା ଚିଲିକା
ମୁକ୍ତନଭ ତଳେ, ଦୂର ନୀଳଗିରିମାଳ
ପ୍ରାଚୀର ନିମ୍ନରେ ମୃଦୁ ଅଳସ ଭଙ୍ଗିରେ
ମେଲି ଦେଇ ସମଗ୍ର ତା' ଦେହର ସୁଷମା,
ଶାୟିତା ସୁନ୍ଦରୀ ଯେହ୍ନେ ନୀଳାମ୍ବୁ ଶୟନେ।
ବୁଲାନ୍ତି ଏପାଖେ ଥରେ, ଥରେକ ସେପାଖେ
ଏକାବେଳେ ଦେଖିବାକୁ ଦୁଇ ସେ ସୌନ୍ଦର୍ଯ୍ୟ
ଦ୍ରୁତ କରି ଗ୍ରୀବା ଆଉ ମସ୍ତକ ଚାଳନା
ବାକ୍ୟହୀନ ବିସ୍ମୟରେ ତିନିହେଁ ସେ ବନ୍ଧୁ
ଲାଗିଗଲେ ପ୍ରକୃତିର ଚିତ୍ର ଦେଖିବାରେ।
ଅପୂର୍ବ ସେ ଛବି ଦେଖି ଦେଖି ବହୁ କ୍ଷଣ,
ତିନିହେଁ ଅତୃପ୍ତ-ତୃପ୍ତି ଭୋଗି ହେଲେ ପୁଣି,
ସଜ, ଯିବେ ଅଗ୍ର ଦେଶେ। କହେ ମାଲକମ୍—
"କେଉଁ ସେ ସୁଷମା ବିଶ୍ୱେ ଭୋଗ୍ୟ ଏକାଥରେ ?
ବାରମ୍ବାର ଆକର୍ଷଣ ସ୍ୱଭାବ ରୂପର।
ଧନ୍ୟବାଦ ମିତା, ତମେ ଅପୂର୍ବ ଏ ଶୋଭା
ସାଥିରେ ଯା ପରିଚୟ ଘଟାଇଲ ଏଥେ;
ଆଦର ସେ ସୁନ୍ଦରକୁ କରିବ ସମ୍ମାନ
ସ୍ୱାଭାବିକ ବିଧି ସିନା। ଚାଲ ଯିବା ଏବେ,—

ବାରମ୍ବାର ଏଇ ସ୍ଥାନେ ଆସିବାଟି ପୁଣି,
ଅନୁପମ ଏ ଶୋଭାରେ ଦେବାକୁ ସମ୍ମାନ ।"

ବନ୍ଧୁ ସେ ଓଲ୍ହାଇ ଧୀରେ ଦେଲେ ଅଶ୍ୱ ଗୁଳ
ପୁଣି କ୍ଷିପ୍ର ବେଗେ ଚନ । କୃଷକ ଲଳନା
ବସ୍ତ୍ରପ୍ରେ ଭ୍ରୂଲତା ଟେକ ଦେଖନ୍ତି ସେମାନେ,
ଦେଖନ୍ତି ଗୋପାଳ ବାଳେ, ପୋତି ଦେଇ ଯଷ୍ଟି
ବାଲିରେ, ଶୀର୍ଷରେ ତାର ରଖି ହାତ-ଭର,
ଦେଖନ୍ତି ଚକିତ ନେତ୍ରେ ସମୁଦ୍ର ଧୀବରେ
ମେଲୁ ମେଲୁ ଜାଲ ତାଙ୍କ ବେଳା ବାଲୁକାରେ ।

ଏକାଳେ ଦୂରରେ ଦେଖି ବେଳାମୃଗ ଦଳ,
ବଳପତ୍ତି-ଧାର୍ଦ୍ଧ ଶୃଙ୍ଗ ବାହୁଟିଆ ସହ,
ଅନନ୍ଦେ ଧାଇଁଲେ ସେହି ଦିଗେ କୌତୁକରେ ।
ଧାଇଁଲେ ପବନ ବେଗେ ମୃଗ-ମୃଗୀ ଦଳ
ରବରର ପିଣ୍ଡ ଅବା ପଡ଼ୁଛି ଉଠୁଛି,
ଦର୍ଶି ଅଦୃଶ୍ୟ କେଉଁ ଖେଳାଳୀ କରର
କ୍ଷିପ୍ର, ଗୁରୁ ଆଘାତରେ । ଦ୍ୱିଗୁଣ କୌତୁକେ
ବିସ୍ମିତ ନେତ୍ରରେ ଗୃହିଁ ଧାବନ-ସୌନ୍ଦର୍ଯ୍ୟ
ହସ୍ତ ମୃଗ-ମୃଗୀଙ୍କର, ଧାଇଁଲେ ସେ ଦନ
ଦ୍ୱିଗୁଣ ବେଗରେ । ଜୁଡ଼ା ଫିଟି ପଛେ ଉଡ଼େ

ମିହାର, ଭଜନସୁ ନେତ୍ର ଅବା ସୌନ୍ଦର୍ଯ୍ୟର,
ଯୌବନର ମହାହ୍ୱାନ । ଧର୍ମାକ୍ରା ସକଳେ,
ପୀଡ଼ିତ-ନତମ୍ବ-କଟି-ଜଘନ ସମ୍ଭାର,
ତଥାପି ଯୌବନୋନ୍ମାଦେ ଧାଇଁଛନ୍ତି ତନ,
ପ୍ରତ୍ୟେକ ନ୍ନୀଁ ପରାଙ୍ମୁଖ ଅନ୍ୟେ କହିବାକୁ
ନିଜର ଦୁର୍ବଳ ଦେହ-ଶ୍ରାନ୍ତିର ସ୍ୱୀକାର ।

---

# ଷଷ୍ଠ ସର୍ଗ

କରୁଣା କଲୋନ ଆଜ ଉତ୍ସବ-ଚଞ୍ଚଳ;
ଏବେ, ପୂର୍ବ-ସ୍ଥିର ଏକ ବିବାହର ଲାଗି,
ବିଜ୍ଞାପ୍ତ ଏ ସଂସ୍ଥାନର ଦୁଇ ଦେବ ଦେବୀ
କରୁଣା ଓ କମଲର ରକ୍ତ-ପ୍ରତିନିଧି
ସାଙ୍ଗକରି ବିଦ୍ୟା ତାର ଦେଶେ ଓ ବିଦେଶେ,
ବର୍ଣ୍ଣମିଶା ସମାଗତ, ଶ୍ୱେତାଙ୍ଗ ବନ୍ଧୁରେ
ଘେନି, ଆଦ୍ୟ ଥର ପାଇଁ, ପିତୃ କର୍ମକ୍ଷେତ୍ରେ ।
ଅଶ୍ୱ, ରଥି ଉପବନେ, ଆମ୍ର-ନାରିକେଳ—
—ଛାୟା-ସ୍ନିଗ୍ଧ ଗ୍ରାମ୍ୟପଥେ ଚଳି ଅଳସିତେ,
ହଠାତ୍ ସେ ଜନ ଯେବେ ହେଲେ ପ୍ରକାଶିତ
ଗ୍ରାମ ଦାଣ୍ଡେ, ପ୍ରକାଶିତ କରଇ ଯେସନେ
ଆପଣାକୁ ଶିଶିରଧୀ ହଠାତ୍ ନିମ୍ନରେ—
ଚୂର୍ଣ୍ଣୀଭୂତ ହୋଇଗଲେ ସମଗ୍ର ଜନତା
ନବାଗତ ସ୍ମରପାଶେ ।

ମାରଫଲି ବାଦ୍ୟ,
ମାରଫଲି ଶଙ୍ଖ ଧ୍ୱନି, ହୁଳହୁଳି ପୁଣି,
ନାରୀନର ବୃଦ୍ଧ ବୃଦ୍ଧା, ବାଳକବାଳିକା
ସର୍ବେ ମହା କୁତୂହଳେ ପଡ଼ିଲେ ଅଜାଡ଼ି ।
ସର୍ବେ ସେହି ଗ୍ରାମ୍ୟ ଜନେ ଦେଖିଲେ ପ୍ରଥମେ
ଦୂରଦେଶାଗତ ସେହି ଶ୍ୱେତାଙ୍ଗ ଯୁଗଳେ—

ଶ୍ୱେତଚର୍ମ, ସ୍ୱର୍ଣ୍ଣକେଶ, ଆରକ୍ତ ଅଧର,
ତାଙ୍କ ପାଶେ ଉଭା ପୁଣି ଅନନ୍ୟ ସୁନ୍ଦରୀ
ମିସା, ଯେହ୍ନୁ କନ୍ୟା ଏକ ତାଙ୍କର ଘରର—
ତାଙ୍କ ପଶ୍ଚିମ ମାଟି ଶିକ୍ଷା, ସଂସ୍କୃତିରେ
ହୋଇ ରସାଣିତ ଉଭା ସ୍ୱର୍ଣ୍ଣମୂର୍ତ୍ତି ରୂପେ ।
ପ୍ରଥମେ ନିର୍ବାକ ରହି ଗ୍ରାମୀଣ ଜନତା
ଦେଖିଲେ କେବଳ ସେହି ଅଦ୍ଭୁତ ଭାବରେ
ବହୁ କ୍ଷଣ, ଅପ୍ରତ୍ୟୟ-ପ୍ରତ୍ୟକ୍ଷ୍ୟ ଦ୍ୱନ୍ଦ୍ୱରେ
ବୁଡ଼ିରହି ବିସ୍ମୟରେ । ସକଳଙ୍କ ବକ୍ଷେ
ଏକ ପ୍ରଶ୍ନ ଯୁଗପତ ଉଠେ—"ଏତେ ଏକ
ସମ୍ଭବ ଏ ଜଗତରେ ? ମନୁଷ୍ୟ କି ସତେ
ହୋଇପାରେ ଏତେ ଶ୍ୱେତ ? ନାରୀ କି ସତରେ
ହୋଇପାରେ ଏସନେକ ସୁନ୍ଦରୀ ଜଗତେ
ରକ୍ତମାଂସ ହାଡ଼ ଦେହେ ?"

ଜନତା ଅନ୍ତରେ

କିଛିକାଳ ରହିଲୁଁ ଏହି ବିସ୍ମିତ ଜିଜ୍ଞାସା,
ଗ୍ରାମବୃଦ୍ଧ କେତେ ଜଣ, ଦଳାଇ, ବିଶୋଇ,
ନାୟକ, ବିଶ୍ୱାଳ, ପୁଣି ଗ୍ରାମ୍ୟ ପୁରୋହିତେ
ଡାକ ଦେଲେ ସମବେତ ଜନତାରେ ଉଚ୍ଚେ

"ଉଠ ରେ, ଗୁଣ୍ଡ଼ାରେ ପିଲେ, ସାହେବମାନଙ୍କୁ
ବାଟ ଦିଅ, ଚର୍ଚ୍ଚା କର, ଦିଅ ବସିବାକୁ,
ନେଇଯାଅ ଇସ୍କୁଲରେ, ଡାକ ମାଷ୍ଟରଙ୍କୁ
ନେଇଯାଇ ଦେଖାଇବେ, କରିବେ ବ୍ୟବସ୍ଥା ।
ଗ୍ରାମର କି ଭାଗ୍ୟ ଆଜ । ବାବୁଙ୍କର କନ୍ୟା
ଲକ୍ଷ୍ମୀ ସ୍ୱରୂପିଣୀ ମାଆ ଉପଗତା ଆଜି,
ଆମ ଦ୍ୱାରେ, ଗଉଣୀର ବଡ଼ ଭାଗ୍ୟ ସତେ
ତା' ମଙ୍ଗଳକୃତ୍ୟ ଦିନେ ଏମନ୍ତ କୁଣିଆ ।"

କହନ୍ତି ଉତ୍ତରେ ମିଶ୍ର—"ଶୁଣନ୍ତୁ ସଜ୍ଜନେ,
ମୋର ଏହି ବିଦେଶୀ ବନ୍ଧୁ ଦୁଇ ଜଣ
ଆସିଛନ୍ତି ଦେଖିବାକୁ ଆମ ଦେଶ, ଗ୍ରାମ,
ଆମ ଗ୍ରାମେ ନରନାରୀ ରହନ୍ତି କପରି,
କପରି ଉତ୍ସବ ତାଙ୍କ, ପରସ୍ପର ମଧ୍ୟେ
କପରି ବା ସହଯୋଗ, କି ତାଙ୍କ ଅଭାବ ।
ଦେଖୁଛି ମୁଁ ଆୟୋଜନୁଁ ଗ୍ରାମରେ କାହାର
ହେଉଛି ମଙ୍ଗଳକୃତ୍ୟ । ଦିଅ ନାହିଁ ବାଧା,
ଆମେ ସବୁ ଆନନ୍ଦରେ ଯୋଗ ଦେବୁ ତହିଁ,
ତମ ସାଥେ ଏକ ହୋଇ କରିବୁ ଯୋଗାଡ଼,
ଆମକୁ ଅତିଥି ବୋଲି ଭାବୁଛ କାହିଁକି ?
ମୁଁ ତ ତମ ଗାଆଁ ଝିଅ, ଏମାନେ ମୋହର
ବିଦେଶୀ ବାନ୍ଧବ, ତେଣୁ ତମର ବାନ୍ଧବ ।

ଚୁଲ ଯିବା ସେହି ଘରେ ଯେଉଁ ପରିବାରେ
ଘଟୁଛି ମଙ୍ଗଳ କର୍ମ ।”

“ନାହିଁମା, ଏ ନୁହେଁ
ଜଣକର କର୍ମ ଆଉ । ତମ ବାପା-ବୋଉ
ଏ ଗ୍ରାମ, ଏ ଅଞ୍ଚଳରୁ ସେ ବ୍ୟକ୍ତି-କେନ୍ଦ୍ରକ
ଭାବ ନେଇଛନ୍ତି ପୋଛି ବହୁ କାଳୁ, ମାଆ ।
ଆଜି ଗ୍ରାମେ ପ୍ରତ୍ୟେକର ସୁଖ, ଦୁଃଖ ଯାହା
ସମଗ୍ର ଗ୍ରାମର ତାହା, ନାହିଁ ଭେଦାଭେଦ
ଗ୍ରାମ ଆଉ ଗ୍ରାମବାସୀ ଅଭିନ୍ନ ଇଦାନୀ ।
ଆଜି ଏ ଉତ୍ସବ-ଘଟେ ମାଳତୀ ନାମର
—ସେହି ସେ ମାଳତୀ ଯିଏ ବାବାଙ୍କୁ ତମର
ଟାଣି ଆଣିଥିଲା ଏଇ ଜନ୍ମ-ମୃତ୍ତିକାରେ—
ତାହାର ନାତୁଣୀ ଗୌରୀ ବଧୂଏ ଆଜି
ଗ୍ରାମ-ସେବା-ବ୍ରତଯୁକ୍ତ ଟୋକା ବାବୁ ସାଥେ ।
ସରକାରୀ କର୍ମଚାରୀ,—ଏଇ ଅଞ୍ଚଳରେ
କାମ କରୁଁ, ଦେଖି ଚାହିଁ ବାଛିଲେ ଗୌରୀରେ
ନିଜେ ସେହି; ସମର୍ଥିତ ଗ୍ରାମ-ପଞ୍ଚାୟତେ
ହୋଇ ଯାଇ ସେ ପ୍ରସ୍ତାବ, ସମଗ୍ର ଏ ଗ୍ରାମ
କରୁଛି ଏ ଆୟୋଜନ, ମଙ୍ଗଳ କର୍ମର ।”

ଏହା କହି ଶ୍ୱେତକେଶ ଗ୍ରାମୀଣ ଲହସେ
ହଠାତ୍ ସ୍ମରିଲେ ଭାବାବେଗେ ଏ ଗ୍ରାମର
ସ୍ୱର୍ଗତ ଦେବତା-ଯୁଗ୍ମେ, ଭାଷିଲେ ଗଦ୍‌ଗଦେ—
"ଆହା ମା, ଥାଆନ୍ତେ ଆଜ ତମ ବାପା-ବୋଉ
କି ସୁଖ ସେ ନାହିଁ ପାଇଥାନ୍ତେ ମନେ ମନେ ।
ଆମେ ସବୁ ଅପଦାର୍ଥ ଅଛୁ ଦେହ ଧରି,
ନସହି ଚଣ୍ଡାଳ ଯମ ସେ ଦେବଦେବୀ ରେ
ନେଲେ ଏତେ ବେଗି ! କି ବିଚିତ୍ର ସତେ !"

ଗ୍ରାମୀଣର ସ୍ୱଗତୋକ୍ତି ସମଗ୍ର ଲୋକରେ
ବିଷାଦର ଛାୟା ଏକ ଦେଲାକ ଖେଳାଇ,
ମୁଖ ପୋତି ଦଣ୍ଡେ ସର୍ବେ ରହିଲେ ସ୍ତବଧ ।
ମିହିର କିଶୋର-ବକ୍ଷ ନ ପାରୁଣୁଁ କିନ୍ତୁ
ସମ୍ଭାଳି ସେ ଭାବାବେଗ, ବସି ସେ ପଡ଼ିଲା
ଠିଆହେବା ସ୍ଥାନେ, ଜାନୁ ପାତି ମୃତ୍ତିକାରେ;
ପିତୃମାତୃ-ପଦସ୍ପର୍ଶ-ପୂତ ସେହି ମାଟି
ଲଗାଇ ମସ୍ତକେ ପୁଣି ଡାକେ 'ବାପା',! 'ବୋଉ', !
ଭାବବିହ୍ୱଳିତ ନାତିଉଚ୍ଚ କଣ୍ଠ ରବେ,
ଗଣ୍ଡ ବାହି ଦର ଦର ଉଷ୍ଣ ଅଶ୍ରୁ ଧାର
ବୋହି ଯାଇ କରେ ଓଦା ପଟ୍ଟ ବସ୍ତ୍ର ତାର ।

ଏ ଦୃଶ୍ୟେ ବିମୂଢ଼ ହୋଇ ବୟସ୍କ ଗ୍ରାମୀଣ,
କିଛିକାଳ ରହି ସ୍ତବ୍ଧ, ଭାବି ସେ ନିଜରେ
ଅପରାଧୀ—କି କଲି ସେ, କି ହେଲା ବା ଭାବି—
ହଠାତ୍ ବାହାର ଆସି ଜନତାର ମେଣ୍ଟୁ
ଭୂକର୍ଷଣ-କଠିନିତ ନିଜ ଦୁଇ କରେ
ଧରି ନିଆ ସୁକୋମଳ ସୁକୁମାର କର—
ପଲ୍ଲବ, ଉଠାଇ ତାକୁ ଓଠାର ଭୂମିରୁ
କହେ ତାରେ—"ଉଠ ମାଆ, ଗାଆଁରେ ପ୍ରବେଶି,
ପ୍ରଥମରେ, ତମ ନେହେ ଲୁହ ଦେଖିବାକି
ଆମ ପକ୍ଷେ ଖୁସି କଥା ? ତମେ ଆମ ଲକ୍ଷ୍ମୀ,
ଗାଆଁ ଆଜ କି ସୁନ୍ଦର, କି ଭାଗ୍ୟ ଆମର
ତମ ଆଗମନେ । ଉଠ, ଉତ୍ସବରେ ମିଶି
ଆସ ମା, ତମର ଲୋକେ ଚଲାଅ ହକାରି ।
ଯେପରି ଆଦେଶ ଦେବ, କରିବୁ ସେପରି,
ତମ ଲାଗି ଦେବୁଁ ପ୍ରାଣ, ହେଲେ ପ୍ରୟୋଜନ ।
ଉଠ, ଆସ, ଯିବା ଏଥୁଁ ଦିଧା ଗୌରୀ-ଘରେ ।
ଆସନ୍ତୁ ତମର ଦୁଇ ବିଦେଶୀ ବାନ୍ଧବେ,
କିଛି ବାଧା ନାହିଁ ସେଥି । ବାପା, ବୋଉ ତବ
କରି ଯାଇଛନ୍ତି ଆମ ଗାଁର ରୂପାନ୍ତର,
ସକଳ-ସଂସ୍କାରମୁକ୍ତ, ବାଛ-ବିଚାର-ହୀନ,
ସକଳ ମାନବ ଏଥି ସାଦରେ ସ୍ୱାଗତ ।
ଜାଣେନି ତମେ ଗୋ ମାଆ, ଗୌରୀ ତ ବ୍ରାହ୍ମଣୀ,
ବର ତାର ଚଷାପିଲା—ଏ ଗ୍ରାମ-ସେବକ,
ଯେଉଁ ପୂର୍ବେ ଥାନ୍ତା ରହି ଘୃଣ୍ୟ ଅସ୍ପୃଶ୍ୟ ।"

ଶୁଣି ଶୁଣି ଗ୍ରାମକଥା, ବାପା ଦୋଉଙ୍କର
କୀର୍ତ୍ତିଗାଥା, ମିହା ଚଲେ ଧୀରେ ଗ୍ରାମଦାଣ୍ଡେ,
ସାଥେ ତାର ଦୁଇ ବନ୍ଧୁ, ପଶ୍ଚାତରେ ତାଙ୍କ
କୁତୂହଳୀ ଗ୍ରାମ୍ୟ ଲୋକେ, ହୋନ୍ତି ଠେଲପେଲ ।
ଗ୍ରାମ ଶେଷେ ଗୋଷ୍ଠୀଘର, ଶୁଭକର୍ମ ଲାଗି
ଲିପା ପୋଛା ଚନ୍ଦ୍ରାତପେ, ଶୁଦ୍ଧ, ମନୋରମ,
ଦାଣ୍ଡେ ପ୍ରଲମ୍ବିତ ତାଳପତ୍ରର ଝୁନ୍ଦୁଆ
ନମ୍ରେ ଦେଇ ସୁଶୀତଳ ଆଶ୍ରୟ ଲୋକରେ ।
ବିଦେଶୀ ବନ୍ଧୁଙ୍କୁ ନେଇ ଗୁମ୍ଫଣ୍ଡିଆ ତଳେ
ବସାଇ ସଯତ୍ନେ, ଜଣେ ମିହାକୁ ଭିତରେ
ଘେନି ଗଲେ ମହୋଲ୍ଲାସେ ।

ଗୃହାଙ୍ଗନେ ପଶୁଁ

ଉଚ୍ଛୁଳି ପଡ଼ିଲେ ଯେହ୍ନେ ଗ୍ରାମ ନାରୀଦଳ
ଜଳଧାର ସମ ସ୍ଥାନଚ୍ୟୁତ ଜଳସ୍ରୋତ,
ମାଡ଼ିଗଲେ ମିହା ପାଶେ ପାଶେ ତଡ଼ିଦ୍ବେଗେ ।
ଆସିଲା ମାଳତୀ ନାନୀ, ଭଡ଼ିରୁ ବାହାରି,
ବାତଗ୍ରସ୍ତ, ଯଷ୍ଟିହସ୍ତ, ଟେଣ୍ଟାଇ ଟେଣ୍ଟାଇ;
ଶିରାଳ ତା ଜରାଜୀର୍ଣ୍ଣ କର ମିହା-ଗଣ୍ଡେ
ଦବଂଡ଼ି ଆଉଁଷି, ଏଣେ ମୁଞ୍ଚ ଅଶ୍ରୁଧାର,
କହେ ଗଦଗଦ ବାଣୀ—"ଆହା ମୋ ସଙ୍ଖାଳ,
ଧନ ମୋର, ସବୁ ମୋର, ଲକ୍ଷ୍ମୀ ଏ ଗ୍ରାମର,
ବାପ-ମାଆ ଆଖି-ନାକ ଯେନ କି ସୁନ୍ଦର

ସୁନାର ପିତୁଳା ତୁ ଲୋ । କେଉଁ ଦେଶେ ଦେଶେ
ବୁଲୁଥିଲୁ ଏତେ କାଳ ? ମନେ କି ଲୋ ତୋର
ପଡ଼ୁଥିଲା ଏଇ ମାଟି ? ଗରିବର ଘରେ
ତୋ ଶ୍ରୀପଦ ଧୂଳି ଦେଲୁ , କି ଭାଗ୍ୟ ଆମର
ସବୁ ତ ତୋହରି ମାଆ, ତୋ'-ବାପ-ମାଆର
—ସ୍ୱର୍ଗର ଦେବତା ସେ ତ, ନୁହନ୍ତି ମର୍ତ୍ତ୍ୟର—
ଏ ଗ୍ରାମ, ଏ ଘରଦ୍ୱାର, ସକଳ ସମ୍ପତ୍ତି—
ଲକ୍ଷ୍ମୀ ତାଙ୍କ ନିଜ ଘରେ ବିଜେ ହେଲେ ଆଜି,
ଆ ଆଲୋ ମା, ଆଲୋ ରାଧା, ନିଅ ଲୋ ଝିଅକୁ—"

ମାଲତୀର କନ୍ୟା ରାଧା, ଗୌରୀର ଜନନୀ,
ପଶ୍ଚାତରେ ମୌନ ରହି ଦେଖୁଥିଲା ସବୁ,
ଆଗକୁ ସେ ଆସି ଏବେ, ଧରି ମିତାକର
ନେଇଗଲା ଭିତରକୁ । ଭିତର ଅଗଣେ
ମଣିଣା ବିଛାଇ ଦେଇ, ବସାଇ ମିତାରେ
ଗ୍ରାମ ସୀମନ୍ତିନୀ ଦଳ ଆରମ୍ଭିଲେ ତାରେ
ନିଜ ଇଚ୍ଛା ରୁଚିମତେ ସଜାଇ କୌତୁକେ,
କହି—"ଆଜି ଦିନଟାରେ ରହିବ କି ଝିଅ,
ନ ନାଇ ଭୂଷଣ କିଛି, ସାଇବାଣୀ ପରି ?"

ସୁଭାବ—ସୁନ୍ଦର ମିତା-ସ୍ୱର୍ଣ୍ଣ-ତନୁଯଷ୍ଟି
ଧୀରେ ଧୀରେ ଆଭରଣ—ବନ୍ୟାରେ ହୋଇଲା,

ପୁଷ୍ପାଗମେ ଲତା ସମ, ଶିଶିର ସଂଯୋଗେ
ଦୂର୍ବାଦଳ, ତାରାଗମେ ନିର୍ମେଘ ଆକାଶ,
ସୁକଣ୍ଠେ ଗାନର ଧାରା, ଉତ୍ତମ ଯୋଜନା
ଯେସନ୍ତେ ଜନ-ସନ୍ତୋଷ, ତେମନ୍ତେ ଅଧିକ
ଚମତ୍କାର, ମନୋହର । ନୂପୁର ପଦ୍ମରେ,
କରେ କାରୁ-ବିମଣ୍ଡିତ ରୂପାର ବଳୟ,
ଭୁଜେ ବାଜୁ, କଣ୍ଠେ ସ୍ୱର୍ଣ୍ଣମାଳା ଏକାଧିକ,
ମସ୍ତକେ ସିନ୍ଦୂର ବିନ୍ଦୁ, ଚନ୍ଦନ ପଙ୍କରେ
ଶୋଭିତ କନକାଞ୍ଚଳ, ପିନ୍ଧାଇଲେ ଶେଷେ
ନବ ଶୁଭ୍ର ପଟ୍ଟ ବସ୍ତ୍ର । ଗୌରୀ ଓ ତାହାରେ
ଏକତ୍ର କରାଇ ଠିଆ, ନିଖିଳ ନାରୀଏ
ନିରାଜନା କଲେ ତାଙ୍କୁ ହୁଳହୁଳି ଦେଇ
ଉଚ୍ଛ୍ୱସିତ ଉତ୍ସାହରେ । ଦୁହିଁଙ୍କୁ ଆସିଲେ
ପୁଣି ବହିରଙ୍ଗନରେ; ବିଦେଶୀ ବାନ୍ଧବେ
ଡକାଇ ଆଣିଲେ ତହିଁ । ଦୁଇ ସେ ବିଦେଶୀ
ସ୍ତବ୍ଧ ଦେଖି ସିନ୍ଧାର ସେ ନବରୂପାନ୍ତର,
ମନୋରମ ପ୍ରାଚ୍ୟ-ବଧୂ-ସ୍ୱପ୍ନ ସମ୍ମୁଖରେ
ବାସ୍ତବିତ ଅକଳ୍ପିତେ । ପ୍ରାଚ୍ୟ ବିଭୂଷଣେ
ଅଳକ୍ତ-ରକ୍ତିମପଦେ, ଅଞ୍ଜନ-ରଞ୍ଜିତ
ନେତ୍ରେ, ସିନ୍ଧା, ପ୍ରାଚ୍ୟ-ବଧୂ-ସ୍ୱଭାବଜ-ଲାଜେ
ଗୃହିଁ, ଗୃହିଁ ନପାରଇ ବନ୍ଧୁ ଯୁଗେ ତାର,
ସମ୍ଭାଷିଲା ଖାଲି ତାଙ୍କୁ ନୀରବ କଟାକ୍ଷେ,
ଥରଥର ସ୍ମିତ ହାସ୍ୟେ । ବନ୍ଧୁ ଦୁଇ ତାର
ଏକାଧିକ ଫଟୋ ନେଲେ ତା'ର ଓ ଗୌରୀର ।

କ୍ରମେ ସମାହିତ ହେଲା ମଙ୍ଗଳ ଉତ୍ସବ
ବାଦ୍ୟ ନାଦେ, ନାରୀଓଷ୍ଠ ହୁଳହୁଳ ମଧ୍ୟେ,
ଗ୍ରାମଜନ କୋଳାହଳେ । କ୍ଷୁଦ୍ର ସେହି ଗ୍ରାମ
ଉଠେ, ପଡ଼େ, ଉଚ୍ଛୁଳଇ, ଆନନ୍ଦ—ଉନ୍ମତ୍ତ ।
ମାଲ୍‌କମ, ସେପିଲ୍‌କୋ ଦେଖୁଥାନ୍ତି ବସି
ଚିତ୍ରମନ୍ତ, ବର୍ଣ୍ଣାଢ୍ୟ ସେ ବେଦୀ-କର୍ମ ଯେତେ,
ଘୃତଦୀପ, ହୋମକୁଣ୍ଡ, ଘଟ-ନାରିକେଳ,
ଦୂର୍ବାକ୍ଷତ ହରିଦ୍ରାର ପୁଣ୍ୟ ଆହରଣ,
ବ୍ରାହ୍ମଣର ଗୁରୁ କଣ୍ଠେ ମନ୍ତ୍ରର ଆବୃତ୍ତି,
ସବୁ ମିଶି କରୁଥିଲେ ପ୍ରତିଭାତ ତାଙ୍କ
ସମ୍ମୁଖରେ, ଭାରତର ପୁରାଣ କୃଷ୍ଟିର
ରହସ୍ୟ-ଆବୃତ ଏକ କ୍ଷୁଦ୍ର ଚଳଚ୍ଚିତ୍ର,
ଗ୍ରଥିତ ରହିଛି ଯହିଁ ପ୍ରତିଟି ବିଧାନେ
ଶତ ଶତ ଶତାବ୍ଦିର ଗୂଢ଼ ଅଭିଜ୍ଞତା,
ଗୋଷ୍ଠୀର କଲ୍ୟାଣ ବାଞ୍ଛା ଆଗାମୀ ବଂଶର ।
ବେଳେ ବେଳେ ମିନା ଆସି ତାଙ୍କର ଗହଣେ,
ହୋଇଯାଏ କଥାଭାଷା, ହଏ ବା ବୁଝାଇ
ବିଧାନର ପଛେ ଥିବା ତାତ୍ତ୍ୱିକ ସଙ୍କେତ ।
ମୁଗ୍ଧ ହୋଇ, ସମଗ୍ରକୁ ମିଳାଇ ଅଂଶରେ,
ମନେ ମନେ ଚିନ୍ତୁଥାନ୍ତି ବଙ୍ଗ ବିଦେଶୀଏ,
ଭାରତୀୟ ସଭ୍ୟତାର ପୂର୍ଣ୍ଣ ଏକ ଚିତ୍ର ।

ସମାପ୍ତ ମଙ୍ଗଳୋତ୍ସବ । ସମୀପ ଉଦ୍ୟାନେ,
ସୁଶୀତଳ ଅମ୍ରକୁଂଜ ଛାୟା ତଳେ ତଳେ
ପଦ୍ମ-ପତ୍ର-ପାତେ ବାଡ଼ି ସମବେତ-ରନ୍ଧା
ଗ୍ରାମ୍ୟ ଭୋଜ୍ୟ, ବସିଗଲେ ବୃଦ୍ଧ, ଯୁବା ଶିଶୁ ;
ପରଶିଲେ ଗ୍ରାମବଧୂ; ଅଲକ୍ତ ରଂଜିତ
ଯାଙ୍କ ପଦେ ଭୋଜ୍ୟଭୂମି ହେଲା ପୁଷ୍ପମୟ ।
ମିଶାଇ ସ୍ୱଦେଶୀ ବନ୍ଧୁ ସମସ୍ତଙ୍କ ସଙ୍ଗେ
ନଗ୍ନ ମୃତ୍ତିକାରେ ବସି, ଅପୂର୍ବ ତୃପ୍ତିରେ
ଭୁଞ୍ଜିଲେ ସରଳ-ପାକ, ବିଳାସ-ବିହୀନ
ସ୍ନେହ-ସିକ୍ତ ସେହି ଭୋଜ୍ୟ, ପଂକ୍ତି ଭୋଜନର
ମୁକ୍ତାକାଶ ତଳେ, ମୁକ୍ତ ମୃତ୍ତିକାରେ ବସି,
ଅପୂର୍ବ ସେ ଅଭିଜ୍ଞତା, ବିଦେଶୀଙ୍କ ଚିତ୍ତେ
କରୁଥାଇ ମୁହୂର୍ମୁହୁ ଆବେଗ ସୃଜନ ।

ଉତ୍ସବର ଶେଷେ ଯେବେ ସମଗ୍ର ସେ ଗ୍ରାମ
ଗୌରବରେ ବିଦାୟ ଦେଲା, ବିଗଳିତ ହୃଦେ,
ଲୋତକ ପ୍ଳାବିତ ନେତ୍ରେ, ଗୌରୀ ସୁକୁମାରୀ
ସାଶ୍ରୁ ନେତ୍ରେ ପ୍ରତ୍ୟେକଠୁଁ ନେଲା ବିଦାୟ,
ମଧୁ ସ୍ମୃତି ଭରା ସେହି ବାଲ୍ୟଲୀଳା ପୀଠେ
ଚିରଦିନ ପାଇଁ ଛାଡ଼ି ଯିବାରୁ ଯେ ବ୍ୟଥା,
ଭୁଞ୍ଜୁଥିଲା ତା ବକ୍ଷେ, ତାହାର ପ୍ରକାଶ
କରି କରି ଅର୍ଦ୍ଧସ୍ପଷ୍ଟ ନାନା ବଚନରେ

ମାଆ, କକା, ଅପା, ଖୁଡ଼ୀ, ମାଉସୀ, ପିଉସୀ
ସଭିଙ୍କ ସମ୍ମୁଖେ କାନ୍ଦ ଭୁହାଇ ଭୁହାଇ
ନଖିଳ ଗ୍ରାମର ନେହ କରୁଣାର ଧାର
ବୁହାଇ ଥରକୁ ଥର ।

ଗୌଣ ମାତାମହୀ

ମାଳତୀ ନାମ ସେ, ବସି ଦୂର ଏକ ସ୍ଥାନେ
ଦେଖୁଥାଏ ମର୍ମଫଟା ଦୀର୍ଘଶ୍ୱାସ ଫେଇ
ତା'ନଖିଳ ଆଦରର କନକ ପିତୁଳା
ତା'ହାତୁ ଛଡ଼ାଇ କଏ ପଳାଇବା ନେଇ ।
ବଦେଶୀ ବଂଧୂଏ ମଧ୍ୟ ଏ ବଦାୟ ଦୃଶ୍ୟେ
ନାହିଁ କରି ପାରିଥିଲେ ଅଶ୍ରୁ ସମ୍ବରଣ ।

---

# ସପ୍ତମ ସର୍ଗ

ମରକତ ଲତା ଦେହେ ସ୍ଫଟିକର ଦୁଇ
ଶୁଭ୍ର ପୁଷ୍ପ ସମ ଝଳେ ଦାନୟୁବ ନଦ—
ଦୁଇ କୂଳେ ଯୁଗ୍ମ ପୁରୀ 'ବୁଦା' ଆଉ 'ପେସ୍ତ' * ।
ଏକ ପାଶେ ପୁଞ୍ଜୀଭୂତ ଶ୍ୱେତ୍ର ମେଘ ସମ
ନୀଳାକାଶେ, ଝଳେ ବୁଦା—ସୌଧାବଳି ସ୍ତର
ଅନୁଚ୍ଚ ପର୍ବତ ବ୍ୟାପି, କେନ୍ଦ୍ରକର ସର୍ବେ
ସେ ଗିରର ଉଚ୍ଚତମ ବିନ୍ଦୁରେ ରାଜିତ
ଦୃଢ଼, ତୁଙ୍ଗ ଦୁର୍ଗ-ରାଜ । ନଦୀ ଅନ୍ୟ ତଟେ
ଉର୍ବର କୋମଳ ମାଟି ପରେ ହରିଙ୍ଗେଶ୍ୱର
ଶୁଭ୍ର ଦୁକୂଳତା ହେଲାଞ୍ଚଳାସୃତା ରମ୍ୟା
ଶୋଭାଙ୍ଗୀ ରୂପସୀ ସମ ପେସ୍ତା—ପୁରଶ୍ରେଷ୍ଠା,
ପ୍ରସାରିତ ସମତଳେ ଦିଗ୍‌ବଳୟ ଯାଏଁ
ସୁସଜ୍ଜିତା ଅଗଣିତ ସୌଧ-ପୁଷ୍ପମାଳେ ।
ଦାନୟୁବ୍ ଦୁଇ କୂଳେ ତରୁ ବୀଥି ତଳେ
ଦଳେ ଦଳେ ବୁଲୁଥାନ୍ତି ମୋହିନୀ-ନୟନା
କୃଷ୍ଣକେଶୀ, ଶୁଭ୍ରାଙ୍ଗିନୀ ସୁନ୍ଦରୀଏ ସଦା—
ପାଶ୍ଚାତ୍ୟ-ୟୁରୋପ ଦେହେ ଏକ ବିନ୍ଦୁ ପ୍ରାଚ୍ୟ—

---

* ୟୁରୋପର ରାଜଧାନୀ ବୁଦାପେସ୍ତ ପ୍ରକୃତରେ ଦୁଇଟି ସହର । ଦାନୟୁବ ନଦୀର ଦୁଇ କୂଳରେ ବୁଦା ଆଉ ପେସ୍ତ ନାମକ ଦୁଇଟି ସହରକୁ ଏକତ୍ରରେ କୁହାଯାଏ ବୁଦାପେସ୍ତ ।

ଆର୍ଯ୍ୟ, ସ୍ଲାଭ, କେଲ୍‌ଟ ରକ୍ତେ ପ୍ରାଚ୍ୟର ସକଳ
ମୋହନ ମାଧୁର୍ଯ୍ୟ ଯେନି ଶରୀର ମନର,
* ମଜଆର ଜାତିର ସେ ବିଚିତ୍ର ପ୍ରକାଶ ।
ପ୍ରାଚ୍ୟର ଉତ୍ତପ୍ତ ରକ୍ତ ଗୁଣେ ନରନାରୀ
ବର୍ଣ୍ଣ-ଗନ୍ଧ-ଲୋଭାତୁର, ନୃତ୍ୟ-ସଂଗୀତରେ
ଚିର ମତ୍ତ, ୟୁରୋପର ସହରେ ସହରେ
ଚିତ୍ତବିନୋଦନ ପାଇଁ ପାନ-ନୃତ୍ୟ ଶାଳେ
ନିଯୋଜିତା ହଙ୍ଗେରିର ରମ୍ୟାଙ୍ଗନା ଦଳ ।
ସନ୍ଧ୍ୟାଗମେ ବୁଦାପେସ୍ତ ଅପୂର୍ବ ପ୍ରଦୀପେ
ହୁଏ ଯେବେ ଆଲୋକିତ, ନୀଳ ଦାନିଉବ
ହୋଇ ଉଠେ ସ୍ୱର୍ଣ୍ଣ-ସ୍ରୋତ, ଯୁଗ୍ମ ନଗରୀର
ଅଗଣ ବିଦ୍ୟୁତ-ଦୀପ ବକ୍ଷେ ପ୍ରତିବିମ୍ବି ।
ଦୁଇ କୂଳେ ତାର †କାଫେ, ନୃତ୍ୟ—ପଣ୍ୟାଗାରେ
ପଥେ ପଥେ ଉପବନେ, ଶତ କୁଞ୍ଜ ତଳେ,
ଦାନିଉବ ନିଜ ବକ୍ଷେ ସହସ୍ର ନୌକାରେ
ଅଗଣିତ ସ୍ଫୁଟ ପଦ୍ମ ବାନ୍ଧି ଦେଲା ପରି
ସଞ୍ଚରନ୍ତି ୟୁରୋପର ଶ୍ରେଷ୍ଠ ସୁନ୍ଦରୀଏ,
ବୁଦାପେସ୍ତେ ଦେଇ ପରୀରାଜ୍ୟର କଳ୍ପନା ।
ଉଷ୍ଣରକ୍ତ, ଜୀବନର ଭୋଗ—ଉପାସକ,
ଲଳିତ, ମହତ ମଜଆର ସଭ୍ୟତାର

---

* ହଙ୍ଗେରୀର ଅଧିବାସୀମାନେ ୟୁରୋପୀୟ ନୁହନ୍ତି । ଏମାନେ ମଜ୍ୟାର ନାମକ ଏକ ପ୍ରାଚ୍ୟ ଜାତି । ଏଥିପାଇଁ ୟୁରୋପର କେନ୍ଦ୍ରସ୍ଥାନରେ ଏହି ଦାନିଉବ ଉପତ୍ୟକାରେ ପ୍ରାଚ୍ୟର ସମସ୍ତ ଗୁଣ ଦୋଷ ନେଇ ଏହି ହଙ୍ଗେରୀୟ ଜାତି ପ୍ରତିଷ୍ଠିତ ।

† କାଫେ—ଫରାସୀ ଶବ୍ଦ, କଫିପାନ-ଗୃହ ବା ହୋଟେଲ ।

ସୁପ୍ରକାଶ ପୁଂଜୀଭୂତ ପ୍ରଶାନ୍ତ ପରିସ୍ରେ,
ସୁଦୂରପୂର୍ବ ଅର୍ଦ୍ଧ ପରେ, ଦାନ୍ୟୁବ କୂଳେ
ଉଭା ବୁଦାପେସ୍ତ ଶ୍ରେଷ୍ଠ ସୁନ୍ଦର ନଗରୀ ।

ପେସ୍ତା ପାଶେ, ଦାନ୍ୟୁବ ପୂର୍ବ ତଟେ ପୁଣି
ରସିକଙ୍କ ପ୍ରିୟ ପୀଠ ମାର୍ଗାରେଟ ଦ୍ୱୀପ
ଦାନ୍ୟୁବ ବକ୍ଷ ପରେ ପଦ୍ମକ ପରିଏ
ବିରାଜିତ, ସୁରଚିତ ପ୍ରମୋଦ ଉଦ୍ୟାନେ,
ବର୍ଣ୍ଣମୟ, ଗନ୍ଧମୟ, ସୁନ୍ଦର, ଶୀତଳ ।

ସେହି ଦ୍ୱୀପେ ଏକ ପାର୍କ * ନିରଜନ କୋଣେ
ଏକ ସାୟଂକାଳେ, ଯେବେ ସର୍ବ ବୁଦାପେସ୍ତ
ବସନ୍ତର ଆଦ୍ୟାଗମେ ଉନ୍ମତ୍ତ, ବିଧୁର
ଗୀତେ, ନୃତ୍ୟେ, ପାନେ ଭୋଜେ, ବିବିଧ ମଉଜେ
ଦୁଇ ବନ୍ଧୁ ନିରାସକ୍ତ ବାହ୍ୟ ସେ ସମ୍ଭାରେ,
ହେଉଥିଲେ ଧୀର କଣ୍ଠେ କଥୋପକଥନ ।
ପରସ୍ପର ସ୍କନ୍ଧେ ରଖି କର ଅନ୍ୟୋନ୍ୟର
ଏକ କହେ—"ସେପିଲକୋ, ସମଗ୍ର ରୁଷରେ,
ଇଉକ୍ରେନେ, ମଙ୍ଗୋଲିସ୍ରେ, ଉଜ୍‌ବେକସ୍ଥାନେ,
ପୁଣି ଏହି ଦେବଚଉଦ୍ଧାରୀ ମଜଆର—

* ପାର୍କ, ଇଂରାଜୀ ଶବ୍ଦ,—ନଗରୋଦ୍ୟାନ ।

ଶ୍ରେଷ୍ଠ ସୁନ୍ଦରୀଙ୍କ ଏହି ପୀଠ ହିଙ୍ଗୋଲରେ,
କାହିଁ ତମେ ନପାଇଲ ମାନସହାରିଣୀ,
ପାଇଲ କାହିଁ ସେ ଯାଇ ମୌସୁମୀ-ବ୍ୟାକୁଳ
ଗ୍ରୀଷ୍ମ-ଦଗ୍ଧ, ଧୂଳିମୟ, ମଶକ-ମକ୍ଷିକା-
ବସୂତିକା—ମାଲେରିଆ-କୋବ୍ରା *—ରଙ୍ଗମଞ୍ଚ
ଇଣ୍ଡିଆର କର୍ଦ୍ଦମାକ୍ତ ଧାନବିଲେ କେଉଁ
ଲବଣ ହ୍ରଦର ତଟେ । ବଚନ ଯେ ଏହା,—
ପ୍ରେମ ଅନ୍ଧ ଏହାହିଁ ଦିଏ କରିଲ ପ୍ରମାଣ ।"

ଦୀର୍ଘ ଶ୍ୱାସ ଫେଇ ଧୀରେ, ତୃଷ୍ଣୀ ରହି କ୍ଷଣେ
ଉତ୍ତରଇ ସେପିଲକୋ ଅନୁଚ୍ଚ କଣ୍ଠରେ,
ଶ୍ଳେଷ ଶ୍ଳେଷ ବାକ୍ୟାଂଶରେ —"ବନ୍ଧୁ, ମାଲଟର,
ପ୍ରେମ ଅନ୍ଧ ହେବ କପାଁ ? ପ୍ରେମ ଚକ୍ଷୁଷ୍ମାନ !
ଯେ ପ୍ରେମ ଆତ୍ମାର ଅଟେ ନିବିଡ଼ ସନ୍ଧାନ,
ଅନ୍ୱେଷଣ ତାର ଘଟେ ଦୃଶ୍ୟମୟ ଚକ୍ଷୁର
ଅଦୃଶ୍ୟ ରହସ୍ୟାଲୋକେ; ପ୍ରକୃତ ପ୍ରଣୟ
ଦିବ୍ୟ-ଚକ୍ଷୁ, ଜ୍ୟୋତିର୍ମୟ, ରହସ୍ୟ ଆବୃତ,
ଇତରେହିଁ ଅନ୍ଧ ବୋଲି ବୋଲିଥାନ୍ତି ତାକୁ ।
ପ୍ରକୃତିର ବଦାନ୍ୟତା ପୁଣି ଏ ସୃଷ୍ଟିରେ
ଭୌଗୋଳିକ ସୀମାରେଖା ମାନେ ନାହିଁ ବନ୍ଧୁ ।

---

* କୋବ୍ରା—ଇଂରାଜି ଶବ୍ଦ, ଅର୍ଥ ନାଗ ସାପ । ବିଦେଶରେ ଭାରତବର୍ଷକୁ ଲୋକେ ଏହି ଭାବରେ ହିଁ କଳ୍ପନା କରିଥାନ୍ତି ।

କଠୋର ରୁଦ୍ରାର ହମେ, ଅବା ସାହାରାର
ଉତ୍ତପ୍ତ ଜୀବନହୀନ ବାଲୁକା ପ୍ରସାରେ
ଦାନ ତାର ଫୁଟିଉଠେ ନାନା ପଦ୍ଧତିରେ;
ପ୍ରକୃତ ସର୍ବତ୍ର ରମ୍ୟ ଆପଣା ରୀତିରେ ।
ଘୋର ଅରଣ୍ୟରେ ଯହିଁ ମନୁଷ୍ୟ ପ୍ରବେଶ
ଘଟି ନାହିଁ ସୃଷ୍ଟିକାଳୁ, ତହିଁ ପୁଷ୍ପେ, ପତ୍ରେ
ବର୍ଣ୍ଣେ, ଗନ୍ଧେ ପ୍ରସାଧନ-ସଜ୍ଜିତା ସୁନ୍ଦରୀ
ସମ ବିରାଜିତା ନିତ୍ୟ ପ୍ରକୃତି-ନାୟିକା, —
କେଉଁ ଭାଗ୍ୟବାନ ଦୃଷ୍ଟି ପାଇଁ କେ କି ଜାଣେ ?
ମନୁଷ୍ୟର ଇତିହାସେ ସର୍ବ ଦେଶେ, କାଳେ
ପଢ଼ିଛି ଗଳ୍ପ ଏଇ;—ପ୍ରାସାଦେ, ନଗରେ
ଅଲଭ୍ୟ, ଅଦୃଷ୍ଟ ଯେଉଁ ନାରୀରୂପ, ରାଜା
ଆକସ୍ମିକେ ଭେଟିଛି ତାହା ବନପଥେ, ଅବା
କେଉଁ ଗ୍ରାମ କୂପ ତଟେ, ତାର ପଦପ୍ରାନ୍ତେ
ରାଜ୍ୟ, ଧନ, ଚିତ୍ତ, ଯଶ ଭେଟି, ଅଭିନନ୍ଦି
ବସାଇଲେ ସିଂହାସନ ପାଶେ ରାଣୀ ରୂପେ ।

ଜନନୀ ପ୍ରକୃତି ପରି, ପ୍ରକୃତି-ପ୍ରସୂତ
ରୂପ ହିଁ ରହସ୍ୟମୟୀ, କାହିଁ ସେ ଫୁଟାଏ,
ନିଜେରେ ନିଜେ ସେ ଜାଣେ ନିଜର ନିୟମ;
ଚକ୍ଷୁ, କର୍ଣ୍ଣ, ନାସିକାରେ ନାହିଁ ଥାଏ ପୁଣି,
ରୂପ, ଗନ୍ଧ;—ବିରାଜିତ ତାହା ସର୍ବାଙ୍ଗେ,—
ରହସ୍ୟ ହିଁ ସୁଷମାର ଶ୍ରେଷ୍ଠ ଉପାଦାନ ।

ଭାରତର ହ୍ରଦ କୂଳେ ରୂପ ମୁଁ ଭେଟିନ,
ଦେଖିଲି ପ୍ରଥମ କରି ରୂପର ରହସ୍ୟ ।
ମେରିଆର ମନ ନେଇ ଯୁଗ୍ମେ, ମାଲଟର;
ଦେଖିନା କି ତମେ, ସେଥି, ଶାଶ୍ୱତ ରହସ୍ୟ ?

ଉତ୍ତରଇ ମାଲଟର୍,—"ରହସ୍ୟ, ସୌନ୍ଦର୍ଯ୍ୟ,
'ଚିରନ୍ତନୀ ନାରୀ' ଆଉ 'ଆତ୍ମିକ-ପ୍ରଣୟ',
ଏସବୁ ମୋ ବଗୃରର ବହୁ ଦୂରେ ବନ୍ଧୁ,
ସେସବୁ ବୁଝନ୍ତି ଖାଲି, କବି, ଚିତ୍ରକରେ ।
ମେରିଆକୁ ଗୃହେ ମୁହିଁ ଜୀବନ ସଙ୍ଗିନୀ
କରିବାରେ, କେବଳହିଁ ନିତ୍ୟ-ଜୀବନର
ଶ୍ରେଷ୍ଠ ଶ୍ରେଷ୍ଠ ପ୍ରୟୋଜନେ ହେବାକୁ ସହାୟ,
ଯାହା କି ସମ୍ଭବେ ମାତ୍ର ନାରୀ-କର ଦେଇ ।
ନିବିଡ଼ ବାସ୍ତବ ଏହି ଆୟୋଜନ ମାତ୍ର
ମୋର ପ୍ରଣୟର ଯାହା କରୁଛି ପ୍ରହେଳିକା,
ସ୍ଥୂଳ ମାଲଟର କାହୁଁ ବୁଝିବ ଆତ୍ମାର—
ଆଲୋକ-ପିପାସୀ ସେପିଲିକ ଅନୁଭୂତି ?"

"କିନ୍ତୁ ବନ୍ଧୁ"—ପୁଣି କହେ ମୃଦୁମନ୍ଦଭାଷୀ
ସେପିଲିକ—"କେବଳ ହିଁ ବାସ୍ତବ ଯୋଗାଡ଼େ
ତମେ ଗଲ ରହି ଖାଲି ଜନ୍ତୁର ସ୍ତରରେ,
ବୁଝୁଛ ତା ମାଲଟର ? ନର କି କେବଳ

ପ୍ରାଣୀ ହେବ, ଈଶ୍ୱରର ପ୍ରତିମୂର୍ତ୍ତି ବନ୍ଧ,
ଏଇ ବୁଦ୍ଧି, — ରୂପ ରସ ଗନ୍ଧ ଭୋଗିବାକୁ
ଏ ଧରାର, ବନ୍ଧ ଏଇ ଇନ୍ଦ୍ରିୟ ପଟଳ,
ପୁଣି ସର୍ବୋପର ନବଡ଼ରେ ଭୋଗିବାକୁ
ସୁଖ, ଶୋକ, ହାସ୍ୟ, ଅଶ୍ରୁ, ଆନନ୍ଦ, ମାଧୁର୍ଯ୍ୟ,
ଦେହ ତଳେ ବନ୍ଧ ଦେହମୟ ଆତ୍ମା ଏକ ?
ଏସବୁ କି ମନୁଷ୍ୟରେ ଦେଇଥିଲେ ସ୍ରଷ୍ଟା
କେବଳ ହିଁ ରହିବାକୁ ଜନ୍ତୁ ବା ଉଦ୍ଭିଦ ?
ସ୍ଥୂଳରୁ ସୂକ୍ଷ୍ମତା ଆଡ଼େ, ନିମ୍ନରୁ ଆକାଶେ,
ମୃତ୍ତିକାରୁ ଅନ୍ତରୀକ୍ଷେ, ସ୍ୱର୍ଗେ ପୃଥିବୀରୁ
କ୍ରମ-ଊର୍ଦ୍ଧ୍ୱ-ଗତି ପାଇଁ ମନୁଷ୍ୟ ଭିତର
ଏଇ ସବୁ ଉପାଦାନ, ଉଦ୍ଦିଷ୍ଟ କି ନୁହେଁ,
—ଉପାଦାନ, ସ୍ରଷ୍ଟା ଯାହା ନର ବ୍ୟତିରେକେ,
ଦେଇ ନାହିଁ ପୃଥିବୀର ଅନ୍ୟ କେଉଁ ଜୀବେ ?"

ଉତ୍ତରଇ ମାଲଟର,—"ପ୍ରାଚ୍ୟ ଦେଶେ ବୁଲି,
ପ୍ରାଚ୍ୟ ବିଦ୍ୟା ଅନୁଶୀଳି, ଡମେ ସେପିଲକ,
ହୋଇଲଣି ଅପଦାର୍ଥ ପ୍ରାଚ୍ୟ ଜୀବ ଏକ—
ନିଶ୍ୱାସରୋଧକ, ଆଖିବୁଜା, ଜଟାଧାରୀ
ସଂସାରକୁ-ଭୟ-କରି-ପଳାତକ ସେହି
ଗୁହାବାସୀ ଆତ୍ମମୁକ୍ତିକାମୀ ହେୟ ଯୋଗୀ ।
ସମଗ୍ର ପୃଥିବୀ ଆଜ ଆଲୋକିତ ଯେଉଁ
ପ୍ରତୀଚ୍ୟର ଜ୍ଞାନେ, ଦାନେ, ତା'-ବାସ୍ତବ-ଧର୍ମି

ଜୀବନ-ଦର୍ଶନ ଚେତ, ତମେ ଚଳଲିଣି
ସେହି ଅବାସ୍ତବ, ଅନିର୍ଦ୍ଦିଷ୍ଟ ଲକ୍ଷ୍ୟ ଆଡ଼େ,
ସେହି ପ୍ରକୃତନ୍ତ୍ର-ଦେଶ-ଆଦର୍ଶ ବଳାଇସେ ।"

"ପ୍ରଣ୍ଡାଚ୍ୟର ଦାନ ବନ୍ଧୁ" କହେ ସେପିଲକ
'ଭୁଲ ନାହିଁ । ପରେ ପରେ ଧର୍ମ-ଧ୍ୱଂସକାରୀ
ବିଶ୍ୱଯୁଦ୍ଧ, ଧର୍ମମସ୍ତ ନିବଡ଼ ଅଶାନ୍ତ,
ସତ୍ୟର ନିପୁତ ହତ୍ୟା, ନ୍ୟାୟର କବନ୍ଧ,
ପତି-ପତ୍ନୀ-ପୁତ୍ର-କନ୍ୟା-ମଧୁର ସମ୍ବନ୍ଧ
ପ୍ରତ୍ୟେକର ସ୍ୱାର୍ଥ-କେନ୍ଦ୍ର-ଦାବାରେ ହେବାର
କଳୁଷିତ, ନିଜ ନିଜ ମାର୍ଗେ ଯିବା ସର୍ବେ,
ଠିକ୍ ସେହି ଜଙ୍ଗଲର ପ୍ରାଣୀବର୍ଗ ପରି,
କେବଳ ହିଁ ନିଜ ନିଜ ଭୋଗ ଅନ୍ୱେଷଣେ ;
ଏଇତ ତମର ବନ୍ଧୁ, ୟୁରୋପ-ସଭ୍ୟତା ?
ଦେଖିଛୁ ନେତ୍ରରେ ଯାହା, ଅସତ୍ୟ ବୋଲି ତା'
କେମନ୍ତେ କହିବି ମୁହିଁ ? ଭାରତର ସେହି
ହ୍ରଦ ତଟେ କ୍ଷୁଦ୍ର ଏକ ଛୋଟା-ଛୋଟ ଗ୍ରାମେ,
ଦରିଦ୍ର କୁଟୀର-ପୁଂଜେ ନର-ପରିବାରେ
ଯେ ସୁଖ, ଯେ ପ୍ରାଣ-ଭୋଗ, ମଧୁ, ଅନାବିଳ,
ଯେ ଗୋଷ୍ଠୀ-ଜୀବନ-ସୁଖ,— ଆପାତ-ଝଲକ
ପ୍ରଣ୍ଡାଚ୍ୟର ଶିଳା-ଲୌହ-କଂକ୍ରିଟର ଏହି
ବିରାଟ, ବିଶାଳ ସ୍ତୂପ, ସହର ଯା ନାମ,
କାହିଁ ତହିଁ ଦେଖିବାକୁ ପାଇବ ହେ ବନ୍ଧୁ ?
ବାହାର ହିଁ ନୁହେ ସବୁ, ଜାଣ ମାଲଟର,

ଶରୀରର ପ୍ରୟୋଜନ, ନିତ୍ୟ ଚଳମାନ
ସମାଜର କ୍ଷଣ କ୍ଷଣ ପରିବର୍ତ୍ତିପ୍ରବୃତ୍ତ
ଦାବୀ ଓ ସୁବିଧା ଯେତେ, ସେହି ହିଁ ଜୀବନ
ନୋହି ପାରେ ମନୁଷ୍ୟର ନିଖିଳ ଚରିତ୍ର ।
ଦୃଶ୍ୟ ଆରପଟେ ସ୍ଥିତ ବିରାଟ ଅଦୃଶ୍ୟ,
ଭୋଗକ୍ଲାନ୍ତ ଦେହ, ଭୋଗ ନାହିଁ ସ୍ପୃହା ଆଉ,
ଖୋଜଇ ଅଜ୍ଞାତ ବସ୍ତୁ । ଜ୍ଞାତ ଓ ପ୍ରତ୍ୟକ୍ଷ୍ୟ
ଏଇ ଧରା, ଏଇ ରାଜ୍ୟ, ଏଇ ଯେ ଜୀବନ,
ଦିନେ ଯାକୁ ପରିତ୍ୟାଗି ଦୂରେ କେଉଁ ଦୂରେ
ତମକୁ ଯିବାକୁ ହେବ,—କାହିଁ ଯିବ ଅବା
କେ ନ ଜାଣେ, ତମେ ଆଉ ନ ଫେରିବ ଏଥି ।
ତେଣୁ ବନ୍ଧୁ, ପ୍ରତ୍ୟକ୍ଷ ବା ସୂକ୍ଷ୍ମ ହିଁ ସବୁ
ନୁହେଁ ଏହି ଜୀବନର ସମଗ୍ର ତାତ୍ପର୍ଯ୍ୟ ।"

"ହେଲ ଅବା", ଉତ୍ତରଇ ପୁଣି ମାଲଟର,
"ପ୍ରଣୟ ରହସ୍ୟ ଖାଲି, ଜୀବନ ରହସ୍ୟ,
ସୂକ୍ଷ୍ମ ଏ ଧରା ପୁଣି ଆବୃତ ରହସ୍ୟେ,
ପ୍ରତ୍ୟକ୍ଷ ବସ୍ତୁ ହିଁ ନୁହେଁ, ଅପ୍ରତ୍ୟକ୍ଷ ମୁଖ୍ୟ,
ମାନିଲି ମୁଁ ;—ମାନିବାରେ କି ବା ଲାଭ, ବନ୍ଧୁ ?
ଦେହବଣୀ, ବାସ୍ତବଣୀ ମେରିଆରେ ମୁହିଁ
ପାଇପାରେ ସାଥୀ ରୂପେ ଦୂରେ ବା ନିକଟେ,
ତମର ତ, ବନ୍ଧୁ, ତିଳେ ନାହିଁ ସମ୍ଭାବନା
ମିଶାକୁ କରିବ କେବେ ଜୀବନ-ସଙ୍ଗିନୀ ।
ତେବେ କିପାଁ ଏ ଭାବନା ? ଏ ଦର୍ଶନ-ଚର୍ଚ୍ଚା ?"

ଅଲଭ୍ୟ ଯା' ତାହା ପାଇଁ ବିଳାପ କପାଇଁ ?
କ ଲଭ ତା'ର ବା କର ନିତ୍ୟ ଆଲୋଚନା ?"

ଧୀରେ ନମ୍ରେ ସେପିଲକ କହଇ ବନ୍ଧୁରେ—
"ସେଥିପାଇଁ ତୁମକୁ ମୁଁ ଆଣିଛୁ ଏ ସ୍ଥଳେ,
ନିଭୃତ ଏ ଦ୍ୱୀପ କୋଣେ ନିଭୃତ ପ୍ରାଣର
ଶେଷ କ୍ଷୀଣ ଆଶା-ଅନୁରୋଧ ଯିବ ଦେଇ
ଏପରି ବନ୍ଧୁର ହାତେ, ଯେ କ ଦତ୍ତ-ସତ୍ୟ
ରଖିପାରେ ପ୍ରାଣଦେଇ"—

"କ ସବୁ କହୁଛ ?
"ଶେଷ ଆଶା", "ଶେଷ କଥା", ଏସବୁ କସ ହେ ?
କଥା କହ ବୀର୍ଯ୍ୟବନ୍ତ ପୁରୁଷ ପରିରେ,
ତମେ କ ସାମାନ୍ୟ ଏକ ପ୍ରାଚ୍ୟ ନାରୀ ପାଇଁ
ଭାବୁଛ କରିବ ହତ୍ୟା ନିଜର ପ୍ରତିଭା,
ଜୀବନର ସବୁ ଯଶ, ଉନ୍ନତି, ଆଶୟ ?"

"ଆଦୌ ତା ନୁହେଁ ବନ୍ଧୁ, ଶୁଣ ମାଲଛରି,
ମିଶାର ପ୍ରଣୟ ଲଭି କେଉଁ ହତଭାଗ୍ୟ
କରିପାରେ, ପୁଣି ଦୃଷ୍ଟ୍ୟ, କଳୁଷିତ କର୍ମ ?

ବିଶୁଦ୍ଧ ପ୍ରଣୟଠାରୁ ପୁରୁଷ ଜୀବନେ
ମହତ୍ତର ନାହିଁ ଅନ୍ୟ ପାବନ ପ୍ରେରଣା ।
ସେହି ସେ ପ୍ରଣୟ ସ୍ପର୍ଶେ, ବନ୍ଧୁ ମାଲଞ୍ଚର,
ନୁହେଁ ମୁହିଁ ଆଉ ସେହି ପୂର୍ବ ସେପିଲକ,
ଦେଶ-କାଳ-ଗୋଷ୍ଠୀ-ମତ-ସଙ୍କୀର୍ଣ୍ଣ ରେଖାରେ
ସୀମିତ ସାମାନ୍ୟ ଏକ ନାଗରିକ ମାତ୍ର ।
ପ୍ରଣୟିନୀ ବିଶ୍ୱମିତ୍ରା ପରଶରେ ମୁଁ ଏବେ
ବିଶ୍ୱ-ନାଗରିକ ବନ୍ଧୁ, ଉଦାର ମନୁଷ୍ୟ ।
ଦେଶ, କାଳ ନାହିଁ ମୋର, ନାହିଁ ଦଳ, ଗୋଷ୍ଠୀ
ମୁକ୍ତ ଆଜ, ବୀର ଆଜ, ଅକୁତୋଭୟ ମୁଁ ।
ରୁଷିଯ୍ବାନ ହୋଇ ମଧ୍ୟ ହଙ୍ଗେରୀର ପାଇଁ,
ନ୍ୟାୟ ପାଇଁ, ଦେଇପାରେ ଅକୁଣ୍ଠିତେ ପ୍ରାଣ,
ତୁମ ପରି·············"

ମାଲଞ୍ଚର ଆସନ ତଆଗି
ହଠାତ୍ ହୋଇଲୁ ଉଭା ସେପିଲକ ଆଗେ,
ଅଶ୍ରୁତ ନୟନେ ସେପିଲକରେ ଅନାଇ
କହିଲୁ ସେ ହାତ ରଖି ପକେଟସ୍ଥ ତାର
ରିଭଲ୍‌ଭରେ—

"ସତ୍ୟ କହ, ତୁହ ଗୁପ୍ତଚର ?
ନୁହେ ଏହା କୂଟବାଣୀ ? ଏ ସବୁ ସମସ୍ତ

ନୁହେଁ ତ ଛଳନା ଖାଲି ନେବାକୁ ମୋଠାରୁ
ବିପ୍ଳବର ସତ୍ୟତତ୍ତ୍ୱ ? ସତ୍ୟ କୁହ ମତେ"—
ସେପିଲକ ମଧ୍ୟ ଉଠି, ବନ୍ଧୁ ଦୁଇ ବାହୁ
ଧରି ସ୍ନେହେ ଦୁଇ କରେ, କହଇ ବନ୍ଧୁରେ—
"କହୁ ମୁଁ ଆସିଛି ସତ୍ୟ, ଏକ ବିନ୍ଦୁ ମିଥ୍ୟା
କହିନି ତୁମରେ ବନ୍ଧୁ, ଏ ଯାବତ ମୁହିଁ ।
ମିଥ୍ୟାବାଦୀ, ଗୁପ୍ତଚର, ଛଦ୍ମ, ଷଡ଼ଯନ୍ତ୍ରୀ
ନାହିଁ କରିପାରେ ଆଶା, ଲଭିବ ପ୍ରଣୟ
ମିନା ପରି ତରୁଣୀର । ଜାଣ ବନ୍ଧୁ ମମ,
ଯେ ଆତ୍ମା ଦେଇଛି ପ୍ରେମ ନିର୍ମଳ, ନିବିଡ଼
ଅଲଭ୍ୟ, ଦୁର୍ଲଭ ସେହି ବାଳିକାର ପଦେ,
ସେହି ହିଁ ଦେଇଛି ତାର ନିର୍ମଳ ବନ୍ଧୁତା
ବିଦେଶୀ ତୁମରେ, ଗୁଡ଼ୁ ଦେଶୀ ଜନେ ତାର ।
ତୁମଠାରେ ଦେଖିଛି ମୁଁ ଉଦାର ନରତ୍ୱ,
ଦେଶସୀମାଙ୍କିତ ନର-ଆତ୍ମାର ସୌନ୍ଦର୍ଯ୍ୟ ।
କମ୍ୟୁନିଷ୍ଟ-ରଥ-ଚକ୍ର ତଳେ ହଙ୍ଗେରିର
ନିର୍ଯାତନା ମତେ ବନ୍ଧୁ ନୁହଇ ଅଜ୍ଞାତ ।
ବିପ୍ଳବର କୁହୁଳିତ ଅଗ୍ନିର ଉତ୍ତାପ
ମତେ ବି ଅଜଣା ନୁହେ । ହେଲେ ଆବଶ୍ୟକ
ତମେ ମତେ ଦେଖିପାର ତମ ସ୍କନ୍ଧାବାରେ ।
ନୁହେଁ ମୁହିଁ ଗୁପ୍ତଚର—ଏଇ କଥା ତାର
ପ୍ରକୃଷ୍ଟ ପ୍ରମାଣ"—

କହି ସେପିଲକ ତାର
ପକେଟରୁ ଦେଲା କାଢ଼ି ଶଉଲଭର ଏକ
ବଢ଼ାଇ ବଂଧୁର ହସ୍ତେ । ଯୋଡ଼ ହସ୍ତେ ପୁଣି
କହିଲା ସସ୍ମିତେ —

"ତମେ ଏହି ଆରେ ଅବା
ହତ୍ୟା ମତେ କରିପାର । କିନ୍ତୁ ଆଶା କରେ,
ମରଣ ପୂର୍ବରୁ ମୋର ଏଇ ଅନୁରୋଧ
ରଖିବ,—ମିନାକୁ ମୋର ଜଣାଇବ ପଛେ
ମରିଛି ପ୍ରଣୟୀ ତାର ସ୍ମୃତି ଯେବେ ତାର
ଶତ୍ରୁର ନିଭୃତ ସ୍ୱରେ, ମରିଛି ସେ ପୁଣି
ଏଇ ଘର ପର ନ୍ୟାୟ ପାଇଁ, ମନୁଷ୍ୟତା ପାଇଁ ।"

---

# ଅଷ୍ଟମ ସର୍ଗ

ଏକ ବର୍ଷ ପରେ ପୁଣି ସେହି ସେ ହେମନ୍ତ
ସମାଗତ ଧରଣୀରେ । ପାଚିଲା ଧାନର
ସୁବର୍ଣ୍ଣ ଉତ୍ତରୀ ବକ୍ଷେ ଦୋଳାଇ ଚଞ୍ଚଳ,
ଶତବର୍ଣ୍ଣ-ସ୍ୱର୍ଣ୍ଣପିଣ୍ଡେ ଶୋଭାଇ ବଦନ,
ମାର୍ଗଶୀର୍ଷ, ଶରତର ଶୁଷ୍କୀକୃତ ମାର୍ଗେ
ଅଚଂଚଳ ପଦନ୍ୟାସେ ଉପସ୍ଥିତ, କ୍ଷେତ୍ରେ
ବାରିଧି-ଚିଲିକା-ଶୁଦ୍ଧ-ବାୟୁ-ନିସେବିତ-
ସ୍ୱଚ୍ଛ ଭୂମେ ସ୍ୱାଗତିତ କରୁଣା କଲେଜ,
ହୈମନ୍ତିକ ଧାନ୍ୟ ଯାଉଁ ଭରି ଘରେ ଘରେ
ବର୍ଷବ୍ୟାପି ଶ୍ରମ ଶେଷେ, ପାଳଇ ଉନ୍ମତ୍ତେ
ଶସ୍ୟୋତ୍ସବ,—ଆନନ୍ଦର ହିଲ୍ଲୋଳ ବୁହାଇ
ସମଗ୍ର ଅଞ୍ଚଳେ । ପାଖାପାଖି ଗ୍ରାମ ଯେତେ
ଶୂନ୍ୟକରି, ସମବେତ, ଏକତ୍ର କେନ୍ଦ୍ରରେ,
ବାଳକ, ଯୁବକ, ବୃଦ୍ଧ, ଯୁବତୀ,, କିଶୋରୀ ।
ଶବଳିତ ସାରା ଭୂମି ଇନ୍ଦ୍ରଧନୁ ବର୍ଣ୍ଣେ
ନର-ନାରୀ-ବର୍ଣ୍ଣମୟ-ବସନ-ଭୂଷଣେ ।
ସେହି କେନ୍ଦ୍ରେ, ପାଖକରେ ବିଦ୍ୟାଳୟ ସାର
ଆଉ ମାଝେ କଲେଜର ମୁଖ୍ୟ କର୍ମାଳୟ,
ଏପରି ଉନ୍ମୁକ୍ତ ଏକ ଉଦାର ପ୍ରାନ୍ତରେ
ସମବେତ ଜନସଙ୍ଘ । ସର୍ବୋଚ୍ଚ ବିନ୍ଦୁରେ

ସେହି ସେ ପ୍ରାନ୍ତର, ବସି ଦେଖନ୍ତି ଆପଣେ
ମିରା, ମାଲକମ, ମିସି ବାଟସନ, ପୁଣି
ଯୋଗି ସଦାନନ୍ଦ ସ୍ୱାମୀ, ବୈଶିକ-ଶୋଭନ ।
ବସି ସେ ଦେଖନ୍ତି କୁତୂହଳେ ଏହି ଗ୍ରାମେ
ଭାରତର ପଲ୍ଲୀଜନେ କେମନ୍ତେ ନିଜକୁ
ନିଜେଇ କରିବେ ଆଜ ଆପ୍ୟାୟିତ, ଶସ୍ୟ
ମାଟିରୁ କାଟିଲା ପରେ, ଆନନ୍ଦ ବି ଏଇ
ମାଟିରୁ ଜପରି ଏହି ନିର୍ବିଦ୍ୟ ଜନତା
ଆହରିବେ, ବତରିବେ ବିନା ଧନେ ପୁଣି
ଆପଣାର ସମାଜରେ । ପୁରାଣ ସଂସ୍କୃତି
ଜପରି ଏ ଦେଶେ ରହି ଆସିଛି, ଶାଶ୍ୱତ
କାଳ ଧରି,—ସ୍ୱୟଂଭୂତ, ସ୍ୱୟଂସମ୍ବର୍ଦ୍ଧିତ ।

ଏସମୟେ ଅଦୂରରେ ଶୁଣାଗଲା ଗୁରୁ
ଗମ୍ଭୀର ନିର୍ଘୋଷ ଗ୍ରାମ୍ୟ ବାଦ୍ୟ ଢୋଲକର,
ସେହି ବାଦ୍ୟ ତାଳେ ପୁଣି ଟେକାଇ ପାଦୁଲ
ବିଷମ ଠାଣିରେ ଆସିବାର ଗଲା ଦେଖା
ପାଇକଙ୍କ ଦୁଇ ଦଳ, ଦୁଇ ଧାଡ଼ି ହୋଇ ।
ସମ୍ମୁଖରେ ଗୃହେ ତାଙ୍କ ଅଚଂଚଳ ପଦେ
ବୃଦ୍ଧ ଦଳପତି, ଏହି ଅଞ୍ଚଳ ଦଳାଇ,
ହସ୍ତେ ତାଙ୍କ ତରବାରୀ ବନ୍ଧୁ ପୁରୁଷର ।

ପାଇକଙ୍କ ଶ୍ରେଣୀ ଧୀରେ ଆସି ସେହ୍ନ ସ୍ଥଳେ
ମିଳା, ତା'-ସାଥୀଏ ଯହିଁ ଥିଲେ ସମାସୀନ,
ଦଳପତ୍ତ ସଂକେତରେ ନଗ୍ନଖଡ଼୍ଗ ପାନ୍ତୁଲ
ଦୁଇ ଶ୍ରେଣୀ ଦୁଇ ଦବେ ଗଲେ ଅପସର ।
ଦଳପତ୍ତ, ଖଣ୍ଡା ମୁନେ ଯରଣି ଅବନୀ,
ପରଶି ସ୍ୱ-ଭାଲ ପୁଣି, ଦେଖାଇ ସମ୍ମାନ
କଲେନର ରାଣୀ-ସମା ସେ ବଣ୍ଡମିହାରେ,
ଖଣ୍ଡାମୁନ ଲଗାଇ ତା ଚରଣ ପ୍ରାନ୍ତରେ,
ବିପୁଳ ଉତ୍ସାହେ ମାରି କ୍ଷେପ ଦୁଇ ତିନ
ଛୁଁ ଖଡ଼୍ଗ ଜାଙ୍ଗୁଲିମାନ ଅସି ଚତୁର୍ଦ୍ଦିଗେ
ଡେଇଁଲେ କୁଦାଟ ମାରି ଚକ୍ର ଦେଇ ଦେଇ,
ଆହ୍ୱାନ ସେ ସମବେତ ଭେଣ୍ଡିଆ ପାଇକେ,—
ଆସ, ଦିଅ ଯୁଦ୍ଧ ବୋଲି, ଅବାଣୀ ନିର୍ଦ୍ଦେଶେ ।
ବାମହସ୍ତେ ଦୃଢ଼େ ଧରି ଢାଲ ସୁପ୍ରାଚୀନ,
ବକ୍ଷେ ଦୃଢ଼ ତରବାରି ଘୂରାଇ ଘୂରାଇ,
'ମଣିମା' 'ମଣିମା' ଡାକି କୁଦାଟେ କୁଦାଟେ,
ଉନ୍ମତ୍ତ ବୃଷଭସମ ବୃଦ୍ଧ ଦଳପତ୍ତ
ମୃତ୍ତିକା ମନ୍ଥନ କଲେ ସମଗ୍ର ସ୍ଥଳର,
ଊର୍ଦ୍ଧ୍ୱଶିଖ କେଶ ତାଙ୍କ ହୋଇ ଟାଙ୍କୁରିତ,
ଦିଶେ ଯେସନେ ଅନ୍ତରର ତେଜ ପୁଞ୍ଜୀଭୂତ ।

ବୃଦ୍ଧର ସମସାମ୍ରାନେ ହୋଇ ଅସମ୍ମାନ,
ଦଳାଇଙ୍କ ନିଜ ନାତି, ନିଜ ପ୍ରିୟ ଶିଷ୍ୟ
ଲମ୍ଫ ଦେଲା ପ୍ରାଙ୍ଗଣରେ, ପଠାବାଡ଼ି ହସ୍ତେ
ତରୁଣ ଶାର୍ଦ୍ଦୂଳ ସମ । କଟି ବସ୍ତ୍ର ତଳେ
ଥିଲା ତାର ଘାଘୁଡ଼ିର ମାଳ ହୋଇ ଗୁନ୍ଥା,
ପ୍ରତି ତାର ଶୌର୍ଯ୍ୟଦୃପ୍ତ ପାହୁଲରେ ବାଜେ
ତାରୁଣ୍ୟର, ପୌରୁଷର ଜୟ-ବାଦ୍ୟ ଯେସନ୍ତେ ।
କାଚ୍ଛି ପିନ୍ଧିଥିବା କଟିବସ୍ତ୍ର ଛଡ଼ା ତାର
ଅପଘନ ଥିଲା ନଗ୍ନ । ଚିକ୍କଣ, ଶ୍ୟାମଳ,
ସୁଗଠିତ, ସୁବର୍ଦ୍ଧିତ, ସମାନୁପାତିକ
ବପୁ ତାର, ମନେ ହେବ, ଜୀବନ୍ତ ସେ କିବା
ଉତ୍ତମ ଶିଳ୍ପୀ-ଗଢ଼ା ମୃଣ୍ମୟର ମୂର୍ତ୍ତି ।

ସମବେତ ଜନତାର ନରନାରୀ ହୃଦେ
ବିପୁଳ ଉତ୍ସାହ ଦେଲା ଦେଖା ବର୍ତ୍ତମାନ
ନାତି, ପିତାମହର ଏ କୁତୂହଳ ହନ୍ତେ,
ଅଧିକ ଉତ୍ସାହେ ଦେଲା ଢୋଲିଆ ତା ବାଦ୍ୟେ
ଆଘାତ, କମ୍ପିଲା ବାଦ୍ୟ ନାଦେ ସେ ଭୂଖଣ୍ଡ
ଠିଆ ଥିବା ଟାଇକଙ୍କ ପଦ ଶତ ଶତ

ଥପୁ ନାହିଁ ଧରେ ଆଉ । ଦ୍ୱନ୍ଦ୍ୱଯୁଦ୍ଧରତ
ଜେଜେ ଆଉ ନାତିଙ୍କର କର, ଚରଣର
କ୍ଷିପ୍ରତା, ଉଗ୍ରତା ପୁଣି କେ ପାରିବ ବର୍ଣ୍ଣି !
ଯୁଗ ଯୁଗ ଧରି ଯାଙ୍କ ଶୋଣିତେ ଶୋଣିତେ
ଜଳି ଆସିଅଛି ଭୀମ ସମରପିପାସା,
ବର୍ଷକର ଏଇ ଏକ ଦିନେ, ଜନସଙ୍ଘ—
ସହସ୍ର ଚକ୍ଷୁର ତଳେ, ଏ ଯୁଦ୍ଧ ପ୍ରାଙ୍ଗଣେ,
ସେ କି ଆଉ ମାନି ପାରେ ପୈତୃକ ସମ୍ବନ୍ଧ ?
ଦୁଇ ବଂଶ, ପରସ୍ପର-ଶତ୍ରୁ-ଜୀବ ପରି
ନାତି, ପିତାମହେ ସମ୍ମୁଖୀନ ଅନ୍ୟୋନ୍ୟର
ହୋଇ କଲେ ଚେଷ୍ଟା ଅନ୍ୟେ କେହ୍ନେ ଆଘାତିବେ
ନିଜକର-ଶସ୍ତ୍ର-ମୂନେ, ନିର୍ମମ ପ୍ରହାରେ ।
ଛକା ଛକି ରହି ଦୁହେଁ, ଆଉବାଁକେ ଗୁହିଁ,
କୁହାଟି ଆନର ମାଡ଼େ ପରହାରି, କ୍ଷିପ୍ରେ
ଓଲଟାଇ ଦେଇ ପିଠି, ପୁଣି ସତର୍ଜନ
ଆକ୍ରମି ତା ବିରୋଧୀରେ, ଖଞ୍ଜା ଉଣ୍ଡି ଉଣ୍ଡି
ଠେଲି ଦେଉଥାନ୍ତି ଶସ୍ତ୍ର । ଶସ୍ତ୍ରେ ଶସ୍ତ୍ର ବାଜେ,
ବୃଦ୍ଧର ଢାଲରେ ପଡ଼େ ତରୁଣ ହସ୍ତର
ନିଷ୍ଠୁର ଲାଠିର ମାଡ଼, ସେହି ଲାଠି ଯେବେ
ବୃଦ୍ଧର ଅସିର ଧକ୍କା ନିବାରି କୌଶଳେ
ତରୁଣ ଆକ୍ରମେ ନିଜ ଜେଜେକୁରେ ଓଲଟି ।
ଚକ୍ର ଖାଇ, ପଛେ ଘୁଞ୍ଚି, ଆଗେ ମାଡ଼ି ପୁଣି,
ଘୂରୁଘୂରି, ଛକାଛକେ ରହି ଆନେ ଆନେ
ମଣ୍ଡଳରେ, ପୁଣି ଦେଇ ଲମ୍ଫ ସ-କୁହାଟ

ଲାଗିଯିବା ପୂର୍ଣ୍ଣ ଯୁଦ୍ଧ, ସେ ନାନ୍ଥ-ଜେଜେର
ଦେବତା ଦର୍ଶନଯୋଗ୍ୟ ଘଟଣା ସେ ହେଲା,
ଉତ୍ସାହେ ମନ୍ଥନ କରି ବକ୍ଷ ଜନତାର ।

ଶେଷେ ନାନ୍ଥ କେଉଁ ଏକ ଦୁର୍ବଳ ମୁହୂର୍ତ୍ତେ
ଘର୍ମାକ୍ତ ଜେଜେରେ ତାର, ଦ୍ୱନ୍ଦ୍ୱ ସଂଗ୍ରାମର
ସୂକ୍ଷ୍ମ ଏକ କୌଶଳରେ ନେଲା ଉଡ଼ି ଆସ୍ତେ
ଖେଳ-ବେଢ଼ା ଆରପଟେ, ମିଶା, ତା' ସାଥିଏ
ଯହିଁ ବସି ଦେଖୁଥିଲେ ଏ ଖେଳ, ନିର୍ବାକ ।
ମିଶା ବର୍ତ୍ତମାନ ଉଠି ଆସନରୁ ତାର
ଆଲିଙ୍ଗି ଧଇଲା ହାତ ବୃଦ୍ଧ ଦଲାଇଙ୍କ,
ଅସି, ଖାଲି କାଢ଼ି ତାଙ୍କ ଆପୁସ କରରୁ
ଲମ୍ବାଇଲା କଣ୍ଠେ ତାଙ୍କ ଗେଣ୍ଡୁ ଫୁଲମାଳା ।
ସମବେତ ଜନସଙ୍ଘ ଦେଲେ କରତାଳି ;
ହୁଳହୁଳି ଧ୍ୱନି କଲେ ପୁରବାଳାଗଣ,
'ଜୟ ଦଲାଇଙ୍କ ଜୟ,' ଧ୍ୱନି କଲେ ସର୍ବେ ।
ଦଲାଇଏ କିନ୍ତୁ ତାଙ୍କ କଣ୍ଠୁ ମାଳା କାଢ଼ି
ବିଜୟୀ ନାନ୍ଥରେ ଦେଲେ, ଆଲିଙ୍ଗି ତାହାରେ
ଆପଣାର ଦୃଢ଼ ବକ୍ଷେ, ଚୁମ୍ବିଲେ ତା' ଗାଲ,
ବୃଦ୍ଧ ଦୁଇ ନେତ୍ର ତାଙ୍କ ହେଲା ଅଶ୍ରୁସିକ୍ତ
ଗମ୍ଭୀର ଆନନ୍ଦେ । ମିଶା, ତରୁଣ ବୀରର
ହସ୍ତ ଧରି, ଚନ୍ଦନର ପ୍ରଲେପ ଲେପିଲା
ସ୍ୱେଦସିକ୍ତ ତା' କପାଳେ, ଗୌରବ-କବଚ ।

ପୁଣି ଜୟଧ୍ୱନି କଲେ ସମଗ୍ର ଜନତା,
ପୁଣି ହୁଳହୁଳି ଦେଲେ ପୁରବାଳାଗଣ
'ଜୟ ଦଲାଇଙ୍କ ଜୟ' ପୁଣି ଉଠେ ଧ୍ୱନି
ଗଗନ କମ୍ପିତ କରି ।

ତା'ପରେ ଆସିଲେ,
ଭେଣ୍ଡିଆଏ ଦୁଇ ଦୁଇ, ଦେଖାଇବା ପାଇଁ
ଦେହର ପରମ-ଶିଳ୍ପ । ଗୁରୁ ଆଖି-ତଳେ,
ଦିନ ଦିନ ଅଭ୍ୟାସରେ କିଶୋର-କୋମଳ-
ଦୁର୍ବଳ ଶରୀର ତାଙ୍କ ହୋଇଥିଲା ଗଢ଼ା
ବୀର୍ଯ୍ୟଶୀଳ ପୌରୁଷର ସୁନ୍ଦର ଆଦର୍ଶେ ।
ଶରୀରର ସେହି କାବ୍ୟ ଏକେ ଏକେ ଆସି
ନଗ୍ନ ଦେହେ, ମେଘମୁକ୍ତ ନୀଳ ନଭ ତଳେ,
ହେମନ୍ତର ଶ୍ୟାମ-ସ୍ୱର୍ଣ୍ଣ ମଧୁ ପରିବେଶେ
ଯୁବାଏ ମେଳାଇ ଗଲେ, ଛନ୍ଦ ପରସ୍ପରେ
କଣ୍ଠାଯୁଦ୍ଧେ, ମାରି ଚଗି, ମାରି ନହୁଣିଆ ।
ତାଙ୍କପରେ ଦେଲେ ଦେଖା କିଶୋର କିଶୋରୀ
ନାନା ଭଙ୍ଗେ ତନୁବନ୍ଧ ଦେଖାଇ ମିଳିତେ,
ଦେଖାଇଲେ କମନୀୟ ତନୁର ମାଧୁର୍ଯ୍ୟ,
ଉପସ୍ଥିତ ପିତାମାତା, ଭାଇ ଭଗିନୀଙ୍କ
ହୃଦୟେ ଜାଗ୍ରତ କରି ଗର୍ବ, କ୍ଷମଣୀୟ ।

ଶେଷେ ଶୂନ୍ୟ ଖେଳ-ବୃତ୍ତେ ପୁଣି ଦଳପତି
ଦଳାଇ କଣଲେ ଏକେ । ନବୀନ ସଙ୍କେତେ
ପାଇକେ ଆସିଲ୍ ଗୃଳ ଜନତା ମଧ୍ୟରୁ,
ଆସିଲ୍ ତରୁଣ ନାତି । ବିନା ବାକ୍ୟ ବ୍ୟୟେ,
ପାଇକ ସେ ଚଢ଼ି କ୍ଷିପ୍ରେ ଦଳାଇଙ୍କ କାନ୍ଧେ
ସ୍ତମ୍ଭ ସମ ହେଲ୍ ଉଭା । ଦଳାଇଙ୍କ ନାତି
ଉଠିଲ୍ ପାଇକ କାନ୍ଧେ । ପାଇକ ସେ ପୁଣି
ଦଳାଇ ନାତିରେ ଟେକ ଊର୍ଦ୍ଧ୍ୱ ଦକ୍ଷ-କର-
ପାପୁଲରେ ଦଣ୍ଡ ପରି ରଖିଲ୍ ଶୁଆଇ ।
ବୃଦ୍ଧ ଦଳପତି-ଯେନ ଏହି ମହାଭାର
ଗୌରବରେ ସୁଖୀ ହାଣ୍ଡି ପରି ଧୀରେ ଧୀରେ
ବୁଲି, ବୁଲି ଚଉଦିଗେ କଲେ ପା-ଗୃରଣ,
ସମଗ୍ର ଜନତା ଦେଲ୍ ତାଳି ଏକସ୍ଵରେ ।
ଏକାଳେ ଉଦାର କଣ୍ଠେ ଦଳାଇର ନାତି—,
ନବୀନ ତରୁଣ ସେ ତ, —କେଉଁ ତରୁଣୀକୁ
ଲକ୍ଷ୍ୟ କରି ଗୁଡ଼ଦେଲ୍ ପ୍ରାଚୀନ କାବ୍ୟରୁ
ବଚ୍ଛା ଏକ ମଧୁ ଗୀତ ନବଡ଼ ପ୍ରେମର,
ଜନତାର ବକ୍ଷେ ବକ୍ଷେ ମଧୁ ବେଦନାର
ଗାଢ଼ ରେଖା ଟାଣିଦେଲ୍ ଵୀର ପୌରୁଷର
ନାଶ୍ୱ ପଦେ ସେହ୍ନ କାନ୍ତ ଆତ୍ମ-ନିବେଦନ ।

ମାଲକମ ସେ ଇଂରେଜ କହଇ ମିଶାରେ
ମୁଗ୍ଧ କଣ୍ଠେ-"ଜାତି ମୋର ଶାସିଲା ଏ ଦେଶ
ସାର୍ଦ୍ଧ ଦୁଇ ଶତ ବର୍ଷ, କିନ୍ତୁ ପାରିଲାନି
ସ୍ପର୍ଶି ଏ ଜାତିର ମର୍ମ । ଆମେ ତମ ପରେ
ନିର୍ବିଘ୍ନରେ ନନ୍ଦି ଦେଇ ବୈଦେଶିକ ଧାରା
ଶିକ୍ଷାରେ, ଶାସନେ, ଗ୍ରାମ-ତନ୍ତ୍ରେ, ବିସ୍ତରରେ,
ଅଜାଣତେ ଧ୍ୱଂସ ସାଧୁଅଛୁଁ, ମୁଁ ଦେଖୁଛି,
ବହୁ ପୁରାତନ ଏକ ସୁଦୃଢ଼ ସଂସ୍କୃତି ।
ସଭ୍ୟମାନବର ପ୍ରାଣ ଖୋଜିଥାଏ ଯାହା
ସବୁଅଛି ଏହିଠାରେ । ବୀର୍ଯ୍ୟ ଓ କବିତା,
ସଙ୍ଘବଦ୍ଧ ବଞ୍ଚିବାର, ନୃତ୍ୟ ଆଉ ଗୀତ,
ଚିତ୍ର, ଶିଳ୍ପ, ସାହିତ୍ୟର ନିଜସ୍ୱ ଅର୍ଚ୍ଚନା ।
ଅଧିକ ଲଜ୍ଜାର କଥା, ପୁଣି ସେ ବିଦେଶୀ—
ଶାସନ—ମୋହ-ବିମୂଢ଼ ତମ ଦେଶ ଲୋକେ
ନ ବୁଝନ୍ତି, ଭାରତର ଅଦ୍ଭୁତ ପଲ୍ଲୀରେ
ଏବେ ବି ରହିଛି ବଂଶ ଯେ ସୂକ୍ଷ୍ମ ସଂସ୍କୃତି,
କୋଟ-ପ୍ୟାଣ୍ଟ-ଟାଇ ପିନ୍ଧି, ବିକୃତ ଇଂରାଜି
କହିବାର ଦମ୍ଭ ଯେନ ବିସ୍ତରନ୍ତି ଥୋକେ
ଏଇ ତମ ଗ୍ରାମ୍ୟ ଜନତାରୁ ସେ ବାହାର,
ଅଧିକ ଉନ୍ନତତର, ଅଧିକ ସଂସ୍କୃତ,
ଗାନ୍ଧୀର ବାଣୀ ବି ମଧ୍ୟ ଅପାଂକ୍ତେୟ ଆଜ ।"

ଏହା କହି, ଆସିଗଲେ ଗ୍ରାମ ଯାତ୍ରାଦଳ,
ଅଭିନୟ ଦେଖାଇବେ କଳ୍ପିତ ଶସ୍ୟର
ଗୃହ ପ୍ରବେଶର ଅଭିନନ୍ଦନ-ଉତ୍ସବ ।
ମାଳତୀ ନାମର ନର୍ତ୍ତକୀ ଗୌରୀ ମନୋହାରୀ
ଏଇ ନବାଗତା ସେହି ଦିନ, ବର୍ଣ୍ଣମିତ୍ରା—
ସମ୍ମୁଖରେ, ପୁଣି ତାର ଗ୍ରାମ-ସେବୀ ସ୍ୱାମୀ,
ଗୃହସ୍ଥ, ଗୃହିଣୀ ରୂପେ ଏଇ ଉତ୍ସବର
ନାୟକ, ନାୟିକା ହୋଇ ଦେଲେ ଦେଖା ଆସି ।
ସମବେତ କଣେୀଙ୍କ କଣ୍ଠ ଏଇ କାଳେ
ଶୁଭିଲା ସ୍ୱାଗତ-ଗୀତ କଳ୍ପିତ-ଧାନ୍ୟର ।

## ଗୀତ

ଧନ ଆସ ଗୋ,
ଶୀର ଆସ ଗୋ,
ଶୁଭ ଆସ ଗୋ,
କୁଟୀରେ କୁଟୀରେ ଦୁଖ ନାଶ ଗୋ ।

ତବ ଆଗମନେ ହେବ ଘର ଉଜଳ,
ତମେ ଆମ ଗୃହ-ଦେବୀ, ତର କୁଶଳ,
ସକଳ ଦୁରିତ ନାଶେ
ତବ ହାସ ଗୋ
ଧନ ଆସ ଗୋ···

ଆମେ ଆଣୁ ତୁମକୁ ମା' ବସୁଧା'-ଶିର,
ତୁମେ ଆମ ଘର, ଦ୍ୱାର, ସକଳ ଶିର,
ତୁମକୁ ଦେଖିଲେ ଭୁଲୁ
ସବୁ ତ୍ରାସ ଗୋ
ଧନ ଆସ ଗୋ ।...
ଆସ ବରଜ'ମା ଆମ ଅଭୁତ ଘରେ,
କନକବରଣା ବଧୂ କମଳ କରେ,
ଫୁଟାଇ ହୃଦପ୍ରେ ନବ
ସୁଖ ଆଶ ଗୋ
ଧନ ଆସ ଗୋ...

ସମବେତ ଗାନ ପରେ ଆସିଲେ କୃଷକେ
କର୍ତ୍ତିତ ଶସ୍ୟର ଭାର ଘେନ ମଥା ପରେ,
ସଙ୍ଗେ ଘେନ ଶ୍ରେଷ୍ଠ ଶ୍ରେଷ୍ଠ ପୁଏ ଝିଏ ତାଙ୍କ,
ଯାଙ୍କ ପ୍ରତି କରେ ଥିଲ ବିବିଧ ପ୍ରକାର
ଧାନ୍ୟର ଗ୍ରନ୍ଥିତ କେଣ୍ଡା, ମାଳ୍ୟ ମନୋହର ।
ସକଳେ ସେ ସମବେତ ନର୍ତ୍ତିତ-ଗଣ୍ଡରେ,
ଗାଇଲେ ଧାନ୍ୟର ଜୟ, କୃଷକର ଜୟ ।

## ଗୀତ

ଆମେ ଚଷା,
ଆମେ କୃଷୀ
ଆମେ, ଧରାଧର୍ଷଣକାରୀ,
ଆମେ, ଯୁଗ ଯୁଗ ଧରି

ବସୁଧାକୁ ଚିର
ଅମୃତ ଅଛୁଁ କାଢ଼ି ।

ଆମେ ଚଷା,
ଆମେ କୃଷୀ
ଆମେ ଧରାଧର୍ଷଣକାରୀ ।

ଆମେ ନିଖିଳ ଜନର, ପୋଷକ, ତୋଷକ
ସ୍ରଷ୍ଟା ଅତୁଳମୟ,
ଆମେ ଘୃଣ୍ୟ ପଙ୍କେ ସୁନା ପାଲଟାଉ,
କରୁ କୁତ୍ସିତେ କମମୟ ।
ଆମେ ବସୁଧାରେ କରୁ ଉର୍ବର, ଦେଇ
ଶରୀର-ଘର୍ମବାରି ।
ଆମେ ଚଷା
ଆମେ କୃଷୀ
ଆମେ ଧରାଧର୍ଷଣକାରୀ···

ଆମେ ନାହିଁ ମାନୁ ଖରା, ନାହିଁ ଦେଖୁ ଚରା
ନ ଜାଣୁ ବୃଷ୍ଟିଭୟ,
ଆମ ଜୀବନର ଏକ ଆନନ୍ଦ, ଆମେ
ପ୍ରକୃତି କରୁ ଜୟ ।
ଆମେ ଭିକ୍ଷୁକ ନୋହୁ, ନ ମାଗୁ କା' ଦୟା,
ଆମେ, ଅଭୟ-ସୃଷ୍ଟିକାରୀ ।

ଆମେ ରକ୍ଷା,
ଆମେ ସ୍ରଷ୍ଟୀ
ଆମେ ଧରାଧର୍ଷଣକାରୀ
ଆମେ ଯୁଗ ଯୁଗ ଧରି
ବସୁଧାକୁ ଚିରି
ଅମୃତ ଅନ୍ନୁଁ କାଢ଼ି ।
ତାପରେ ହୋଇଲେ ଉଭା ଜନସଂଘ ଆଗେ,
ପାଲ୍‌ବାଲ୍, ଜନତାର ମୁଖପାତ୍ର ରୂପେ,
ଜନତାର କବି, ବାଗ୍ମୀ, ରସପ୍ରଦାୟକ,
ଶିକ୍ଷକ, ଶ୍ରୀଗୁରୁ ଆଦି ସବୁ ଏକାଧାରେ ।
ଗାନେ, କାବ୍ୟ ବ୍ୟାଖ୍ୟାପନେ, ଶବ୍ଦାର୍ଥକୌଶଳେ,
ମୁଗ୍‌ଧ କରି ଜନତାର ଚିତ୍ତ ସଦ୍ୱାଦ୍ୟରେ,
ବୁଝାଇଲେ ତାଙ୍କୁ ଶେଷେ ସ୍ୱାଧୀନ ଏ ଦେଶ,
କାହିଁକି କପରି ହେଲା, କି ତାର ତାତ୍ପର୍ଯ୍ୟ,
ଗଣତନ୍ତ୍ର-ଶାସନର କି ଅବା ମର୍ଯ୍ୟାଦା,
ରାଷ୍ଟ୍ର ସଂଘେ ଭାରତର ଆସନ କପରି,
ଭାରତୀୟ ଜନତାର ସମୃଦ୍ଧ କଲ୍ୟାଣେ
ପଞ୍ଚସାଲ ଯୋଜନାର କିବା ଆଭିମୁଖ୍ୟ ।
ଜନତା ଶୁଣୁଛନ୍ତି ବସି ମନ୍ତ୍ରମୁଗ୍‌ଧବତ
ପାଲ୍ ବ୍ୟାଖ୍ୟାପନ । ଏହି କାଳେ କେହି ଜଣେ
ମିହା, ମାଲକମ ହସ୍ତେ ଆଣି ଦେଲା ଚିଠି,
ଡାକେ ଆସିଥିବା ପତ୍ର, ପତ୍ରିକା ସମ୍ଭାର ।
ହଙ୍ଗେରୀର ବିପ୍ଲବର ବାରତା ଜଗତେ
ପ୍ରକାଶିତ ହେବା ହେତୁ ମିହାର ଚିତ୍ତରେ
ଶାନ୍ତି ନାହିଁ, ସେପିଲ୍‌କୋ ଶେଷ-ପତ୍ର ଯେଣୁ.

ବୁଦାପେଷ୍ଟ ପାଇଥିଲା ବହୁବନ୍ଦନ ପୂର୍ବେ,
ଆଜ ଆସୁନାହିଁ ପତ୍ର । କି ହେଲା ତାହାର,
କିଛି ପତ୍ତା ନାହିଁ ମିଳେ । ରୁଷ୍‌-ଦୂତାବାସ
ତୁରନ୍ତ-ତାରରେ ଡାକ ନେଇଗଲେ ତାକୁ
ଛୁଣ୍ଡାଇ ମିହାର ପାଶୁ, ପୁଣି ଘରତରୁ
ତଡ଼ି ନେଇ, ଲୌହ ଯବନିକା ଆରପାରେ
ବନ୍ଦୀ କଲେ କମ୍ୟୁନିଷ୍ଟ ଭୂମି ସୀମା ମଧ୍ୟେ ।
ତଥାପି କୋମଳ ଆଶା ଦୁଇ ପ୍ରଣୟୀର
ବଞ୍ଚୁଥିଲା—ଦୁହେଁ ଅବା ମିଶାଇବେ ପ୍ରାଣ
ବନେ, ଏଇ ସ୍ୱରଗର ନୀଳାକାଶ ତଳେ,
ଅବା * ନେଭା, ମସ୍କୋଭାର ତଟପ୍ରାନ୍ତେ କାହିଁ ।
କିନ୍ତୁ ଏଇ କେତେ କାଳ ଅ-ସମ୍ବାଦ ଯୋଗୁଁ
ଦୁଶ୍ଚିନ୍ତାରେ କଟୁଥିଲା ମିହାର ଜୀବନ ।
ଡାକ ହାତେ ପାଉଁ ମିହା, ପ୍ରଥମେ ଫିଟାଇ
ପଢ଼ିବାରେ ଲାଗିଲା ସେ ବଡ଼ ପତ୍ର ଏକ,
ଆସିଥିଲା ଯାହା ଚନ୍ଦ୍ର ବନ୍ଧୁ ନିଜ ଅଙ୍ଗେ
ଯୁରୋପର ନାନା ଦେଶୁଁ । କୌତୂହଳଭରେ
ତେଣୁ ସେ ପଢ଼ିଲା ତାକୁ । ପଢ଼ୁଁ ପଢ଼ୁଁ ତାର
ଦୁଇ ଗଣ୍ଡ ହେଲା କ୍ରମେ ବିବର୍ଣ୍ଣ ସହସା,
ତା’ପରେ ନିଖିଳ ଜନ ଚକ୍ଷୁ ସମକ୍ଷରେ,
ଥରଥର ରୂପଲତା ତୋଫାନ-ବିକ୍ଷୁବ୍ଧା
ପରି ସେ ଆସନୁ ଟଳି ପଡ଼ିଗଲା ଭୂମେ ।

— — —

* ନେଭା, ମସ୍କୋଭା ରୁଷିଆର ନଦୀ । ନେଭା ତଟରେ ଲେନିନ୍‌ଗ୍ରାଡ୍‌ ଓ ମସ୍କୋଭା ତଟରେ ମସ୍କୋ ଦଣ୍ଡାୟମାନ ।

# ନବମ ସର୍ଗ

"ସୁସ୍ମିତା, ସୁରଞ୍ଜିତା ଭଗିନୀ ମୋହର,
ସମ୍ପୂର୍ଣ୍ଣ ଅପରିଚିତା ମୋଠାରୁ ଏ ପତ୍ର
ପାଇ, ନିଶ୍ଚେ ହେବ ଆଦ୍ୟେ ଅସୀମ ବିସ୍ମିତ ।
କିନ୍ତୁ ତମ ପାଶେ, ବନ୍ଧୁ, ଅନ୍ୟା ନୁହେଁ ମୁହିଁ
ହେଲେହେଁ ଅପରିଚିତା । ଧରି ନେବ ତମେ,
ସହସ୍ର ସହସ୍ର କିଲୋମିଟର ଦୂରରେ
ସମଦୁଃଖଭାଗୀ ଏକ ବିଦେଶିନୀ ମତେ,
ଅତି ଆପଣାର ବୋଲି, ଅତି ଅନ୍ତରଙ୍ଗ ।

ହଙ୍ଗେରୀ ମୋ ଜନ୍ମଭୂମି, କିନ୍ତୁ ବର୍ତ୍ତମାନ,
ଲଣ୍ଡନରୁ ଦେଉଛି ମୁଁ ଏ ପତ୍ର ତୁମରେ ।
ଜୀବନରେ ଆଉ ମୋର ପ୍ରିୟ ଜନ୍ମଭୂମି
ଦେଖିବ, ନାହିଁ ଏ ଆଶା । ଯୁଗେ ଯୁଗେ ଯାହା
ଘଟିଛି କଳଙ୍କ ଲେପି ମାନବ ଚରିତ୍ରେ
ଆଜି ପୁଣି, ଏହି ସଭ୍ୟ ବିଂଶ ଶତାବ୍ଦୀରେ,
ସଭ୍ୟତାର ଅହଂକାରୀ ପୃଥ୍ୱୀପର ବକ୍ଷେ,
ସମଗ୍ର ଧରାରେ କୋଟି ଅପଲକ ନେତ୍ର —
ତଳେ, ସେହି ନରପ୍ରେତ ପଶୁ ବ୍ୟବହାର
ଅନ୍ୟ ମନୁଷ୍ୟର, ଘଟି ଯାଇଛି, ବାନ୍ଧବ,

ପଢ଼ିଥିବ ପତ୍ରିକାରେ, ହେ ଦୂରଦେଶିନୀ
ହଙ୍ଗେରୀ ବିପ୍ଳବ କଥା । ସେହି ବିପ୍ଳବର
ଅଶ୍ରୁ-ଦୁଃଖ- ରକ୍ତମୟ ସ୍ମୃତି-ସନ୍ଧ୍ୟାତର
ମୁଁ ଏକ ଜୀବନ୍ତ-ଗାଥା,—ନଷ୍ଟ-ନୀଡ଼ ପକ୍ଷୀ,
ଶାଖା-ଚ୍ୟୁତ ପତ୍ର, ଅବା ଯୂଥଭ୍ରଷ୍ଟ ପ୍ରାଣୀ,
ପଥରେ ମୁଁ ଭ୍ରାମ୍ୟମାଣ ଦେଶେ ଦେଶେ ଆଜ
ଗୃହହୀନ, ଦେଶହୀନ, ଜ୍ଞାତି ବନ୍ଧୁ ହୀନ ।
ମୁଁ କିନ୍ତୁ ଏକାକୀ ନୁହେଁ, ସହସ୍ର ସହସ୍ର
ମୋପରି ମୋ ଦେଶବାସୀ, ନରନାରୀଯୁବା,
ବାଳକ ବାଳିକା ପଳାତକ ଦେଶତ୍ୟାଗୀ
ଦୂରଦୂରାନ୍ତରେ, ସଭ୍ୟମାନ୍ୟ ମନୁଷ୍ୟର
ପଶୁତ୍ୱରୁ ଆପଣାକୁ ବଞ୍ଚାଇବା ପାଇଁ,
ବଞ୍ଚାଇ ରଖିବାପାଇଁ ମନୁଷ୍ୟ-ମର୍ଯ୍ୟାଦା ।
ମନୁଷ୍ୟର ଜୟ ଗାଇ ବଦନେ ବଦନେ,
ଧରିତ୍ରୀବକ୍ଷେ ସାଧାରଣ ଜନ ଜନତାର
ସ୍ୱର୍ଗ ଥାପିବାର ଦେଇ ଛଦ୍ମ ପ୍ରତିଶ୍ରୁତି,
ଏପରି ନୃଶଂସ ହତ୍ୟା କରିପାରେ ଲୋକ,
ସତ୍ୟ, ନ୍ୟାୟ, ଧର୍ମ, ଅବା ମାନବିକତାର—
ପ୍ରତ୍ୟକ୍ଷ୍ୟ ସମ୍ପର୍କ ବିନା କେହି ସଭ୍ୟ ଜନ
ବିଶ୍ୱାସ ହୃଦୟେ ନାହିଁ କରିବେ, ବାନ୍ଧବ ।
ସେହି ମର୍ମ-ମନ୍ଥନକ, ପ୍ରାଣ ଚୂର୍ଣ୍ଣକାରୀ
ଅଘଟଣ ଘଟି ଯାଇଅଛି ଏଇ ମାତ୍ର
ହଙ୍ଗେରୀରେ, ଲକ୍ଷ ଲକ୍ଷ ନରନାରୀଙ୍କର
କମ୍ୟୁନିଷ୍ଟ ରୁଷିଆର ସୃଷ୍ଟ ନିଷ୍ପେଷଣେ ।

ହତଭାଗ୍ୟ ଦେଶ ମୋର, ଅଭିଶପ୍ତ ଜାତି,
ବାର ବାର ବିଦେଶୀର ରୂଢ଼ ପଦତଳେ
ହୋଇ ଆସିଅଛି ଏହିପରି ନିର୍ଯ୍ୟାତିତ,
ବାର ବାର ଏହିପରି ଉଠି ବିଦ୍ରୋହରେ
ପୁଣି ଯାଇଅଛି ମିଶି ଆପଣା ମାଟିରେ
ମୁହଁ ମାଡ଼ି, ଦୁର୍ବଳର ବିଳାପେ କୁହାଇ ।
ଏଇ ଯା ଲେଖୁଛି ପତ୍ର ତୁମରେ ଭଗିନୀ,
ମୋର ସେହି ହତଭାଗ୍ୟ ଦେଶ, ଜାତିପାଇଁ
ବର୍ଷାକୁଳ ନଦୀ ବେଣୀ ପରିରେ ମୋ ଅଶ୍ରୁ
ନେତ୍ରପ୍ରାନ୍ତ ଲଙ୍ଘି ଭାସିଯାଏ ଅନାୟତ୍ତେ ।
ତମ ଦେଶ, ତମ ଧର୍ମ, ତମର ସଂସ୍କୃତି
ଅନନ୍ୟ ମହିମାମୟ ସମଗ୍ର ଧରାରେ ।
ଲକ୍ଷ ଲକ୍ଷ ବୁଦ୍ଧିଜୀବୀ ପୂର୍ବ, ପଶ୍ଚିମରେ
ଭାରତର ବାଣୀ ଆଗେ ବିନମିତ ମସ୍ତକ ।
ଯୁଗେ ଯୁଗେ ବିଶ୍ୱ ଆଗେ ବାଢ଼ିଛି ଭାରତ,
ବିଶୁଦ୍ଧ ସତ୍ୟର ବାଣୀ, ପରମ ତତ୍ତ୍ୱର,
ଦେଶକାଳ କ୍ଷୁଦ୍ର ସୀମାଙ୍କିତ ମନୁଷ୍ୟର
ଅନ୍ତର ଦୈବତ ତଥ୍ୟ । ସେ ସତ୍ୟ ଗ୍ରହଣେ
ଭାରତ କଣନ ପୁଣି ହେଲେ କେଉଁକାଳେ,
ପର୍ଶ ତାର ଇତିହାସେ, ବାଧ କାହାରରେ,
ବିରୋଧର ସମାଧାନ କରିନାହିଁ କେବେ
ବିରୋଧୀରେ ମଥା କାଟି, ଅବା ତାର ଓଷ୍ଠେ
ମୌନ କରି ପଶୁଭୟେ । ସମଗ୍ର ଧରାର
ସଭ୍ୟତାର ଇତିହାସେ ଅହିଂସାପନ୍ଥୀ—

ବୁଦ୍ଧ, ଗାନ୍ଧୀ – ଏ ଧରାର ପୂତ ସର୍ବଶ୍ରେଷ୍ଠ;—
ଯେହୁ ହିଁ କେବଳ ଉଠି ଦୈବତ ଊର୍ଦ୍ଧ୍ୱରେ,
ଗୋଷ୍ଠୀ, ଦେଶ, ତାତ୍କାଳିକ କ୍ଷଣିକ ଲାଭର
ସକଳ ମୋହରେ ଭାଙ୍ଗି, ପ୍ରଚାରିଲେ ବାଣୀ
ମୈତ୍ରୀ, ପ୍ରେମ, ଅହିଂସାର, ଜୀବେ ଓ ମାନବେ ।
ପୃଥିବୀର କେଉଁ ଦେଶେ କେହିହିଁ ମହାତ୍ମା
ଏ ଦୁଇ ପଚରେ ଦେଇ ଯାଇନ ନିର୍ମଳ
ଐଶ୍ୱରିକ ମହାତତ୍ତ୍ୱ, ଅଛନ୍ଦ ଭାଷାରେ,
କାହାର ବାଣୀରେ ଏତେ ବିକଚ ମଧୁର
ଫୁଟି ନାହିଁ, ଜୀବ-ଅବା-ମନୁଷ୍ୟ-ମର୍ଯ୍ୟାଦା,
କାହାରିହିଁ ବାଣୀ ହୋଇ ନାହିଁ ପ୍ରଚାରିତ
ଏ ଦୁହିଁଙ୍କ ବାଣୀ ସମ ବିନା ରକ୍ତପାତେ ।
ହିଂସାରେ ବିଶ୍ୱାସୀ ଆମେ ପାଶ୍ଚାତ୍ୟ ଜାତିଏ,
ପାଦାର୍ଥିକ ସ୍ୱାଚ୍ଛନ୍ଦ୍ୟକୁ ବୁଝିଣ ସଭ୍ୟତା,
ତାହାର ରକ୍ଷଣ ଲାଗି ଦୁଇ ବିଶ୍ୱ-ଯୁଦ୍ଧେ
ହୋଇ ମଧ୍ୟ ଧ୍ୱସ୍ତ, ପୁଣି ତୃତୀୟ ସଂଗ୍ରାମ
ପାଇଁ ହେଉ ଅଛୁଁ ସଜ । ଯୁଗ ଯୁଗ ଧରି
ୟୁରୋପୀୟ ସଂସ୍କୃତିର ହିଂସା-ଜର୍ଜରିତ,
ହତ୍ୟା-କୁତ୍ସିତ, ଷଡ଼ଯନ୍ତ୍ର-ବିଦୂଷିତ,
ଚିନ୍ତା ଧାରା, ଅବଶେଷେ ଦେଇଅଛି ଦେଖା
*ମାର୍କସ୍ ତତ୍ତ୍ୱେ, ଯା ଜଙ୍ଗଲ-ଜନ୍ତୁ-ଉପଯୋଗୀ ।
ମାନବର ସର୍ବ-ଦୁଃଖ-ହର ପନ୍ଥା ବୋଲି

* କାର୍ଲ ମାର୍କସ ପ୍ରଚାରିତ କମ୍ୟୁନିଜମ୍ ବା ସମସମାଜବାଦ ଲକ୍ଷ୍ୟ ସାଧନ ପାଇଁ ଯେ କୌଣସି ଉପାୟ ଅବଲମ୍ବନ ସମର୍ଥନ କରେ ।

ଦୈନ୍ୟ ନିପୀଡ଼ିତ କୋଟି ଧରା ବାସୀ ପରି
ଆମେ ମଧ୍ୟ ହଙ୍ଗେରୀରେ ସାଧାରଣ ଜନେ
ମାର୍କସ-ବାଦ ପ୍ରଚାରରେ ପାଇଥିଲୁ ଭୁଲ ;
ଦେଖିଥିଲୁ ସ୍ୱପ୍ନ, ଶୀଘ୍ର ଧରାପରେ ସ୍ୱର୍ଗ
ଠିଆ ହେବ, ଶୁଦ୍ଧ ହାସ୍ୟ, ନ୍ୟାଯ୍ୟ ବିଶ୍ୱରର
ଜୀବନ୍ତ ପ୍ରତୀକ ପରି; ଅ-ସମ ସମାଜ
ସମତାର ଅଭିନବ ସାମ୍ୟବସ୍ତ୍ରେ ସାଜି
ଠିଆ ହେବ ଆଖି ଆଗେ; ଶୋଷଣର ଚିହ୍ନ
କେବଳ ରହିବ ଇତିହାସର ପୃଷ୍ଠାରେ ।
ଏହିପରି ଭାବି ଦିନେ ଆମେ ହଙ୍ଗେରୀରେ
ଏକ ହସ୍ତେ ଚଢ଼ି ଦେଇ ବର୍ବର ନାଜୀଙ୍କୁ
ଅନ୍ୟ ହସ୍ତେ ଦେଇଥିଲୁ ବନ୍ଧୁ-ସମ୍ବର୍ଦ୍ଧନା
କ୍ଷିପ୍ରଗାମୀ ସୋଭିଏଟ ବିଜୟୀ ସେନାରେ ।

କିନ୍ତୁ ମାତ୍ର ଅଳ୍ପକାଳେ, ବୁଝିଲୁ ବାନ୍ଧବ;
ଇତିହାସେ ନାହିଁଥିଲା ଘୋରତର କେବେ
କୌଣସି ସାମ୍ରାଜ୍ୟ ମାର୍କସ୍-ବାଦର ସାମ୍ରାଜ୍ୟୁଁ ।
ସେ ସାମ୍ରାଜ୍ୟ-ଅଷ୍ଟପଦୀ-ବିଭତ୍ସ ଲାଙ୍ଗୁଳେ
ଆମ ପ୍ରତ୍ୟେକର ହସ୍ତପଦ ହେଲା ବନ୍ଧା,
ବ୍ୟକ୍ତି ତା ବ୍ୟକ୍ତିତ୍ୱ ତେଜି ହୋଇଲା କେବଳ
ବିରାଟ ଶାସନ-ଯନ୍ତ୍ରେ ସାମାନ୍ୟ କବଜା ।
ଆମେ ସବୁ ଚିନ୍ତାହୀନ, ବାକ୍ୟହୀନ, ମୂଢ଼
ଅବୋଧ ଜନ୍ତୁଙ୍କ ପରି କାମ କରୁଁ, ଖାଉଁ

ପୁଣି କାମ କରୁ, ଘରେ ଧୀରେ ଶୋଇଁ ଫେରି,
ଆମ ପ୍ରତ୍ୟେକର ବେକେ ଆଦୃଶ୍ୟ ଦଉଡ଼ି
କମ୍ୟୁନିଷ୍ଟ ଦଳ ଆଉ ପୋଲିସର ହସ୍ତେ
ଅଛୁ ଏହା, ଜାଣି ଥାଉ ମୂକ ନିର୍ବିକାର
ଆମେ ମାତ୍ର ଶ୍ରମିକ ଓ ସେ ଶ୍ରମିକର ସ୍ୱେଦେ,
ହଙ୍ଗେରୀର ରସ ହେଲା କୌଶଳେ ଶୋଷିତ,
ରୁଷିଆର ବୃଦ୍ଧି ଲାଗି । ଦୈନ୍ୟ-ନିଷ୍ପେଷିତ
ବିଶ୍ୱ ଜନତାର ନାମେ ସ୍ଳୋଗାନ ଶୁଣାଇ
ସାମନ୍ତ ଯୁଗୀୟ ସେହି ଔପନିବେଶୀତା,
ସେହି କ୍ଷୁଦ୍ର ଜାତୀୟତା, ଫୁଟିବାର ଶେଷେ,
ସେହି ଏକ ଦେଶ ଅନ୍ୟ ଦେଶ ଜୟ କରି
ପଶୁବଳେ, କରିବାର ଶୋଷଣ ତାହାକୁ
ଚୂର୍ଣ୍ଣିଭୂତ କରି ଦେଲା ମୂଢ଼ ସ୍ୱପ୍ନ ସବୁ
ଆମର ଧରାରେ ଠିଆ କରାଇବା ସ୍ୱର୍ଗ ।

କୁହୁଳି କୁହୁଳି ଦ୍ୱେଷ ହେବାରୁ ଅସହ୍ୟ
ସହସ୍ର ଶିଖାରେ ତାହା ହେଲା ଉଦ୍‌ଗାରିତ
ଏଇ ସଦ୍ୟ ବିଘଟିତ ବିପ୍ଲବ-ଯଜ୍ଞରେ ।
ହଙ୍ଗେରୀର ଏ ବିପ୍ଲବ ଆଧୁନିକ କାଳେ
ଅନନ୍ୟ;—ନିରସ୍ତ୍ର, ରୁକ୍ଷ, କମ୍ୟୁନିଷ୍ଟ ଦେହେ
ଏହିଁ ପ୍ରଥମ ଗୁରୁ କଠିନ ଆଘାତ ।
କମ୍ୟୁନିଷ୍ଟ ଶାସନର ସକଳ ଦମନ
ସକଳ ଚକ୍ରାନ୍ତ, ସବୁ ହିଂସ୍ରତାରେ ଦେଇ

ଘୋର ଅପମାନ, ଏକ ଅସହାୟ ଜାତି
ବାଳ-ବୃଦ୍ଧ-ନିର୍ବିଶେଷେ ଉଠିଲା ସେଦିନ
ଏକା ବେଳେ, ମନ୍ତ୍ର-ଶକ୍ତି-ଚାଳିତ ପରିରେ
ଅତ୍ୟାଚାରୀ ଶାସକର ପିଟିବାକୁ ମଥା,
ନିଃଷ୍ପେଷିତ ନରତ୍ୱରେ ଦେବାକୁ ମର୍ଯ୍ୟାଦା ।

ଏଇ ବିପ୍ଳବରେ ଏଇ ମାନବିକତାର
ଜୟଧ୍ୱନି ଉଚ୍ଛ୍ୱଳନେ, ନର ମର୍ଯ୍ୟାଦାର
ଏହି ପୁଣ୍ୟ ଯଜ୍ଞେ, ମୋର ବିଦେଶୀ-ଭଗିନୀ,
ଏଇ ସୁଖ-ସମ୍ବାଦ ମୁଁ ଦେଉଛି ତୁମରେ,
ତୁମର ଓ ମୋର ପ୍ରେମ-ଆସ୍ପଦ ଯେ ଦୁହେଁ
ସେମାନେ ଯେ ବୀର ପରି ନିଜକୁ ଆହୂତି
ଦେଇଛନ୍ତି, ସେଇମାନ ପରମ ସାନ୍ତ୍ୱନା
ସେପିଲକୋ, ମାଲଟର, ଦୁଇ ବନ୍ଧୁ ନାମ
ହଙ୍ଗେରୀର ଘରେ ଘରେ ଉଚ୍ଚାରିତ ଆଜ ।
*ଅକ୍ଟୋବର ତେଇଶିର ସନ୍ଧ୍ୟାରେ, ଜନତା
ଚାର ଶୃଙ୍ଗାଟକେ ଥିବା କ୍ରୂର ହତ୍ୟାକାରୀ
ଷ୍ଟାଲିନର ବ୍ରୋଂଜ୍ ମୂର୍ତ୍ତି ଭାଙ୍ଗି, ଓଲଟାଇ
ଫେରିଲା ଯେ କାଳେ, ସୋଭିଏଟ-ନିୟନ୍ତ୍ରିତ

*ଅକ୍ଟୋବର ୨୩ । ୧୯୫୬ରେ ହଂଗେରୀ ବିପ୍ଳବ ପ୍ରଥମ ଆତ୍ମ ପ୍ରକାଶ କରିଥିଲା । ବୁଦାପେସ୍ତ ନଗରୀର ହିରୋ-ସ୍କୋୟାର ବା ଚାର-ଶୃଙ୍ଗାଟକରେ ଷ୍ଟାଲିନର ବିରାଟ ବ୍ରୋଂଜ୍ ପ୍ରତିମୂର୍ତ୍ତିକୁ ଧୂଳିସାତ୍ କରିବା ଏହି ବିପ୍ଳବର ପରମ ପ୍ରତୀକ ।

ସୈନ୍ୟ ଦେଉଁ ଜନତାରେ ଅଗ୍ନି-ସମ୍ବର୍ଦ୍ଧନା,
ପଳାତକ ଜନଗଣେ ଅଟକାଇ ପଛୁ
ଋଷିସ୍ଥାନ୍ ସେପିଲ୍‌କୋ ଦେଲା ଉନ୍ମାଦନା,
କହି ଏହା—"ହଙ୍ଗେରୀର ନର୍ଯ୍ୟାତିତ ଜନେ,
ବୁଦାପେସ୍ତ ସାହସିକ ନାଗରିକ ଯେତେ,
ଫେର ନାହିଁ, ନ ପଳାଅ, ଦୃଷ୍ଟି ନାହିଁ ପଛେ,
ଠିଆ ରହ ଅତ୍ୟାଚାରୀ ଅନ୍ୟାୟ ସମ୍ମୁଖେ ।
ନରର ମର୍ଯ୍ୟାଦା ଲାଗି, ଅନ୍ୟାୟ ବିରୁଦ୍ଧେ
ଯେ ବିଦ୍ରୋହ ଠିଆ ତମେ କରିଛ ଏ ସ୍ଥାନେ
ସମଗ୍ର ବିଶ୍ୱରେ ତାହା ଅନନ୍ୟ ଆଦର୍ଶ ।
ପଳାୟନେ ନ ନୁଆଅଁ ବିପ୍ଳବର ମାନ,
ଯେ ଭୟେ ଶାସକ କରି ରଖିଛୁ ନବାକ
ଭୂମ ସକଳରେ, ତମେ ସେହି ଭୟକୁହିଁ
ପ୍ରଥମରେ କର ହତ୍ୟା । ବକ୍ଷ ଓ ମସ୍ତକ,
ଉଚ୍ଚ କର ଅତ୍ୟାଚାରୀ ହିଂସ୍ର ଅସ୍ତ୍ର ଆଗେ
ଆପଣାକୁ ଅବିଜେୟ ଦୈତ୍ୟ ଶକ୍ତି ପରି
ଦେଖାଅ ଅକୁତୋଭୟେ । ମର ଅକାତରେ—
ତମରି ମୃତ୍ୟୁରେ ଜାଣି ପିଲ୍ଏ ତମର,
ଧରାର ଅୟୁତ ନିଷ୍ପେଷିତ ଜନ ପୁଣି,
ବଞ୍ଚିବେ ନିର୍ଭୟେ ମାନବିକ ମର୍ଯ୍ୟାଦାରେ ।
ମୁହିଁ ଋଷିସ୍ଥାନ ଭାଇ, ତମ ପରି ଆମେ
ଲକ୍ଷ ଲକ୍ଷ ନିର୍ଯ୍ୟାତିତ, ସୋଭିଏଟ ଦେଶେ,
ବାକ୍ୟହୀନ, ଚିନ୍ତାହୀନ, ସ୍ପର୍ଶହୀନ ପ୍ରାଣୀ,
ନେତା ଓ ଦଳର ରଜ୍ଜୁ ଚଳାଏ ଆମରେ ।

ତମର ବିଦ୍ରୋହ ଏହି, ନୁହଇ କେବଳ
ଋଷିଆ-ବିରୋଧ । ମାନବିକ ମାନ ପାଇଁ
ହିଂସ୍ର, କ୍ରୂର, ଅମାନୁଷ, ଏକଛତ୍ରବାଦୀ
ମାର୍କସ୍-ତତ୍ତ୍ୱ-ପ୍ରତିଷ୍ଠିତ କମ୍ୟୁନିଷ୍ଟ ରାଜ
ବିରୋଧରେ ଏ ବିଦ୍ରୋହ । ଉଠାଅ ପତାକା
'ଜୟ ଗଣତନ୍ତ୍ର' କହି, "ବ୍ୟକ୍ତି ସ୍ୱାଧୀନତା"
"ବ୍ୟକ୍ତିର ମର୍ଯ୍ୟାଦା" "ମନୁଷ୍ୟତାର ସମ୍ମାନ"
ଧ୍ୱନି ଉଠେ, ଅତ୍ୟାଗ୍ରହରେ ଦିଅନ୍ତେ ଆହ୍ୱାନ;
ସମଗ୍ର ପୃଥିବୀ ଯେତ ବ୍ୟାପିବ ସେ ବାଣୀ
ଦେଶେ ଦେଶେ, ଏ'ଧରାର ପ୍ରତି କୋଣେ କୋଣେ,
ମାନବର ପ୍ରାଣଭରା ହୃଦରୁ ଉଠିବ
ପ୍ରତିଧ୍ୱନି ତମ ଲାଗି, ପରମ ଉତ୍ସାହ ।
ଆସ ସର୍ବେ, ଫେରଣ୍ଡାଇ, ପ୍ରିୟ ହଙ୍ଗେରୀଏ,
ପ୍ରାଣବଳି ଦେଇ ଏହି ସ୍ୱାଧୀନତା ଯଜ୍ଞେ
ପୋତିବା ବିଜୟକେତୁ, ମାନବିକତାର ।"

ଫେରିଲେ ଜନତା ସତ୍ୟେ । ଅଗ୍ରେ ସେପିଲ୍‌କୋ
ଅଦୂରରେ ସୋଭିଏଟ୍-ହଙ୍ଗେରୀୟ ସେନା,
ଅଗଣିତ ବନ୍ଧୁକର ଅଗ୍ର ଲକ୍ଷ୍ୟ ରଖି
ପ୍ରସ୍ତୁତ ଆଦେଶ ଲାଗି । ପାଉଁ ସେ ସଙ୍କେତ
ବରଷିଲେ ଗୁଳି ଜାଳ । ବୁଦାପେଷ୍ଟ-ପୁର-
ଜନ ସାଥେ ସେପିଲକୋ ହେଲ୍ ଆଦ୍ୟ ବଳି
ହଙ୍ଗେରୀୟ ବିଦ୍ରୋହରେ । ଉନ୍ମତ୍ତ ଜନତା,
ଲଭି ଯାର ସେପିଲକୋ ମୃତ୍ୟୁରୁ ପ୍ରେରଣା,

ପ୍ରାଣରେ ଭ୍ରୂକ୍ଷେପ ନାହିଁ କରି, ବର୍ତ୍ତମାନ
ବେଢ଼ି ଗଲେ ସେନାଦଳେ । ଛଡ଼ାଇ ବନ୍ଧୁକ
ତାଙ୍କ ହାତୁ, କଲେ ତାଙ୍କୁ ହତ୍ୟା ସେହି ସ୍ଥାନେ ।

ଉନ୍ମତ୍ତ ଜନତା ତହୁଁ ଚଳିଲେ ସବେଗେ,
କଲଆମି ଦୁର୍ଗ ଲକ୍ଷ୍ୟ—କଲଆମି ଦୁର୍ଗେ,
ଯହିଁଥିଲେ ବୁଦାପେଷ୍ଟ ନିୟନ୍ତ୍ରଣକାରୀ
ସେନାଦଳ । ଜନଗଣ ପହଁଚ ସେ ସ୍ଥାନେ,
ଆହ୍ୱାନିଲେ ହଙ୍ଗେରୀୟ ସୈନ୍ୟଗଣେ ସବୁ,
ହଙ୍ଗେରୀର ମୁକ୍ତି ପାଇଁ ବିଦ୍ରୋହୀଗଣର
ନେବାକୁ ନେତୃତ୍ୱ, ତେଜି କମ୍ୟୁନିଷ୍ଟି ଦାସ୍ୟ ।

ସମ୍ମୁଖୀନ ହେବା ଲାଗି ଏହି ସଙ୍କଟର
ରୁଷୀୟ ଶାସକେ ସେହି ସ୍ଥଳେ ପଠାଇଲେ,
ବିଶ୍ୱାସ ଭାଜନ କାପତାନ ମାଲଟରେ,
ଦେଇ ସାଥେ କ୍ଷୁଦ୍ର ଏକ ଟାଂକର ବାହିନୀ । *
ମାଲଟର ଗଲେ ତହିଁ । ଦେଖିଲେ ଜନତା—
ବାଳ, ବୃଦ୍ଧ, ନର, ନାରୀ, କର୍ମୀ, ଯାଜକ,
ଲେଖକ, ଓକିଲ, ଶ୍ରମୀ, ବିପଣୀ-ବାଳିକା
ବିଦ୍ରୋହ-ବିକ୍ଷୁବ୍ଧ ହଙ୍ଗେରୀର ସତ୍ୟ 'ଗଣ' ।
ସମଗ୍ର ଜନତା ଥାଇ ଥାଇ ଚିତ୍କାରଇ—
"ମୁକ୍ତ କର ହଙ୍ଗେରୀର" "ପଳାଅ ରୁଷୀଏ"

* ଇଂରାଜି 'ଟାଙ୍କ୍' ।

"ଅତ୍ୟାଗ୍ଭର ଶେଷ ହେଉ" "ହେଉ ପୂର୍ଣ୍ଣ ଜୟ
ମାନବିକ ମର୍ଯ୍ୟାଦାର" "ଗଣତନ୍ତ୍ର ଜୟ" !
ମାଲିଙ୍ଗର ଅବଲୋକି, ଶୁଣି ଏ ସ୍ଲୋଗାନ ;
ପଗ୍ଭରିଲେ ଆପଣାରେ—'ମାରିବି କାହାକୁ ?
ଏଯେ ମୋର ମାତୃ-ମାଟି ଲକ୍ଷ ଦେହ ଧରି
ଅତ୍ୟାଗ୍ଭର ବିରୁଦ୍ଧରେ କରଇ ହୁଙ୍କାର ?
ମାଆକୁ ମାରିବି ମୋର ? ମୋ ନିଜ ଦେଶରେ ?
ତାହା ପୁଣି ନ୍ୟାଯ୍ୟ ତାଙ୍କ ଅଧିକାର ମାଗୁଁ ?"

ଭାବି ଏହା, ତୁରନ୍ତରେ ନିଜ ବାହିନୀରେ
ଦେଲେ ସେ ଆଦେଶ, ଦ୍ରୋହୀ ଜନତାକୁ ଛାଡ଼ି
କାଲିଆନୀ ଦୁର୍ଗ ଲକ୍ଷ୍ୟେ ଆକ୍ରମଣ ପାଇଁ ।
ବିକ୍ଷୋଭିତ ସେ ବିରାଟ ବିଦ୍ରୋହୀ ଜନତା
ବିସ୍ମୟରେ ହେଲା ଶାନ୍ତ ନିର୍ବାକ ବିସ୍ମୟେ
ଦେଖିଲା ଅଶ୍ରୁତପୂର୍ବ ଏ ମହା ଘଟଣା ।
ମାଲିଙ୍ଗର ବାହିନୀର ଅଗ୍ନି-ବରଷଣେ
କାଲିଆନୀ ଦୁର୍ଗ କଲା ଆତ୍ମ-ସମର୍ପଣ,
ଯେତେ ତହିଁ ଥିଲେ ସବୁ ହିଙ୍ଗ୍ରେଜୀୟ ସୈନ୍ୟେ
ବିଦ୍ରୋହୀଙ୍କ ସହ ମିଶି ଉଦାର କଣ୍ଠରେ
ଗାଇଲେ ଜାତୀୟ ଗାନ, କଲେ ମୃତ୍ୟୁ-ଯାତ୍ରା ।

ଭଗିନୀ ମୋ, ଜାଣି ରଖ ମେରଆ ମୋ ନାମ,
ଏହ୍ୱ ମାଲଟର ମୋର ପ୍ରଣୟୀ ଜାଣିବ ।
ଆଗାମୀ ବସନ୍ତ କାଳେ ପରଣୟ ସୂତ୍ରେ
ମାଲଟର ଦୃଢ଼ ହସ୍ତେ ମୋର ନାସ୍ତି-କର
ରଖଥାନ୍ତ ବଶ୍ୱ ଆଗେ,—ଦେଇଥିଲ ହୃଦ
ବହୁ ଆଗୁଁ । ସେହ୍ୱ ଆଶା ଚୂର୍ଣ୍ଣିଭୂତ ଆଜ ।
ଏଇ ଯେ ଲେଖୁଛୁ ପତ୍ର, ମାଲଟର-ଦତ୍ତ
ଅଭଜ୍ଞାନ-ସ୍ୱର୍ଣ୍ଣ-ମୁଦ୍ରା ବାମ-ଅନାମିକେ,
ସବୁ ଛାର ଖାର ସ୍ମୃତି କର ପୁଂଜୀଭୂତ
ମୋ ମାନସ ଚକ୍ଷୁ ଆଗେ, କରେ ବ୍ୟାକୁଳତ ।

ମାଲଟର ବଦ୍ରୋହ ହିଁ ହଙ୍ଗେରୀ-ବପ୍ଳବେ
ଆଣିଲ ତୁରନ୍ତ ସିଦ୍ଧି । କମ୍ୟୁନିଷ୍ଟ ଚକ୍ର
ବାଧ ହେଲ ମାନବାକୁ ଜନତାର ଦାବୀ ।
ନୂତନ ଶାସନ ଏକ ଗଢ଼ା ହେଲ, ଯହିଁ
ମାଲଟର ହେଲେ ନଜେ ସମର-ସଚବ ।
ମାଲଟର ଆହ୍ୱାନରେ ଆକାଶ-ବାଣୀରେ
ହଙ୍ଗେରୀର ଚତୁର୍ଦ୍ଦିଗେ ବଦ୍ରୋହାଗ୍ନି ଧୀରେ
ନର୍ବାପିତ ହେଲ ଆପେ । ଜନତାର ପ୍ରାଣେ
ଆଶାର ସଞ୍ଚର ହେଲ । ରବି ଅବସାନେ
ଉଷାର ଉଦୟ ପର ଲଗିଲ ଆମକୁ ।

କିନ୍ତୁ ସପ୍ତାହକ ପରେ ରୁଷୀୟ ସୈନିକ
ହଙ୍ଗେରୀରୁ କେଉଁ କ୍ରମେ ଯିବେ ବିଦାୟ,—
ଏହି ଆଲୋଚନା ପାଇଁ ରୁଷ-ଦୂତାବାସେ
ଡାକି ନେଇ ସହକର୍ମୀ ସହ ମାଲେଟରେ
ଧୂର୍ତ୍ତ, ଧର୍ମହୀନ, କ୍ରୂର, କପଟ-ସର୍ବସ୍ୱ,
କମ୍ୟୁନିଷ୍ଟ କଲେ ତାଙ୍କୁ ବନ୍ଦୀ ସେହିଠାରେ ।
ପୁଣି ସେହି କାଳେ ରୁଷିଆରୁ ନବାଗତ
ଅଗଣିତ ଟାଂକ-ସେନା କଲେ ଆକ୍ରମଣ
ଅସ୍ତ୍ରହୀନ ଅସହାୟ ବୁଦା ଆଉ ପେଷ୍ଟେ ।
ଅସହାୟ ମୁଖ୍ୟମନ୍ତ୍ରୀ ଇମ୍ରେ ନେଗୀ * ଡାକେ
ରେଡ଼ିଓରେ "ମାଲେଟର, ବୀର ମାଲେଟର,
"କାହିଁ ଅଛ, ହଙ୍ଗେରୀରେ କର ହେ ଉଦ୍ଧାର !
ଏ ସଙ୍କଟେ ମାତୃଭୂମି ରକ୍ଷା କର ଆସି ।"
ବାରମ୍ବାର ଡାକଦେଲେ ଜନପ୍ରିୟ ନେତା
ଇମ୍ରେ ନେଗୀ ଅସହାୟ ଶାସକ ଆମର—
ମାଲେଟର୍ କାହିଁ କିନ୍ତୁ ? କାହୁଁ ସେ ଶୁଣିବେ ?
କିଏ ଆଉ ନିଷ୍ପେଷିତ ହଙ୍ଗେରୀରେ ଦେବ
ନେତୃତ୍ୱ, କରିବ ତାକୁ ମୁକ୍ତ, ସଚେତନ ?

ସେହି ହେଲା ହଙ୍ଗେରୀୟ ବିପ୍ଳବର ଶେଷ ।
କମ୍ୟୁନିଷ୍ଟି ଅମାନୁଷ ପ୍ରତିହିଂସା ଭୟେ,

---

* ଦେଶପ୍ରେମୀ ଇମ୍ରେ ନେଗୀଙ୍କୁ ପରେ ରୁଷୀୟାନମାନେ ବର୍ବର ଭାବରେ ହତ୍ୟା କରିଛନ୍ତି ।

ସହସ୍ର ସହସ୍ର ହୋଇ, ନାନା ପଥ ଦେଇ,
ନାନା କ୍ଳେଶ, ରୋଗ, କ୍ଳାନ୍ତି, କ୍ଷୁଧା, ପିପାସାରେ
ନାହିଁ ଦବି, ଏ ସବୁରୁ ଅଧିକ ଭୀଷଣ
କମ୍ୟୁନିଷ୍ଟ ହିଂସା ଭୟରୁ, ପଳାତକ ଆଜି
ଦଳେ ଦଳେ ହଙ୍ଗେରୀୟରୁ । ତାଙ୍କ ମଧ୍ୟେ ଜଣେ
ମୁହିଁ ନିଜେ, ହେ ବାନ୍ଧବୀ, ନାନା କଷ୍ଟ ସହି,
ଏକ ବର୍ଷ ନେଇଛି ମୁଁ ଶେଷରେ ଆଶ୍ରୟ,
ଗଣତନ୍ତ୍ର ଜନ୍ମଭୂମି ଉଦାର ଲଣ୍ଡନେ ।

ସେପିଲକୋ ନାହିଁ ଆଉ । ମାଲ୍ଟର ମଧ୍ୟ,
ଜୀବନରେ ଫେରିବାର ଆଶା ନାହିଁ, ଯେଣୁ
କମ୍ୟୁନିଷ୍ଟ ଶାସନର ପାଶବ-ତନ୍ତ୍ରରେ
ସ୍ଥାନ ନାହିଁ ମାନବିକ ମାନ ଓ ନ୍ୟାୟର ।
ଇଣ୍ଡିଆରୁ ବାଧ୍ୟ ହୋଇ ଫେରି ସେପିଲକୋ,
ବୁଦାପେଷ୍ଟ ପ୍ରାଚ୍ୟ-ବିଦ୍ୟାପୀଠେ ଯୋଗ ଦେଇ
କରୁଥିଲେ ଭାରତୀୟ ବିଦ୍ୟା ଅଧ୍ୟୟନ ।
କେଉଁ ଏକ କ୍ଳବେ ହୁଏ ମାଲ୍ଟର ସାଥେ
ଆଦ୍ୟ ଦେଖା, ପରିଚୟ । ଥାଉଁ ଦୁହିଁକର
ଚିତ୍ତର ଉଦାର ସାମ୍ୟ, ହେଲେହେଁ ଜଣକ
ସୈନିକ, ଆରେକ ପୁଣି ସଂସ୍କୃତିର ସ୍ଥୁସ,
ଦୁହିଁକର ହେଲା କ୍ରମେ ଗଭୀର ବନ୍ଧୁତା ।
ସେହିକ୍ରମେ ହେ ଭଗିନୀ, ତୁମର ସମସ୍ତ
ଅନୁପମ ଗୁଣାବଳି ବିଦିତ ଆମକୁ,

ଅଦେଖାରେ ମଧ୍ୟ ତମେ ଆମର ଏକାନ୍ତ
ଆପଣାର ପ୍ରିୟଜନ । ମାଲଞ୍ଚର ଜନେ,
ସେମିଲକୋ ପ୍ରଭାବରେ ଭାରତ-ସଂସ୍କୃତି
ଅ:ସ୍ତେ ଆସ୍ତେ କରୁଥିଲେ, ଚର୍ଚ୍ଚା, ଅଧ୍ୟୟନ ।
ତାଙ୍କ ଦୂର କୁଟୁମ୍ବିକ—ମନେ ନାହିଁ ନାମ—
ସୁବିଖ୍ୟାତ ଭାରତୀୟ କଳାବିଦ୍, ଯେହୁ
ଥାଆନ୍ତି ଦିଲ୍ଲୀରେ ଏବେ (ଜାଣକ ତାହାଙ୍କୁ ?)
ତାଙ୍କ ପଥ ଅନୁସରି ମାଲଞ୍ଚର ମଧ୍ୟ,
ଭାବୁଥିଲେ ଯିବେ ଦିନେ ପୁରାଣ ଭାରତେ,
ଦେଖିବେ ତା' ହିମାଳୟ ତୁଷାର ମୁକୁଟ,
ପବିତ୍ର ଜାହ୍ନବୀ ନଦୀ, ପ୍ରେମିକ-ଲୋଚକ—
ପୁଞ୍ଜୀଭୂତ ସ୍ମୃତି ସମ ଶୁଭ୍ର, ଶୁଦ୍ଧ ତାଜ,
ମାନବିକ କଳ୍ପନାର ଅପୂର୍ବ ବିକାଶ
କୋଣାର୍କ, ପବିତ୍ର ବାରାଣସୀ ନଦୀ ତଟେ
ନିଷ୍ଠାବାନ ଦ୍ୱିଜାଧରେ ଶୁଣିଥାନ୍ତେ ପୁଣି
ଦେବବାଣୀ ସଂସ୍କୃତର ମଧୁ ଉଚ୍ଚାରଣ,
(ଅପୂର୍ବ ଶୁଣିଛୁ ଯାହା, ସମଗ୍ର ବିଶ୍ୱରେ) ।
ସେସବୁ କଳ୍ପନା, ପ୍ରିୟ ଭଗିନୀ, ଯାଇଛୁ
ଉଭୟର ପ୍ରିୟଜନ ବିରହରେ ଆଜି,
ପ୍ରଭାତ କାକର ପରି ସୂର୍ଯ୍ୟ କରେ ଉଡ଼ି ।
ଆମେ ଦୁଇ ନାରୀପ୍ରାଣ ବିରାଟ ଧରାରେ
ପରିତ୍ୟକ୍ତ ବଂଚିବାକୁ ଆପଣା ଜୀବନ ।
ମରଣର କିଛିକାଳ ପୂର୍ବରୁ ଦୁଇ ବନ୍ଧୁ
ପରସ୍ପରେ କରିଥିଲେ ଏଇ ଅନୁରୋଧ,

କିନ୍ତୁ ଯଦି ଘଟେ ତାର ଅନ୍ୟ ଯେହ୍ନେ ତାର
ପ୍ରିୟାରେ ସଂବାଦ ଖାଲି ଦେବ ପଠିଆଇ,
ପ୍ରିୟଜନ ବରିଅଛି ମରଣ, ଯେପରି
ପ୍ରିୟା କାର ନାହିଁ ହେବ ଲଜ୍ଜିତ କିଞ୍ଚିତେ ।

ହେ ଭଗିନୀ, ଦୁଇ ବନ୍ଧୁ ଦୁଇ ବୀର ସମ
ଆମଠାରୁ ହୋଇଗଲେ ଦୂରେ ଅନ୍ତରିତ,
ତୁମକୁ ପଠାଇବାର ସଂବାଦ ଗୋ ତେଣୁ
ପଡ଼ିଲା ତମର ଏଇ ଦୂର ବିଦେଶିନୀ
ଭଗିନୀର ଦାୟିତ୍ୱରେ । ସର୍ବ ଗୁଣବତୀ
ତମେ ଗୋ, ଶୁଣିଛି ମୁହିଁ, ଜୀବନରେ କେବେ
ତୁମକୁ ହି ଶ୍ରୀବଦନ ଦେଖି ଯଦି ପାରେ
ସେହି ହେବ ମୋର ଏହି ଜନ୍ମ ସାର୍ଥକତା ।

ସର୍ଗ ଅନ୍ତ ହେଲାଣି ଏ ଆଦ୍ୟ ପର୍ବ ମୋର,
ବିଦାୟ ମୁଁ ନଏଁ ତେବେ । ପଳାତକ ମୁହିଁ,
ଦେଶହୀନ, ଗୃହହୀନ, ବନ୍ଧୁଜନହୀନ;
ବିରାଟ ଧରଣୀ ପୃଷ୍ଠେ ଏକାନ୍ତ ଏକାକୀ
ଆଜି ମୁହିଁ । ଏକମାତ୍ର ସାନ୍ତ୍ୱନା ଭଗିନୀ
ମୋ ଦେଶର ଲକ୍ଷ ଲକ୍ଷ ନର ନାରୀ ମଧ୍ୟ

ସମଦଶାଗ୍ରସ୍ତ । ସମ ଦୁଃଖ, ଦୁଃଖ ନୁହେଁ;
ଦୁଃସମ୍ବାଦ ପ୍ରେରି, ତବ ଶାନ୍ତ ସୁଖମୟ
ସଂସାରେ ଆଣିଲି ଯାହା ବିକ୍ଷୋଭ, ଭଗିନୀ,
ସେଥିପାଇଁ ଘୋର ଦୁଃଖ । ଅନ୍ତରର କ୍ଷମା
ଭିକ୍ଷା କରି ତମଠାରୁ ନିଏଁ ମୁଁ ବିଦାୟ ।"

---

# ଦଶମ ସର୍ଗ

ସପ୍ତାହେକ ଧରି ମିଶ୍ରା ପ୍ରିୟ-ମୃତ୍ୟୁ-ଦୁଃଖେ
ଅଭିଭୂତ ହୋଇ ରହେ, ବନ୍ୟାଜଳ ସ୍ରୋତେ
ଅଭିଭୂତ ହୁଏ ଯେହ୍ନେ ଶ୍ରାବଣ କେଦାରେ
ତରୁଣ ଧାନ୍ୟର ତନୁ । ନିର୍ବାକ, ସରୁଦ୍ଧ
ଗଭୀର ସେ ଦୁଃଖ, ନିଜ ଅନ୍ତରରେ ଗୁପି
ନିଜର ଚମ୍ପାର ‘ରଜେ୍ୟ·ନିବେସିତ ଏକା,
ଚଳାଚଳ ହେଲା ସନ୍ଧ୍ୟା ଅମେଘ ଗଗନେ
ଗଣ-ଭ୍ରଷ୍ଟ ନୀଡ଼ାନ୍ୱେଷୀ ପକ୍ଷୀ ଏକ ସମ ।
ସ୍ୱାମୀ ମହାନନ୍ଦ ଆଉ ମିଶି ବାଟସନ୍,
ପୁଣି ମାଲକମ୍, ନିଜ ନିଜ କକ୍ଷେ ବସି
ଗଭୀର ଅସ୍ୱସ୍ତିକର ସେହ୍ୱ ପରିବେଶେ
ଦେଖୁଥାନ୍ତି ଖାଲି ନୀରବରେ ମିଶ୍ରା-ଗତି ।
ସାହସ କାହାର ନାହିଁ ଥିଲା ପଚ୍ଚରିବେ
ପଦେ ପ୍ରଶ୍ନ, ଅବା ଦେବେ ସାନ୍ତ୍ୱନା ଟିକିଏ,
ବାଲୁକା ଉତ୍ତପ୍ତ ହେଲେ, ଉପୁଜାଇ ଥାଏ
ଯେପରି ପରମ ଭୟ ପଥିକ ଚରଣେ ।

ସପ୍ତାହକ ପରେ ଦିନେ ପ୍ରତ୍ୟୁଷରୁ ସ୍ନାନ
ସାରି, ପ୍ରଲମ୍ବିତ କରି ଉନ୍ମୁକ୍ତ କୁନ୍ତଳ
ପୃଷ୍ଠେ ତାର, ପରିଧାପି ଶୁଭ୍ର ବସ୍ତ୍ର ଖାଲି,
ଶୁଚିତାର ସୁଚହିତ ପ୍ରତିମା ପରିଏ,

ଡାକନେଲ ମହାନନ୍ଦେ, ପୁଣି ମାଲକମେ
ନିଜ କକ୍ଷେ, ବସାଇଲ ଆସନେ ସେମାନେ
ତା ପରେ ସନ୍ନ୍ୟାସୀ ମହାନନ୍ଦଙ୍କ ସମ୍ମୁଖେ
ନତଜାନୁ ହୋଇ କହେ ବାଣୀ ଗଦ ଗଦ—
"କକା, ତମେ ଆଜ ମୋର ପିତା ଓ ଜନନୀ
ଦ୍ୱିତୀୟରେ ତତ୍ତ୍ୱଦ୍ରଷ୍ଟା ଯୋଗୀ, ଋଷି ରୂପେ,
ଲୋକ-ଗୁରୁ ତମେ ଆଜ । ତମେ ଓ ମିସି-ମା
ଦୁହେଁ ବଢ଼ାଇଛ ମତେ ରାଜପୁତ୍ରୀ ସମ,
ଜୀବନରେ ଦୁଃଖ କସ ଜାଣିବାକୁ ମତେ
ଦେଇନାହଁ ଥିଲ ଏବ ଯାଏଁ, ଏବେ ଏଇ
ପ୍ରଥମ ଜୀବନେ ହେଲା ଦୁଃଖ ପରିଚୟ ।
ଦେ ,ଶ ଓ ବିଦେଶେ ମତେ ଶ୍ରେଷ୍ଠ ବିଦ୍ୟାପୀଠେ
ପଢ଼ାଇ, କରିଛ ମୋର ବୁଦ୍ଧି ଓ ମାନସେ
ସୁନ୍ଦର, ସଂସ୍କୃତ ବନ୍ତ, ଉଦାର, ମହତ ।
ତୁମର ପରଶେ ପୁଣି, କକା ମୁଁ ପାଇଛି
ଜୀବନର ପୂର୍ଣ୍ଣ ତତ୍ତ୍ୱ । ପ୍ରାଚ୍ୟ ଓ ପ୍ରତୀଚ୍ୟ
ଦୁଇ ସଂସ୍କୃତିର ସାର ସୁନ୍ଦର ନିର୍ଯ୍ୟାସ
ମଧ୍ୟ ସାମଂଜସ୍ୟ କରି ଏକୀଭୂତ ପ୍ରାଣେ,
ଭୋଗିବାକୁ ଥିଲା ମୋର ଅନ୍ତର ବାସନା
ଧରିର ଜୀବନଟିକ ।କକା, ସେ ବାସନା
ଅନ୍ତରୁ ଦେଲି ମୁଁ ମୋଛି କଲି ଅନୁଭବ,
କକା ତମେ, ଯେ ଅଦୃଶ୍ୟ ଅଜ୍ଞେୟ ଶକ୍ତିର
ସର୍ବଦା ପ୍ରଚୁର କର, ଯେଉଁ ମହା ରଜ୍ଜୁ
ବ୍ୟୋମେ କୋଟି କୋଟି ସୌର ପରିବାର ସହ

ଆମ ପ୍ରତ୍ୟେକର କ୍ଷୁଦ୍ର ହେୟ ଜୀବନରେ
କରଇ ସ୍ଥଳିତ, ରହି ଅଦୃଶ୍ୟ ପଛରେ,
ଦେଇ, କୌତୁକରେ, ଆମ ପ୍ରାଣେ ଅଦମିକା,
ଦେଖିବାର ପାଇଁ ମଜା;—ସେହି ସେ ଶକତି
ଅନୁଭବ କଲି ମୁହିଁ, ଯେହ୍ନେ କକା ମୋର
ଜୀବନର ସ୍ରୋତ ଆମେ ଦେଲେ ବଦଳାଇ
ନୃତ୍ୟ, ଗୀତ, ଛନ୍ଦ, ବାଦ୍ୟ ବିଦ୍ୟା ବିଳାସର
ଜୀବନ ମୋପାଇଁ ନୁହେଁ, କରେଁ ଅନୁଭବ,
ଦାଂପତ୍ୟର ଦୈନନ୍ଦିନ କ୍ଷୁଦ୍ର ଶାନ୍ତିମୟ
ନୀଡ଼ ମୋ ଜଗତ ନୁହେଁ । ମୋ ଜୀବନ କକା,
ବର୍ତ୍ତମାନଠାରୁ ହେବ ଝଡ଼ ବତାସର
ବିଦ୍ୟୁତ ବ୍ୟାକୁଳ ଘୋର ପ୍ରାବୃଟ ରାତିର
ପ୍ରଳୟ ବର୍ଷଣ, ଅବା ସେ ଗ୍ରୀଷ୍ମ ପ୍ରଭାତେ,
ସମୁଚ୍ଛ୍ୱଳ ସୌରକର ତଳେ ରାଜ୍ୟ-ଧ୍ୱଂସି
ଦୁଇକୂଳ ଜଳପ୍ଲାବନୀ, ବନ୍ୟା ଭଇରବୀ ।
ଆଜଠାରୁ କକା ମୋର, ଜୀବନ ଅଶାନ୍ତ
ସଂଗ୍ରାମ-ବିକ୍ଷୁବ୍‌ଧ, ରୁକ୍ଷ, ଅଗ୍ନିକ୍ରୀଡ଼ାମୟ ।"

କହି ଏତା ବିଶ୍ୱମିତା ମୁଖ ନତ କରି
ଚାଲିଗଲ୍ ଦ୍ରୁତବେଗେ, ଦୁଇ ନୟନରେ
ଦୁଇ ତାର ସ୍ୱର୍ଣ୍ଣ ପଦ୍ମ କୋରକ ପରିଏ
କୋମଳ ପାପୁଲି ଦେଇ ଲୁଚାଇ ସରମେ,

ସଦ୍ୟ ସ୍ନାତ ସ୍ୱରୁ କୃଷ୍ଣ କୁଞ୍ଚିତ ତା କେଶ
ଗୋଟିଏ ପ୍ରଦୀପ ତଳପାଶୁ ଅନ୍ଧକାର
ବେଢ଼ି ବଢ଼ାଇଲା ପରି ଦୀପର ମହିମା,
ବଢ଼ାଇଲେ ତା ମୁଖର ନୂତନ ସୁଷମା,
ମେଘ-ପରିବେଶ ଯେସନେ ଚନ୍ଦ୍ର ମଣ୍ଡଳର ।

ସ୍ୱାମୀ ମହାନନ୍ଦ ମିଶା ଦୁଇକର, ତାର
ନୟନୁ ଓଟାରି ନେଇ, ଟେକ ନେଇ ତଳୁ
ପାଶେ ବସାଇଲେ ଯତ୍ନେ, ପିଠିରେ, ଓଠରେ
ହାତମାରି, ଋଷିପ୍ରାଣ-କଲ୍ୟାଣ-ପିହିତ,
ସ୍ନିଗ୍ଧ ସ୍ନେହ-ଦର-ଦର ବାଣୀରେ କହିଲେ—
"କାହିଁକି ବିଳାପ ମାଗୋ ? କପାଁ ଏତେ ଦୁଃଖ ?
ଆମେ ସବୁ ଅଛୁ ପରା । ତୋ ପ୍ରାଣର ଦୁଃଖ,
ଆମେ ସବୁ ବାଣ୍ଟିନେବା ପାଇଁ ଅଛୁ ପରା,
ଅଛନ୍ତି ପୁଣି ମା ତୋର ପିତା-ପ୍ରତିଷ୍ଠିତ
କଲେଜର ବୃଦ୍ଧ ଯୁବା ସହସ୍ର ସହସ୍ର,
ଅଛି ପୁଣି ସାରା ଜାତି, ଯା'ର ଅନ୍ତସ୍ତଳେ
ତୋ ପିତା-ମାତାର ନାମ ଏବେ ବି ପୂଜିତ ।
ତୁ ପୁଣି ପ୍ରକୃତିଦତ୍ତ ଅଖିଳ ଗୁଣରେ
ବିମଣ୍ଡିତା । ଆମେ' ତୋର ଅଭିଭାବକଏ,
ଏଇ କେତେଜଣ ଆଶା କରି ବସିଛୁ ମା,
ଏ ଦେଶରେ ତୁଇ ପୁଣି ତୋ ପିତା-ମାତାର

ସ୍ଥାନ ତୁ ପୂରଣ କର ଜୀବନକୁ ତୋର
ଦେବୁ ପୂର୍ଣ୍ଣ କୃତାର୍ଥତା, ପ୍ରତିବନ୍ଧ ତୋର
ସଂସାର-ନିୟମେ ଗୁଢ଼, ପୁଣି ତୋ ସମୟେ
ନେବୁ ପୃଥିବୀରୁ ବନେ ବିଦାୟ ସହାସ୍ୟେ ।
କାନ୍ଦନା ଧନଟି ମୋର, ସନ୍ନ୍ୟାସୀ-ଜୀବନେ
ତୁଇ ମୋର ଏକମାତ୍ର ଡୋର ଏ ସଂସାରେ,
କେବଳ ତୋହର ଲାଗି ହିମାଳୟ ତେଜି
ଆସିଛି ମୁଁ ବାରମ୍ବାର ନିମ୍ନରେ ଓହ୍ଲାଇ ।
ତୋ ଆଖିର ଲୁହ ତୋହଠାରୁ ମୋତେ, ଧନ
ଅଧିକ ଦାହକ । ତୁନ ହୁଅରେ ସଙ୍ଗୀଲ ,
କଥା କହ ପ୍ରାଣ ଖୋଲି । କଷ୍ଟ ତ ଘଟିନି ।
କାହିଁକି ଆଶଂକା ତୋର ? କପାଇଁ ଜୀବନ
ହେବ ତୋର ଆଜଠାରୁ ରୁକ୍ଷ, ଦୁଃଖମୟ ?
ତୁନ ହୁଅ, କହ କଥା ।”

ଆଖି ପୋଛି ଦେଇ,
ତୁନ ହୋଇ ବଶ୍ୱମିତା, ବୃଦ୍ଧ ତରୁକାଣ୍ଡେ
ନମନୀୟ ଲତା ପରି ନଇଁପଡ଼ି ଲୋଳେ
କକାର ଗୈରିକ ବସ୍ତ୍ର ପ୍ରସାରିତ ସ୍କନ୍ଧେ
ତା ମନୋଜ୍ଞ, ଦକ୍ଷ ହସ୍ତ ଲମ୍ବାଇ ଲଳାଟେ
ପୁଣି ତା କକାର ଆର ସ୍କନ୍ଧେ ସ୍ନେହଭରେ
କହେ ଧୀର ଗୁଞ୍ଜନେ ସେ—

“ଶୁଣ ପ୍ରିୟ କକା,
ଗଉରବମୟ ମୋର ପିତାମାତାଙ୍କର
ପଦଚିହ୍ନ ଅନୁସରିବାର ପାଇଁ ସିନା

ମୋର ଏ ପ୍ରତିଜ୍ଞା, ମତେ ଅନ୍ୟ ନାହିଁ ବୁଝ ।
ତାଙ୍କର ଆଦର୍ଶ ପ୍ରାଣେ ରଖିବି ବଞ୍ଚାଇ
ଅକ୍ଷୁଣ୍ଣ, ଚନ୍ଦ୍ରାରେ କର୍ମେ, ଏଇ ଅଭିପ୍ରାୟେ,
ବିଧାତା ଯେପରି ମତେ କରିଲେ ସଙ୍କେତ,
ଅନ୍ୟ ପନ୍ଥା ରୋଧ କରି । ସେପିଲକ ସାଥେ
ସେ ପନ୍ଥା ମୋ ମାନସକୁ ଯାଇଅଛି ଲଭି ।
ବର୍ତ୍ତମାନ ଅବଶିଷ୍ଟ ସାମାନ୍ୟ ଜୀବନ
କେବଳ ହିଁ ଦେଶ-ଜାତି-ମାନବ-ସେବାରେ
ନିୟୋଜିତ ହେବ କେହ୍ନେ ଦିଅ ଅଶୀର୍ବାଦ ।
କିଛି ମୋର ଦୁଃଖ ନାହିଁ । ଚିନ୍ତା ନାହିଁ କର
କକା ମୋର ଲାଗି ତମେ । କରୁଣା, କମଳ
ଜନକ-ଜନନୀ ଯାର, ତମେ ଯାର କକା,
ସେପିଲକ ଯା ପ୍ରଣୟୀ, ବନ୍ଧୁ ମାଲକମ୍,
ମିସ୍‌ମା ଯାହାର ଧାତ୍ରୀ, ଏ ଜଗତେ ତାର
କିବା ଦୁଃଖ ଥାଇପାରେ ? କିନ୍ତୁ ଏ ଭାଗ୍ୟର
ଯୋଗ୍ୟ ପରିଣତି ନୁହେଁ ଜୀବଗ୍ରାମ ପରି
ଆଉ ଏକଜଣ ସାଥେ ଦ୍ୱନ୍ଦ୍ୱ ସମାସରେ
ନିଜକୁ ଅଚ୍ଛେଦ୍ୟ ରୂପେ କରି ଶୃଙ୍ଖଳିତ
କ୍ଷୁଦ୍ର, ସୀମାବଦ୍ଧ, ସ୍ୱାର୍ଥ-ନଡ଼ା-ତୃଣେ ଗଢ଼ା
ଗୋଟିଏ ଏକ ନୀଡ଼େ ଯାପିବାର ଜୀବନଟା
ଦାଂପତ୍ୟର ଛଦ୍ମ ନାମେ । ଜନକ-ଜନନୀ
କାହିଁକି ମୋ ନାମ ଦେଇଥିଲେ ବିଶ୍ୱମିତ୍ରା ?
ଏ ପର୍ଯ୍ୟନ୍ତ ତାହିଁ ସେହି ନାମ ସ୍ୱାର୍ଥକତା
ମୋର ଏହି ଅପଦାର୍ଥ ଜୀବନରେ, କକା ?

ମତେ ଦିଅ ମୁକ୍ତ କରି, ସମଗ୍ର ବିଶ୍ୱରେ
ମିଶାଏ ମୋ କ୍ଷୁଦ୍ର ସତ୍ତା, ଜଣକ ପାଇଁରେ
ନ ବଂଚି, ବଂଚିବି ମୁହିଁ ଧରାର ନିଖିଳ
ମାନବ କଲ୍ୟାଣ ପାଇଁ, ଯେ ମହା ଜୀବନ
ବଞ୍ଚିଥିଲେ ବୁଦ୍ଧ, ଖ୍ରୀଷ୍ଟ, ପୁଣି ଆମ ଆଗେ
ବାପୁଜୀ, ପରମ-ପୂଜ୍ୟ ଧରା ଜନନୀର ।
ଯେ ଜୀବନ ପୁଣି ତାଙ୍କ କ୍ଷୁଦ୍ର ଶକ୍ତିମତେ,
ମୋ ପିତା, ଜନନୀ ବଂଚିବାକୁ କରିଥିଲେ,
ଚେଷ୍ଟା ନିଜ ଜୀବନରେ ; ସେହି ଜୀବନର
ଦୁଃଖାର୍ତ୍ତି ଐଶ୍ୱର୍ଯ୍ୟ, ସ୍ୱାଦ, ଚାହୁଁଛି ମୁଁ, କଳା ।'

ଏହା କହି ମହାନନ୍ଦ ପାଶ ଛାଡ଼ି ଦେଇ
କେଶଜାଲ ପୃଷ୍ଠଦେଶେ କରିଣ ସଂବୃତ,
ପ୍ରାଚୀତଟେ ମେଘାବୃତ ଉଷା ସମ, ଅବା
ଶ୍ୟାମଦଳାବୃତ ସ୍ଫୁଟି କେତକୀର ପରି,
ବିଶ୍ୱମିତ୍ରା ହୋଇ ଠିଆ, ଘୁଞ୍ଚିଯାଇ, ଟିକେ
ମାଲକମ ପାଶେ ଯାଇ, କୋମଳ ସୋହାଗେ
ଦକ୍ଷ ତାର କର ଧରି, କହଇ ସୁନ୍ଦରୀ —
"ପ୍ରିୟ ମାଲକମ ମୋର, ଆଶାକରେ ଭାଇ,
ମୋ କର୍ମରେ ବୁଝିବନି ମନ୍ଦ ରଙ୍ଗ ଦେଇ ।
ତମ ପ୍ରତି କେଉଁଦିନ ଛନ୍ଦୁ ବ୍ୟବହାର

ଦେଖାଇଲ ପ୍ରିୟ ବନ୍ଧୁ ! ପ୍ରିୟ ଜନ ହୋଇ
ତମେ ଏ ଅନ୍ତରେ ରହିଥିବ ଚିରଦିନ ।
ବିବାହିତ ଜୀବନର କଳ୍ପିତ ମାଧୁର୍ଯ୍ୟ
ଦୈନନ୍ଦିନ ସାଧନାରେ ସଞ୍ଚି ଭୋଗିବାର,
ଅଜସ୍ର, ଦୁଷ୍କର ଚେଷ୍ଟା, ନୁହେଁ ପନ୍ଥା ମୋର;
ବହୁ ଭାବ ସ୍ଥିର କଲି; ତେଣୁ ବନ୍ଧୁ ମୋର
ନ ଭାବିବ କିଛି ମନେ । କିନ୍ତୁ ତୁମେ ଯଦି
ପ୍ରକୃତରେ ମତେ କେବେ ପାଇଥାଅ ଭଲ,
ନବଜୀବନର ଏଇ ନୂତନ ପନ୍ଥାରେ
ହୋଇ କି ନପାର ତମେ ଆଦ୍ୟ ସହକର୍ମୀ ?
ହିଂସାର ଅଦ୍ଭୁତ ନାଗ ୟୁରୋପୁ ବାହାରି
ସମଗ୍ର ବିଶ୍ୱରେ ଆଜ ଯାଉଛି କରିବ
ଦଂଶନ, ସେ ବିଷେ ଧରା ନିଖିଳ ମାନବ
ଢାଳି ହୋଇ ଛଟପଟେ ଛାଡ଼ିବ ଜୀବନ ।
ସମ୍ମୁଖୀନ ଧରା ଆଜ ଘୋର ସଙ୍କଟରେ
ବିଶେଷତଃ ଋଷ ଆମେରିକା ଓ ଇଉରୋପେ ।
ଏକାଳେ ଖୋଜିବା ନିଜ ଶ୍ରେଷ୍ଠ ତୁଚ୍ଛ ସୁଖ
ବିବାହରେ, ବାୟୁ ପକ୍ଷୀ ପରି ବସା ପାତି,
ସୁନ୍ଦର ଦିଶିବ ବନ୍ଧୁ, ଅବା କି ବିବେକ
ଆମର ରହିବ ଶାନ୍ତ ? ନନ୍ଦି ସେପିଲକ,
ହଙ୍ଗେରି ମାଟିରେ ପ୍ରାଣ ବଳି ଦେଇଗଲା
ନରଭିର ଜୟ ପାଇଁ, ସତ୍ୟ, ନ୍ୟାୟ ପାଇଁ
ମାନବିକ ମର୍ଯ୍ୟାଦାର ବେଦଗାନ ଗାଇ,
ଜୀବନେ ଦେଖାଇ ଦେଇ ଖାଣ୍ଟି ମନୁଷ୍ୟର .

ନାହିଁ କେନ୍ଦ୍ରେ ଦେଶ, କାଳ, ଗୋଷ୍ଠୀ, ଭୌଗୋଳିକ
କ୍ଷୁଦ୍ର ସୀମା ପ୍ରତି ମୋହ । ଚାଲ ମାଲକମ
ଆମେ ଯିବା ମାନବର ସେ ଉଦାର ପଥେ ।
ବିଜ୍ଞାନ କଲାଣି ଯାହା ବିରାଟ ଧରାରେ
ଗୋଟିଏ କୁଟୁମ୍ବ ପରି,—ସେ କେବଳ ବାହ୍ୟ ।
ମନୁଷ୍ୟର ନବଯୁଗ ଆରମ୍ଭିବ ଯେବେ
ହିଂସା, କୂଟ ମତ, ଦଳ, ଗୋଷ୍ଠୀ, ଧର୍ମ—ଭାଷା
ଏ ସବୁ ଉପରେ ଉଠି, ସମଗ୍ର ମାନବ—
ପ୍ରାଣେ ପ୍ରତିଷ୍ଠିତ ହେବ, ବିଶ୍ୱ—କୁଟୁମ୍ବିତା,
ଏକ ଦେଶ ଏ ପୃଥିବୀ, ଏକ ବିଶ୍ୱ-ପିତା,
ସମଗ୍ର ମାନବ-ଜାତି ଭାଇ ଭଉଣୀଏ ।
ଚାଲିଯିବା ମାଲକମ ହିଂସ୍ର ଯୁରୋପରେ,
ବୁଦାପେଷ୍ଟେ, ପ୍ରାହା ଆଉ ମସ୍କାଉ, ଲଣ୍ଡନେ,
ବୁଦ୍ଧ-ଗାନ୍ଧି ମହାବାଣୀ, ଅହିଂସାର ବାଣୀ,
—ଭାରତୀୟ ସଂସ୍କୃତିର ମହା ଆବିଷ୍କାର,
ମାନବିକ ସଭ୍ୟତାରେ,—ସେହି ବାଣୀ ବନ୍ଧୁ
କରିବା ପ୍ରଚାର, ଜୀବନର ସବୁ ଦେଇ
ଆବଶ୍ୟକ ହେଲେ ଦେଇ ଏ ଆମ ଜୀବନ !"

ଏକାଳେ ସେ ପ୍ରକୋଷ୍ଠରେ ମିସି ବାଟସନ
ପ୍ରବେଶିଲେ ଧୀରେ ଧୀରେ—ଅତିବୃଦ୍ଧା ଏବେ,
ଗତି ଅସମ୍ଭବ ଯଷ୍ଟି ସହାୟତା ବିନା,

ନାସିକାଗ୍ରେ ପ୍ରତିଚକ୍ଷୁ, ସହସ୍ର ଲୋଳରେ
ବଶ୍ୟସ ତା ମୂଦ୍ରା ଆଙ୍କି ବଦନରେ ତାଙ୍କ
ଦେଲାଣି ଗୌରବମୟ ଲେପ ବାର୍ଦ୍ଧକ୍ୟର,
ସ୍ୱଳ୍ପ, ଶୁଭ୍ର କେଶପୁଞ୍ଜ, ଉଡ଼େ ବାୟୁଭରେ ।
ଆସ୍ତେ ଆସ୍ତେ ଘରେ ପଶୁଁ ଯଷ୍ଟି ମାରି ମାରି
ଶଶ୍ୱିମିହା ସଙ୍ଗେ ସଙ୍ଗେ ମାଳକମେ ତେଜ,
ଧାଇଁଯାଇ, ଆଜନମ ସଙ୍ଗିନୀରେ ତାର
ନିବଡ଼ ଆଶ୍ଳେଷେ ଘେରି, କଣ୍ଠ ଦେଶ ତାର
ବେଢ଼ାଇ ତା' ସୁଲଳିତ ସ୍ୱର୍ଣ୍ଣ-ବାହୁ ଯୁଗେ
ମୁଖ ରଖି ବକ୍ଷେ ତାର ଡାକ ଡାକ ଖାଲି
'କାକା', 'କାକା', ବୋଲି ପିଲି କୁହୁଳି କୁହୁଳି ।
ବୁଦ୍ଧା ସେ ଉଦାରହୃଦା ମାର୍କିନ ମହିଳା,
ତାର ପିତୃ-ହନ୍ତା-କନ୍ୟା ଭାରତୀୟା ସେହି
ତରୁଣୀରେ,—ଯାହାକୁ ତା' ସମଗ୍ର ପ୍ରାଣର
ସ୍ନେହଧାରା ଦେଇଅଛି ନିଗାଢ଼ ତା ବକ୍ଷ—
ବୋଧିଲା ଅନ୍ତରେ ସ୍ନେହ-ନିବଡ଼ ଗୁଞ୍ଜନେ
ପିଠିରେ କେଶରେ ତାର ବୁଲାଇ ଆଙ୍ଗୁଳି ।
ସେହି ମହମାମୟ ଦୃଶ୍ୟ ଦେଖୁଥିଲେ ପୁଣି,
ପାଶେ ଏକ ଭାରତୀୟ ଯୋଗୀ, ଆର ପାଖେ
ଧର୍ମିକ ଇଂରେଜ—ସର୍ବେ ଗୁନ୍ଥା ଏକ ସୂତ୍ରେ—
ସେହି ସ୍ୱର୍ଣ୍ଣ ସୂତ୍ର, ଯାର ନାମ ମନୁଷ୍ୟତା ।

